# ଭାଗବତ କଥା

## ଏକବିଂଶ ଖଣ୍ଡ

ଲେଖକ :

ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

ସମ୍ପାଦନା :

ଡକ୍ଟର କୃଷ୍ଣପ୍ରସାଦ ମିଶ୍ର

ଅନୁବାଦକ :

ଶ୍ରୀ ଶ୍ରୀନିବାସ ଉଦ୍‌ଗାତା

ପ୍ରକାଶକ :



ଧର୍ମଗ୍ରନ୍ଥ ଷ୍ଟୋର

*Digitized by srujanika@gmail.com*

# ଭାଗବତ କଥା

## ଏକବିଂଶ ଖଣ୍ଡ

ପ୍ରକାଶିକା :
ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
କଟକ-୭୫୩୦୦୨

ପ୍ରଥମ ସଂସ୍କରଣ :
ଡିସେମ୍ବର-୧୯୮୬

ପ୍ରଚ୍ଛଦ :
ଶ୍ରୀ ଅସୀତ ମୁଖାର୍ଜୀ

ମୁଦ୍ରଣ :
ସପ୍ତର୍ଷି ପ୍ରିଣ୍ଟର୍ସ
ମଧୁପାଟଣା, କଟକ-୧୦

ମୂଲ୍ୟ : ବନ୍ଧାଇ ୧୮-୦୦
ଅବନ୍ଧା ୧୫-୦୦

# BHAGABAT KATHA

Sri Prabhudatta Brahmacharee

Publisher :
Srimati Annapurna Mishra
Cuttack Students' Store
Cuttack-753002

First Edition : 1985

Price :
Deluxe—Rs. 18 00
Popular—Rs. 15-00

Digitized by srujanika@gmail.com

# ସୂଚୀପତ୍ର



—:*:—

*Digitized by srujanika@gmail.com*

# ଇନ୍ଦ୍ରାଦି ଦେବତାମାନଙ୍କର ନୃସିଂହ ସ୍ତୁତି

ପ୍ରତ୍ୟାନୀତାଃ ପରମ ଭବତା ତ୍ରାୟତା ନଃ ସ୍ୱଭାଗା
ଦୈତ୍ୟାକ୍ରାନ୍ତଂ ହୃଦୟକମଲଂ ତ୍ୱଦ୍‌ଗୃହଂ ପ୍ରତ୍ୟବୋଧି ।
କାଳଗ୍ରସ୍ତଂ କିୟଦିଦମହୋ ନାଥ ଶୁଶ୍ରୂଷତାଂ ତେ
ମୁକ୍ତିସ୍ତେଷାଂ ନ ହି ବହୁମତା ନାରସିଂହାପରୈଃ କିମ୍ ॥

—ଶ୍ରୀ. ଭା. ୭ସ୍କ. ୮ଅ. ୪୨ଶ୍ଳୋ.

## ଛପ୍ପୟ

ଇନ୍ଦ୍ର କହେଁ ହରି ହମେଁ ଅସୁର ମଖ ନ ଦୀୟେ ।
କରବାୟେ ଲଘୁକାଜ ସଦା ଅପମାନିତ କୀୟେ ॥
କରୁଣାସିନ୍ଧୁ କୃପାଳୁ କୃପା କରି ସୁର ରିପୁ ମାରେଯା ।
ସୁରଗନ ଅତି ହି ଦୁଖିତ ଦୁଷ୍ଟ ହନି ଦୁଖ ସବ ଟାରେଯା ॥
ଋଷି ବୋଲେ ତବ ତପହିଁ ତନୁ, କରୈଁ ସଦା ପର ଭୟ ଭୟୋ ॥
ମୈଟେଁ ସବ ତପ ଅସୁର ନେ, ତିହିଁ ହନି ତପ ଅବସର ଦୟୋ ॥

ଜଣକର ମୃତ୍ୟୁରେ ଯେଉଁମାନେ ହର୍ଷ ବା ଶୋକ ଯାହା ବି ପ୍ରକାଶ କରନ୍ତି ତାହା ସାଧାରଣତଃ ଆପଣା ସ୍ୱାର୍ଥକୁ ଆଗରେ ରଖି କରିଥାନ୍ତି । ପତ୍ନୀ କହେ, ଏହାପରେ ମୋର ଭରଣ ପୋଷଣ କିଏ କରିବ ? ପୁତ୍ର କହେ, ଏହାପରେ ଆମର ପାଳନ କିଏ କରିବ ? ପୁତ୍ରୀ କହେ, ଏଣିକି କିଏ ମୋତେ ଦାନ ଯୌତୁକ ଦେବ, ସ୍ନେହ ଦେବ ? ଏହାର ଏକମାତ୍ର କାରଣ ଏହା ଯେ ଦୁଃଖ-ସୁଖ ଅନୁଭବ କଲେ ହିଁ ଆସିଥାଏ । ଆପଣାର

Digitized by srujanika@gmail.com

ଦୁଃଖରେ ଦୁଃଖ ଆଉ ସୁଖରେ ସୁଖର ଅନୁଭବ ଆସେ । ହିରଣ୍ୟକଶିପୁର ଶାସନ ସମୟରେ ସମସ୍ତ ଦେବ ଉପଦେବ ଦୁଃଖୀ ହୋଇଥିଲେ । ଯେତେବେଳେ ସେ ମରିଗଲା ସେତେବେଳେ ସମସ୍ତେ ଭଗବାନଙ୍କ ନିକଟରେ ଆପଣା ଆପଣାର ଦୁଃଖ କହି କୃତଜ୍ଞତା ଜ୍ଞାପନ କରିବାକୁ ଲାଗିଲେ ।

ନାରଦ ଧର୍ମରାଜ ଯୁଧିଷ୍ଠିରଙ୍କୁ କହୁଛନ୍ତି—"ରାଜନ୍, ବ୍ରହ୍ମା ଏବଂ ଶିବଙ୍କର ସ୍ତୁତିପାଠ ପରେ ଦେବତାମାନଙ୍କ ମଧ୍ୟରୁ ଶଚୀପତି ଇନ୍ଦ୍ର ଶ୍ରୀ ନରହରିଙ୍କ ସମ୍ମୁଖକୁ ଆସି ଦୂରରୁ ହାତଯୋଡ଼ି କହିବାକୁ ଲାଗିଲେ : "ହେ ପରମାତ୍ମନ୍, ହେ ଅଖିଳ ଭୁବନେଶ୍ୱର, ହେ ଅଶରଣ ଶରଣ, ଆପଣ ଯଜ୍ଞପତି । ଯଜ୍ଞର ଭୋକ୍ତା ବାସ୍ତବିକ ଆପଣ । ଆପଣଙ୍କର ଅଂଶଭୂତ ହୋଇଥିବା ହେତୁ ଆମେମାନେ ଯଜ୍ଞଭାଗ ପାଉଥିଲୁ । ସେଥିରେ ଆମର ଜୀବିକା ନିର୍ବାହ ହେଉଥିଲା । ସେହି ଦୁଷ୍ଟ ଆମର ସେହି ଯଜ୍ଞଭାଗ ମଧ୍ୟ ଆମଠାରୁ ନେଇ ଯାଇଥିଲା । ଆପଣ ସେହି ଦୁଷ୍ଟକୁ ମାରି ପୁଣିଥରେ ଆମକୁ ସେହି ଯଜ୍ଞଭାଗ ଦେଇଛନ୍ତି । ତେଣୁ ଆମେ ଆପଣଙ୍କ କୃପାରୁ ଆପଣଙ୍କର ପ୍ରଦତ୍ତ ସେହି ଯଜ୍ଞଭାଗ ଆପଣଙ୍କର ଅଂଶରେ ଆପଣଙ୍କର ଶକ୍ତିଦ୍ୱାରା ଭୋଗ କରିବୁଁ ।

ପ୍ରଭୁ, ପ୍ରଥମେ ଆମର ହୃଦୟରେ ସର୍ବଦା ଆପଣଙ୍କର ମନମୋହିନୀ ମଧୁର ମୂର୍ତ୍ତି ନାଚି ଉଠୁଥିଲା । ପୂର୍ବେ ଆମର ହୃଦୟ-କମଳ ଆପଣଙ୍କର କୃପାରୂପୀ କିରଣ ସ୍ପର୍ଶରେ ଆପଣଙ୍କର ଅନୁଗ୍ରହରୂପୀ ବାରିଦ୍ୱାରା ସର୍ବଦା ପ୍ରଫୁଲ୍ଲିତ ଓ ବିକଶିତ ହୋଇ ରହୁଥିଲା । ଯେତେବେଳୁଁ ସେଇ ଦୁଷ୍ଟର ନିଶାରୂପୀ ସତ୍ତା ସ୍ଥାପିତ ହେଲା ଏବଂ କର୍କଶତାରୂପୀ ପଙ୍କ ଅଧିକ ଶୁଖିବାକୁ ଲାଗିଲା, ସେତେବେଳୁଁ ତାହା ମଉଳି ଯାଇ ବୁଜି ହେବାକୁ ଲାଗିଲା ! ଆଜି ଆପଣ କୃପା ବୃଷ୍ଟି କରି ତାକୁ ପ୍ରେମରୂପ ବାରିଦ୍ୱାରା ପ୍ଲାବିତ କରି ପୁନଶ୍ଚ ନବ-ଜୀବନ ଦାନ ପୂର୍ବକ ବିକଶିତ କରିଦେଇଛନ୍ତି । ହେ ସର୍ବେଶ୍ୱର, ଆପଣଙ୍କର ପାଦପଦ୍ମରେ ବାରମ୍ବାର ପ୍ରଣାମ କରୁଛୁଁ ।

ହେ ଦେବ, ସାଧାରଣତଃ ଲୋକେ ଆମକୁ ସ୍ୱାର୍ଥୀ ବୋଲି କହିଥାନ୍ତି, ଆମେମାନେ ମଧ୍ୟ ପ୍ରାୟତଃ ଭୋଗ-ପ୍ରଧାନ, ମାତ୍ର ଆପଣଙ୍କର ଚରଣାଶ୍ରିତ ହୋଇ ଆମେ ଯଦି ଭୋଗର ଯାଚନା କରିବୁଁ ତାହା କ୍ଷୁଦ୍ରତା ବ୍ୟତୀତ ଆଉ କଣ ହେବ ? ଯେ ଭୋଗ-ମୋକ୍ଷର ସ୍ୱାମୀ, ତାଙ୍କଠାରୁ ନଶ୍ୱର ତୁଚ୍ଛ ସଂସାରୀ-ଭୋଗ କେଉଁପରି ମାଗିବୁଁ ? ଏସବୁ କାଳଗ୍ରସିତ ଓ ନଶ୍ୱର । ଯାହାକୁ ଆପଣଙ୍କର କୃପାପ୍ରାପ୍ତ ହୋଇଛି, ସେ ମୁକ୍ତିକୁ ମଧ୍ୟ ତୁଚ୍ଛଜ୍ଞାନ କରିଥାନ୍ତି, ସେଠାରେ ଭୋଗର କି ମୂଲ୍ୟ ଅଛି ? ତେଣୁ ପ୍ରଭୁ, ଆମେ ଆପଣଙ୍କର ଦୟା ଚାହୁଁ । ଆପଣ ଆମ ଉପରେ ଅନୁଗ୍ରହ ବୃଷ୍ଟି କରନ୍ତୁ, ଆମକୁ ଦୟା ଦୃଷ୍ଟିରେ ଦେଖନ୍ତୁ ।"

Digitized by srujanika@gmail.com

ଦେବେନ୍ଦ୍ର ଶତକଣ୍ଠ ମୌନ ହେବାପରେ ସମସ୍ତ ଋଷିଗଣ ପୁଷ୍ପାଞ୍ଜଳି ନେଇ କହିଲେ : "ହେ, ତପୋମୂର୍ତ୍ତି ! ହେ ଆଦିଦେବ, ଯେଉଁତେବେଳେ ଆପଣ ସୃଷ୍ଟି କଲେ ଏବଂ ଆମର ପୂର୍ବଜ ବ୍ରହ୍ମାଙ୍କର ସର୍ଜନା କଲେ ସେତେବେଳେ ସେ ସୃଷ୍ଟି ସର୍ଜନା ପ୍ରସଙ୍ଗରେ କିଂକର୍ତ୍ତବ୍ୟବିମୂଢ ହୋଇ ରହିଥିଲେ । ସେତେବେଳେ ଆପଣ ତାଙ୍କୁ ତପସ୍ୟା କରିବାକୁ ଆଦେଶ ଦେଇଥିଲେ । ତପଦ୍ୱାରା ହିଁ ସେ ବିଶ୍ୱର ରଚନା କଲେ । ତପଦ୍ୱାରା ହିଁ ସେ ସୃଷ୍ଟି ବୃଦ୍ଧି କରିବାକୁ ସଫଳ ହେଲେ ଏବଂ ତପଦ୍ୱାରା ହିଁ ସେ ସମସ୍ତ ସିଦ୍ଧି ପ୍ରାପ୍ତ ହେଲେ । ସେହି ଅମୋଘ ସିଦ୍ଧି ସମୃଦ୍ଧି ପ୍ରାପ୍ତ ହୋଇ କମଳାସନ ପ୍ରଭୁ ପରମ ପ୍ରସନ୍ନ ହେଲେ ଏବଂ ଆମମାନଙ୍କୁ ସେଇ ଉପଦେଶ ଦେଲେ । ସେହି ଦିନରୁ ଆମେ ତପସ୍ୟାରତ ହୋ'ଇ ରହିଛୁ । ମଝିରେ ଏହି ପୁରୁଷ ଉତ୍ପନ୍ନ ହୋଇ ସମସ୍ତ ଜପ, ତପ, ନିୟମ, ସାଧନ ଆଦି ନଷ୍ଟ କରି ଦେଲା । ଆମେ ସମସ୍ତେ ତପସ୍ୟାହୀନ ହୋଇ ଦୁଃଖ ପ୍ରାପ୍ତ ହେଲୁଁ । ଆଜି ସେହି ଅଧମକୁ ବିନାଶ କରି ଆପଣ ତପସ୍ୟାକୁ ପୁନଃ ପ୍ରତିଷ୍ଠିତ କରିଛନ୍ତି । ଆମେ ଏଣିକି ସୁଖରେ ପୂର୍ବବତ୍ ତପସ୍ୟା କରିପାରିବୁଁ ଏବଂ ତପସ୍ୟା ଦ୍ୱାରା ଆପଣଙ୍କର ଆରାଧନ କରିପାରିବୁଁ । ହେ ତପପତି, ଆମେ ଆପଣଙ୍କର ଚରଣକମଳରେ ବାରମ୍ବାର ପ୍ରଣାମ କରୁଛୁଁ ।"

ସେହି ସମୟରେ ପିତୃଗଣ ସମ୍ମୁଖକୁ ଆସିଲେ । ପିତୃଗଣଙ୍କୁ ଦେଖି ଋଷିମାନେ କିଛିଟା ଅପସରି ଗଲେ । ସମସ୍ତ ପିତର ଦୁର୍ବଳ ଥିଲେ । ସେମାନଙ୍କ ସହିତ ପତ୍ନୀ ସ୍ୱଧା ମଧ୍ୟ ଥିଲେ । ସେମାନେ ସ୍ଖଳିତ ବାଣୀରେ କହିଲେ : "ହେ ପ୍ରଭୁ, ଆମେ ନା କୃଷି କରୁଛୁଁ ନା ବେପାର ବଣିଜ କରୁଛୁ । ଆମେ ଅନ୍ୟ କୌଣସି ଉପାର୍ଜନ କ୍ଷମ ମଧ୍ୟ ନୋହୁଁ । ଚାକିରୀ ମଧ୍ୟ କରୁନାହୁଁ । ପୃଥ୍ୱୀଲୋକରେ ବାସ କରୁଥିବା ଆମର ପୁତ୍ର ପୌତ୍ର ତଥା ଅନ୍ୟାନ୍ୟ ପୁରୁଷମାନେ ଶ୍ରାଦ୍ଧ ସମୟରେ ଯେଉଁ ପିଣ୍ଡଦାନ ଓ ତର୍ପଣ କରିଆନ୍ତି ସେଇଥିରେ ଆମେ ଆମର ଜୀବିକା ନିର୍ବାହ କରୁଁ । ଏହି ଗ୍ରେର ସେହି ପିଣ୍ଡ ଗ୍ରେରିକରି ଉଦରସ୍ଥ କରିଥିଲା । ଆଜି ଆପଣ ନ୍ୟାୟାଧୀଶ ତାର ପେଟ ଚିରି କେବଳ ସେ ସବୁ ବସ୍ତୁ ବାହାର କରିଦେଲେ ତା' ନୁହେଁ, ତାକୁ ମଧ୍ୟ ସପରିବାର ପାଇଁ ବିନାଶ କରିଛନ୍ତି । ଆମେ ଏଣିକି ଶୀଘ୍ର ସୁସ୍ଥ ଓ ପୁଷ୍ଟ ହୋଇଯିବୁଁ । ତେଣୁ ହେ ଜୀବିକା-ପ୍ରଦାୟୀ ପ୍ରଭୁ, ଆପଣଙ୍କର ପାଦପଦ୍ମରେ ଆମେ ବାରମ୍ବାର ପ୍ରଣାମ କରୁଛୁଁ ।"

ପିତରମାନେ ସ୍ତୁତିକରି କ୍ଳାନ୍ତ ହେବାଭଳି ମନେହେଲେ । ସେତେବେଳେ ସିଦ୍ଧମାନେ କହିବାକୁ ଲାଗିଲେ : "ହେ ନରହରି, ଆମକୁ ଲୋକେ ସିଦ୍ଧ ବୋଲି କହିଥାନ୍ତି । ସିଦ୍ଧି ଆମକୁ ଜନ୍ମତଃ ପ୍ରାପ୍ତ ହୋଇଥାଏ । ମାତ୍ର ଏ ଅସୁର ସେହି ସକଳ ସିଦ୍ଧିକୁ ଅଶୁଦ୍ଧ କରି ଦେଇଥିଲା । ଆମର ସମସ୍ତ ଶକ୍ତି ଅପହରଣ କରି ନେଇଥିଲା । ଆମେ ଅସିଦ୍ଧ ଓ ଶକ୍ତିହୀନ ହୋଇଗଲୁଁ । ଏହାରି ଉଦରରେ ସମସ୍ତ ସିଦ୍ଧି କବଳିତ

Digitized by srujanika@gmail.com

ହୋଇ ଯାଇଥିଲେ । ଆପଣ ତାର ପେଟ ଚିରି ସବୁ ସିଦ୍ଧିଙ୍କୁ ପ୍ରକାଶିତ କରି ଦେଇଛନ୍ତି । ଆମେ ଆପଣଙ୍କର ଶ୍ରୀଚରଣ କମଳରେ ବାରମ୍ବାର ପ୍ରଣାମ କରୁଛୁ । ଆମେ ବର୍ତ୍ତମାନ ଆପଣଙ୍କର ଦର୍ଶନ ଲାଭକରି ଏବଂ ଅସୁରର ବିନାଶ ଫଳରେ ପୁନଶ୍ଚ ସିଦ୍ଧ ହୋଇଛୁଁ ।"

ସିଦ୍ଧମାନଙ୍କ ପଛରେ ବିଦ୍ୟାଧରମାନେ ଠିଆ ହୋଇଥିଲେ । ସେମାନେ ସମସ୍ତଙ୍କୁ କିଛି ନା କିଛି କହୁଥିବା ଦେଖି, କିଛି କହି ଭଗବାନ ନୃସିଂହଙ୍କର ସ୍ତୁତିପାଠ କରିବା ଉଚିତ ମନେକଲେ । କହିଲେ : "ହେ ପ୍ରଭୁ, ଆମେମାନେ ବିବିଧ ବିଦ୍ୟାକୁ ଆମର ଧାରଣାରେ ଧାରଣ କରିଥିବା ହେତୁରୁ ବିଦ୍ୟାଧର ବୋଲାଇ ଥାଉଁ । ମାତ୍ର ଏହି ଅସୁର ସମ୍ମୁଖରେ ଆମର ଗୋଟିଏ ବିଦ୍ୟା ମଧ୍ୟ କାର୍ଯ୍ୟକାରୀ ହେଉ ନଥିଲା । ସେ ଆମର ସବୁ ବିଦ୍ୟାକୁ ବ୍ୟର୍ଥ କରି ଦେଇଥିଲା । ଆପଣ ତାର ଖଣ୍ଡ ଖଣ୍ଡ କରିଛନ୍ତି । ତେଣୁ ହେ ବିଶ୍ୱେଶ୍ୱର, ଆମେ ଆପଣଙ୍କର ନୟନାଭିରାମ ତୀକ୍ଷ୍ଣ ନଖଯୁକ୍ତ ପାଦପଦ୍ମରେ ନିରନ୍ତର ପ୍ରଣାମ କରୁଛୁଁ ।"

ବିଦ୍ୟାଧର ଏବଂ ନାଗ ଏଇ ଉପଦେବତାମାନେ ଅତ୍ୟନ୍ତ ସ୍ୱରୂପବନ୍ତ ଅଟନ୍ତି ଏବଂ ଏମାନଙ୍କ ପାଖରେ ବହୁମୂଲ୍ୟ ମଣିର ଭଣ୍ଡାର ଥାଏ । ହିରଣ୍ୟକଶିପୁ ନାଗଲୋକକୁ ଯାଇ ସେମାନଙ୍କର ସ୍ତ୍ରୀରତ୍ନ ଏବଂ ବହୁମୂଲ୍ୟ ମଣିମାନଙ୍କୁ ଅପହରଣ କରି ନେଇଥିଲା । ଆଜି ସେହି ଅସୁରକୁ ମୃତ ଦେଖି ସେହି ସୁନ୍ଦରୀ ନାଗକନ୍ୟାମାନେ ମଧ୍ୟ ଅନ୍ତଃପୁରରୁ ବାହାରି ଆସିଲେ ଏବଂ ନାଗମାନଙ୍କ ସହିତ ନାଗଲୋକ ଯିବା ନିମନ୍ତେ ଅତ୍ୟନ୍ତ ଉତ୍ସୁକ ହୋଇ ରହିଥିଲେ । ସେମାନଙ୍କୁ ଦେଖି ନାଗମାନେ ସମସ୍ୱରରେ କହିଲେ : "ହେ ପ୍ରଭୁ, ଏ ଦୁଷ୍ଟ ଆମର ମଣିସମୂହ ଅପହରଣ କରି ନେଇଥିଲା, ସେଥିରେ କିଛି କଥା ନାହିଁ । ସ୍ତ୍ରୀରତ୍ନମାନଙ୍କୁ ମଧ୍ୟ ବଳପୂର୍ବକ ନେଇ ଆସିଥିଲା । ଆଜି ସେମାନେ ସମସ୍ତେ ଆପଣଙ୍କର ହାର୍ଦ୍ଦିକ ଅଭିନନ୍ଦନ କରୁଛନ୍ତି । ଏହି ଅବଳାମାନଙ୍କ ସୁଖ-ପ୍ରଦାନକାରୀ ହେ ସୁଖାର୍ଣ୍ଣବ, ଆମେ ଆପଣଙ୍କୁ ଅତ୍ୟନ୍ତ ବିନୀତ ଶ୍ରଦ୍ଧାରେ ପ୍ରଣାମ କରୁଛୁଁ ।"

ନାଗଗଣ ସ୍ତୁତି କଲାପରେ ମନୁଗଣ ଉପସ୍ଥିତ ହେଲେ । ଏ ପର୍ଯ୍ୟନ୍ତ ଦେବତାମାନେ ସ୍ତୁତି କରୁଥିଲେ । ବର୍ତ୍ତମାନ ମନୁଷ୍ୟ ଆକାରରେ ମନୁଗଣଙ୍କୁ ଦେଖି ଭଗବାନ ନୃସିଂହ ବକ୍ରଚକ୍ଷୁରେ ଗୁହାଁ ପଚାରିଲେ, "ତୁମେମାନେ କିଏ ?"

ଏତିକିମାତ୍ର ଶୁଣି ମନୁଗଣଙ୍କର ହଂସା ଉଡ଼ିଗଲା । ସମସ୍ତେ ବିନମ୍ର ସ୍ତୁତି କରିବା ପର୍ଯ୍ୟନ୍ତ ଭୁଲିଗଲେ । ଡରି ଡରି କମ୍ପିତ କଣ୍ଠରେ କହିଲେ—"ପ୍ରଭୁ, ଆମେମାନେ ଆପଣଙ୍କର ଆଜ୍ଞା ପାଳନକାରୀ ମନୁଗଣ ।"

ଗର୍ଜିଉଠି ନୃସିଂହ ଭଗବାନ କହିଲେ, "କଣ କାର୍ଯ୍ୟକର ତୁମ୍ଭେମାନେ ?"

Digitized by srujanika@gmail.com

ମନୁଗଣ କହିଲେ, "ଭଗବାନ, ଆମ୍ଭମାନଙ୍କର କାମ କରିବାକୁ ସାମର୍ଥ୍ୟ କାହିଁ ? ଆପଣ ଯେଉଁ ମର୍ଯ୍ୟାଦା ବାନ୍ଧି ଦେଇଛନ୍ତି, ଆମେ ଆପଣଙ୍କର ଆଜ୍ଞାରେ ତାହାହିଁ ପାଳନ କରୁଛୁଁ । ଏ ଦୁଷ୍ଟ ଆପଣଙ୍କର ସେହି ମର୍ଯ୍ୟାଦା ଉଲ୍ଲଙ୍ଘନ କରିଥିଲା ।"

—"ତୁମ୍ଭେମାନେ ବର୍ତ୍ତମାନ କ'ଣ ଚାହୁଁଛ ?"

ମନୁମାନେ କହିଲେ : "ପ୍ରଭୁ, ଆମ୍ଭେ ଆପଣଙ୍କର ଆଜ୍ଞା ଚାହୁଁ । ଆମେ ଆପଣଙ୍କର ସେବା କରିବୁଁ । ଆମେ ଆପଣଙ୍କର ଦାସ । ଆମର ଯୋଗ୍ୟ ଯାହା ସେହି ସେବା କରିବାକୁ ଆଦେଶ ଦିଅନ୍ତୁ ।"

ଏହାକହି ମନୁଗଣ ଅପସରି ଗଲେ । ସେମାନଙ୍କ ପଛରେ ପ୍ରଜାପତିମାନେ ହାତ ଯୋଡ଼ି ଠିଆ ହୋଇଥିଲେ । ଏହାପରେ ଭଗବାନ ନୃସିଂହ ପଚାରିଲେ ଏବଂ ସେ ଯାହା ପ୍ରଶ୍ନ କଲେ ସେମାନେ ଡରି ଡରି ତାର ଉତ୍ତର ଦେବାକୁ ଲାଗିଲେ ।

ଭଗବାନ ପଚାରିଲେ, ' ତୁମ୍ଭେମାନେ କିଏ ?"

ଅବନତ କଣ୍ଠରେ ପ୍ରଜାପତିମାନେ କହିଲେ, "ପ୍ରଭୁ, ଆମ୍ଭେମାନେ ଆପଣଙ୍କର ସର୍ଜିତ ପ୍ରଜାପତିମାନେ ।"

—"ତୁମ୍ଭେମାନେ କେଉଁ କାର୍ଯ୍ୟରେ ନିଯୁକ୍ତ ହୋଇଛ ?"

—"ପ୍ରଭୁ, ଆପଣହିଁ ଆମକୁ ପ୍ରଜାପତି କାର୍ଯ୍ୟରେ ନିଯୁକ୍ତ କରିଛନ୍ତି ।"

—"ଏଥି ମଧ୍ୟରେ କେତେ ପ୍ରଜାବୃଦ୍ଧି କରିଇଛ ?"

ପ୍ରଜାପତିମାନେ କହିଲେ : "ପ୍ରଭୁ, କିଭଳି କରିବୁ ? ସେ ଦୁଷ୍ଟ ତ ଆମର କ୍ରିୟା ପର୍ଯ୍ୟନ୍ତ ବନ୍ଦ କରି ଦେଇଥିଲା । ତେଣୁ ପ୍ରଜାବୃଦ୍ଧି କରିବା ସମ୍ଭବ ହେଲନାହିଁ । ସୌଭାଗ୍ୟର କଥା ଯେ, ଆପଣ ସେ ଦୁଷ୍ଟର ବିନାଶ କରିଛନ୍ତି । ଆମେ ପୁଣି ପ୍ରଜାବୃଦ୍ଧି କରିବୁ ! ସମସ୍ତ ଲୋକଙ୍କର କଲ୍ୟାଣ ହେବ, ସମସ୍ତେ ସୁଖୀ ହେବେ । ଆପଣଙ୍କର ଏହି ସତ୍ତ୍ୱ ପ୍ରଧାନ ଅବତାର ସଂସାର-କଲ୍ୟାଣର କାରଣ ହେଉ ।"

ପଛପଟେ ଠିଆ ହୋଇଥିବା ଗନ୍ଧର୍ବମାନେ ପାଦର ଘୁଙ୍ଗୁର ମଝିରେ ମଝିରେ ବଜାଉଥିଲେ । ସେମାନେ ନାଚିବାକୁ ଚାହୁଁ ଥିଲେ । ମାତ୍ର ଭଗବାନଙ୍କର କ୍ରୋଧମୟ ରୂପ ଦେଖି ସାହସ କରିପାରୁ ନଥିଲେ । ତେଣୁ ସେମାନେ ଗନ୍ଧର୍ବମାନଙ୍କର ପାର୍ଶ୍ୱରେ ହାତଯୋଡ଼ି ଠିଆ ହୋଇ ରହିଥିଲେ । ସେମାନଙ୍କୁ ସାଜମାଜ ହୋଇ ରହିଥିବା ଦେଖି ଭଗବାନ ପଚାରିଲେ, "ତୁମ୍ଭେମାନେ କିଏ ? କ'ଣ ଜାକି ଧରିଛ କାଖରେ ?"

Digitized by srujanika@gmail.com

ଗନ୍ଧର୍ବମାନେ ମୁଣ୍ଡ ନୁଆଁଇ ଉତ୍ତର ଦେଲେ : "ହେ ଭକ୍ତଭୟହାରୀ ଭଗବାନ, ଆମ୍ଭେମାନେ ଆପଣଙ୍କ ସମ୍ମୁଖରେ ନୃତ୍ୟ-ଗାୟନକାରୀ ଗନ୍ଧର୍ବ । ଏ ସବୁ ଆମର ମୃଦଙ୍ଗ, ବୀଣା, ଝାଞ୍ଜ, ଆଦି ବାଦ୍ୟଯନ୍ତ୍ର । ଆଦେଶ ହେଲେ ଆମେ କିଛି ସଙ୍ଗୀତ ପରିବେଷଣ କରିବୁ ।"

ଭଗବାନ ପଚାରିଲେ, "ଏ ପର୍ଯ୍ୟନ୍ତ ତୁମ୍ଭେମାନେ କ'ଣ କରୁଥିଲ ?"

ଗନ୍ଧର୍ବମାନେ କହିଲେ : "ପ୍ରଭୁ, ଏ ପର୍ଯ୍ୟନ୍ତ ତ ସେହି ପାପୀ ଆମକୁ ତା'ର ବଳ ବୀର୍ଯ୍ୟଦ୍ୱାରା ଅଧୀନସ୍ଥ କରି ରଖିଥିଲା । ଅନିଚ୍ଛା ସତ୍ତ୍ୱେ ଆମେ ତା'ର ଗୁଣଗାନ କରୁଥିଲୁ । ତାରି ସମ୍ମୁଖରେ ନୃତ୍ୟଗୀତ କରୁଥିଲୁ । ସେଥିରେ ସାମାନ୍ୟ ଭୁଲ ହେଲେ ସେ ଲାତ ମାରୁଥିଲା । ଆଜି ସେଇ ଗୋଡ ମେଲେଇ ଚିତ୍ ହୋଇ ପଡ଼ିଛି । ପେଟ ଦୁଭାଗ ହୋଇ ଚିରି ହୋଇଛି । ପ୍ରଭୁ, ଆପଣଙ୍କର ବିଧାନ ତ ସେଇଆ, ଯେ ଯାହା କରିବ ସେ କୃତକର୍ମର ଫଳ ଭୋଗ କରିବ ।"

ପାଖରେ ଠିଆ ହୋଇଥିବା ଚାରଣମାନଙ୍କୁ ଦେଖି ଭଗବାନ ପଚାରିଲେ, "କ'ଣ ତୁମ୍ଭେମାନେ ମଧ୍ୟ ଦୈତ୍ୟର ଅନୁଚର ?"

ତାହା ଶୁଣିବା କ୍ଷଣି ଯେତେ ଯେପରି ସେଇ ଚାରଣମାନଙ୍କର ରକ୍ତ ଶୁଖିଗଲା । ସେମାନେ ଥରିବାକୁ ଲାଗିଲେ । କହିଲେ : "ନା ପ୍ରଭୁ, ଆମେ ତ ଆପଣଙ୍କର ଭବ-ଭୟହାରୀ ପାଦପଦ୍ମର ଆଶ୍ରୟ ଗ୍ରହଣ କରିଛୁ । ନାଥ, ଆପଣ ସେହି ଦୈତ୍ୟ ସଂହାରକରି ଅତ୍ୟନ୍ତ ପୁଣ୍ୟ କାର୍ଯ୍ୟ କରିଛନ୍ତି । ସନ୍ଥମାନଙ୍କ ହୃଦୟରେ ଶୂଳ ସଦୃଶ ବିଦ୍ଧ ହୋଇ ରହିଥିବା ଦୈତ୍ୟର ବିନାଶ ଆପଣ କରିଛନ୍ତି । ଆମେ ତା'ର ଅନୁଗାମୀ ନଥିଲୁ । ଆମେ ତ ଆପଣଙ୍କର ଦାସାନୁଦାସ ।"

ବିକୃତ ବେଶଧାରୀ ଯକ୍ଷମାନଙ୍କୁ ଦେଖି ଭଗବାନ କହିଲେ, "ତୁମ୍ଭେମାନେ କିଏ ? ଏଭଳି ମୂର୍ଖଙ୍କ ପରି କାହିଁକି ଠିଆ ହୋଇଛ ?"

ଯକ୍ଷମାନେ ଭୟ କଲେ, କାଳେ ଦୈତ୍ୟରି ଉପରେ ଥିବା କ୍ରୋଧ ସେଇମାନଙ୍କ ଉପରେ ହିଁ ବର୍ଷିଯିବ । ସେଇ ଭୟରେ ସେମାନେ ଆତଙ୍କିତ ହୋଇ କହିଲେ, "ପ୍ରଭୁ, ଆମେ ତ ଆପଣଙ୍କର ପ୍ରଧାନ ଦାସ ।"

ଭଗବାନ କହିଲେ : "କ'ଣ ପ୍ରଧାନତା ଅଛି ତମର ? ତୁମ୍ଭେମାନେ ତ ମଇଳା ଚିରା ଲୁଗାପଟା ପିନ୍ଧି ହାତରେ ପାଲିଙ୍କି ବୁହା ବେଙ୍ଗାଧରି ଠିଆ ହୋଇଛ !"

Digitized by srujanika@gmail.com

ଯକ୍ଷମାନେ ଥରି ଥରି କହିଲେ : "ନା ଭଗବାନ, ଆମ୍ଭେମାନେ ତ ଅତ୍ୟନ୍ତ ମନୋହର କର୍ମ କରିଥାଉଁ । ସେହି ଦୁଷ୍ଟ ଆମ୍ଭମାନଙ୍କୁ ବଳ ପୂର୍ବକ ପାଲଙ୍କି ବୁହା କର୍ଯ୍ୟରେ ନିଯୁକ୍ତ କରି ରଖିଥିଲା । କଣ ବା କରନ୍ତୁ ବାଧ୍ୟ ହୋଇ ତାହା କରୁଥିଲୁ । ଆପଣ ତ କ୍ଷିତି, ଅପ, ତେଜ, ବାୟୁ, ଆକାଶ ଆଦି ପଞ୍ଚଭୂତ, ଦଶ ଇନ୍ଦ୍ରିୟ, ପଞ୍ଚ ତନ୍ମାତ୍ର ତଥା ମନ, ଅହଙ୍କାର, ମହତତ୍ତ୍ୱ, ପ୍ରକୃତି ଏହି ଚବିଶ ତତ୍ତ୍ୱର ନିୟନ୍ତା ପୁରାଣ-ପୁରୁଷ ଅଟନ୍ତି । ଆପଣ ହିଁ ଦୈତ୍ୟକୁ ମାରିଛନ୍ତି । ଏଇନେ ଆମକୁ ଯେଉଁ ସେବାରେ ନିଯୁକ୍ତ କରିବେ ତାହା କରିବୁ ।"

ଗନ୍ଧର୍ବମାନେ କିଛି କରିବାକୁ ଗୁହୁଁଥିଲେ । ମାତ୍ର ଭଗବାନ କିଂପୁରୁଷମାନଙ୍କୁ ଦେଖି କହିଲେ—"ତୁମ୍ଭେମାନେ କିଏ ?"

ସେମାନେ ଡରି ଡରି କହିଲେ, 'ପ୍ରଭୁ, ଆମ୍ଭେମାନେ କିଂପୁରୁଷ ।"

କ୍ରୋଧରେ ଭଗବାନ ପଚାରିଲେ, "କଣ କର ତୁମ୍ଭେମାନେ ?"

କଣ ବା କହନ୍ତେ ! କହି ପକେଇଲେ, "ଭଗବାନ, ଆମେ କବିତା ରଚନା କରୁ ।"

ଭଗବାନ କହିଲେ, "କେମିତି କବିତା ରଚନା କର ?"

କିଂପୁରୁଷମାନେ ଡରିଗଲେ ଏବଂ ତୁରନ୍ତ ଉପଧା ଓ ପଦ ମିଳେଇ କବିତାରେ କହିଲେ—

"ହମ୍ କିଂପୁରୁଷ କୁପୁରୁଷ ସହି ପାମର ପାପମତି ।
ମହାପୁରୁଷ ପ୍ରଭୁ ଆପ୍ ହୈଁ ଦଇ ଦୈତ୍ୟ କୁଁ ପରମଗତି ॥"

ବୈତାଳିକମାନେ ଦେଖିଲେ, ପ୍ରଭୁ ତ କବିତା ମଧ୍ୟ ଶୁଣି ବସିଲେଣି । କିଛି ପାରିତୋଷିକ ମିଳିବ ଯଦି ସେମାନେ ସବୁ ନେଇଯିବେ । ତେଣୁ କହିଲେ : "ଭଗବାନ, ବଡ଼ ବଡ଼ ସଭାମାନଙ୍କରେ ଏବଂ ଯଜ୍ଞୋତ୍ସବମାନଙ୍କରେ ଆମେ ସର୍ବଦା ଆପଣଙ୍କର ଯଶ ଗାନ କରୁଥିଲୁ । ସେଠାରୁ ଆମ୍ଭେମାନେ ବହୁ ପରିମାଣରେ ଦାନ ଦକ୍ଷିଣା, ପୂଜା ଉପହାର ଆଦି ପ୍ରାପ୍ତ ହେଉଥିଲୁ । ପାରିତୋଷିକ ମଧ୍ୟ ମିଳୁଥିଲା । ସେସବୁ ଏ ଦୁଷ୍ଟ ନଷ୍ଟ ଭ୍ରଷ୍ଟ କରି ଦେଇଥିଲା । ବର୍ତ୍ତମାନ ତା'ର ମୃତ୍ୟୁ ହେଲାରୁ ଆମ୍ଭେମାନେ ପୁଣିଥରେ ସେହି ସ୍ଥାନ ପ୍ରାପ୍ତ ହେବୁ । ପୁଣି ଥରେ ଆମ୍ଭମାନଙ୍କୁ ସେହିଭଳି ସାମଗ୍ରୀ ପ୍ରାପ୍ତ ହେବ ।"

କିନ୍ନରମାନେ ବିଗୁରି କଲେ ବର୍ତ୍ତମାନ ଖାଇବାର ପ୍ରଶ୍ନ ଉଠିଲାଣି । ଏଠାରେ ଯେଉଁ ନିଯୁକ୍ତି ହୋଇଗଲା ତାହା ପୂର୍ଣ୍ଣତଃ ସ୍ଥାୟୀ । ସିଂହାସନ ଉପରେ ପ୍ରଭୁ ବିରାଜମାନ

Digitized by srujanika@gmail.com

କରିଛନ୍ତି । ଯାହାପାଇଁ ଯେଉଁଭଳି ଆଜ୍ଞା ହେବ ତାକୁ ତାହା ମିଳିଯିବ । ତେଣୁ ସେମାନେ ଦୀନ ସ୍ୱରରେ କହିଲେ : "ପ୍ରଭୁ, ଆମ କଥା ମଧ୍ୟ ଶୁଣିବା ହୁଅନ୍ତୁ । ଆମ୍ଭେମାନେ ଆପଣଙ୍କର ମୁଖ୍ୟ ଅନୁଚର । ଏଇ ଦୁଷ୍ଟ ତ ଆମ୍ଭମାନଙ୍କୁ ବାଧ୍ୟରେ କିଛି ପଇସା ନ ଦେଇ କାମ କରିବାକୁ ନିଯୁକ୍ତ କରି ରଖିଥିଲା । ବର୍ତ୍ତମାନ ପର୍ଯ୍ୟନ୍ତ ବାଧ୍ୟ ହୋଇ କରୁଥିଲୁ । ଏବେ ଆମେ ଯେପରି ସେହିଭଳି ରହି ନପାଉ । ଆମେ ଆଶା କରୁଛୁ, ସେହି ଦୁଷ୍ଟର ମୃତ୍ୟୁ ହେଲାପରେ ଏଣିକି ଆମର ମଧ୍ୟ ଉନ୍ନତି ହୋଇଯିବ ।"

ସେଠାରେ ଭଗବାନଙ୍କର ନନ୍ଦ, ସୁନନ୍ଦ, ଗରୁଡ଼ ଆଦି ପାର୍ଷଦମାନେ ମଧ୍ୟ ଆସି ଉପସ୍ଥିତ ହେଲେ । ଅନ୍ୟମାନେ ବାରମ୍ବାର ହିରଣ୍ୟକଶିପୁକୁ ଦୁଷ୍ଟ, ଖଳ, ନୀଚ ଆଦି କହି ଭର୍ତ୍ସନା କରୁଥିଲେ । ଏକଥା ସେମାନଙ୍କୁ ଅସହ୍ୟ ହେଉଥିଲା । ସେମାନେ ଜାଣନ୍ତି ଯେ ହିରଣାକ୍ଷ ଏବଂ ହିରଣ୍ୟକଶିପୁ ସେମାନଙ୍କର ସାଥୀ ଜୟ ଓ ବିଜୟ ପାର୍ଷଦ ଦ୍ୱୟ । ସେମାନେ ସନକ ଆଦି ମହର୍ଷିମାନଙ୍କର ଅଭିଶାପ ଫଳରେ ଅସୁରଯୋନିରେ ଜନ୍ମଗ୍ରହଣ କରିଥିଲେ । ସେମାନେ ତ ବୈକୁଣ୍ଠନାଥଙ୍କର ଅତ୍ୟନ୍ତ ମନୋହର ଚତୁର୍ଭୁଜ ମୂର୍ତ୍ତିର ନିତ୍ୟ ଦର୍ଶନ କରୁଥିଲେ । ଏମାନେ ମଧ୍ୟ ସେହି ରୂପ ଦର୍ଶନ କରି ଆସିଥିଲେ । ତେଣୁ ଆଜି ଏହି ବିକରାଳ ମୁଖ, ଦୀର୍ଘ ଦନ୍ତ, ଭୟଙ୍କର ଆକୃତି ଦେଖି ଡରୁଥିଲେ । ସେମାନେ ଡରି ଡରି କହିଲେ : "ପ୍ରଭୁ, ଆଜି ଆପଣଙ୍କର ବିଚିତ୍ର ରୂପ ଦର୍ଶନ ଆମେ ପ୍ରଥମ କରି କରୁଛୁ । ଆମେ ଜାଣୁ ଯେ ଆପଣ ସ୍ୱାମୀ ଓ ଆପଣ ଏହି ଅଦ୍ଭୁତ ରୂପଧାରଣ କରିଛନ୍ତି । ଯେଉଁମାନଙ୍କୁ ସମସ୍ତେ ଦୁଷ୍ଟ, ନୀଚ, ଖଳ କହୁଛନ୍ତି ସେମାନେ ତ ଆପଣଙ୍କର ଆଜ୍ଞାକାରୀ ଦୌବାରିକ ଦାସ । ଆପଣଙ୍କର ପ୍ରିୟ ପାର୍ଷଦ । ବିପ୍ର ଅଭିଶାପରେ ଅଧମଯୋନି ପ୍ରାପ୍ତ ହୋଇଥିଲେ । ସେମାନଙ୍କର ସଂହାର କରି ଆପଣ ସେମାନଙ୍କର କଲ୍ୟାଣ ସାଧନ କରିଛନ୍ତି । ଆପଣଙ୍କର କ୍ରୋଧ ମଧ୍ୟ ବରଦାନ ତୁଲ୍ୟ ହୋଇଛି । ଆମର ସେହି ବନ୍ଧୁମାନଙ୍କ ପ୍ରତି ଅପାର ଅନୁକମ୍ପା ରହିଛି । ପ୍ରଭୁ, ଆମମାନଙ୍କୁ ଭୁଲି ଯାଆନ୍ତୁ ନାହିଁ ।"

ନାରଦ କହୁଛନ୍ତି : "ରାଜନ୍, ଏହିପରି ଭାବରେ ସମସ୍ତେ ମିଶି ବହୁଭାବରେ କହି ନୃସିଂହ ଭଗବାନଙ୍କୁ ପ୍ରସନ୍ନ କରିବାକୁ ପ୍ରୟାସ କଲେ । ମାତ୍ର ସେଥିରେ ତାଙ୍କର ଭାବମୁଦ୍ରାରେ ଅଣୁମାତ୍ର ପରିବର୍ତ୍ତନ ହେଲାନାହିଁ । ସେ ସେହିପରି କ୍ରୋଧରେ ରକ୍ତ ଚକ୍ଷୁ ହୋଇ ବାରମ୍ବାର ଦାନ୍ତ କଡ଼ମଡ଼ କରି ସିଂହାସନରେ ବିରାଜିତ ହୋଇ ରହିଥିଲେ । ସମସ୍ତଙ୍କର କଥା ଶୁଣୁଥିଲେ । କାହାରିକୁ ପ୍ରତ୍ୟୁତ୍ତର କରୁ ନଥିଲେ । ସେଥିଯୋଗୁଁ ଦେବତାମାନେ କିଞ୍ଚିତ୍ ସାହସ ପ୍ରାପ୍ତ ହେଲେ । ସେମାନେ ଭାବିବାକୁ ଲାଗିଲେ, କେଉଁପରି ଭାବରେ ପାଦ ପର୍ଯ୍ୟନ୍ତ ପହଞ୍ଚିଗଲେ ଜଣା ପଡ଼ିଯାଆନ୍ତା ଆମ ଉପରେ ତ କ୍ରୋଧ କରୁନାହାନ୍ତି ! ତେଣୁ ସେମାନେ କିପରି ଭଗବାନଙ୍କର ସମୀପକୁ ଯିବେ ପରସ୍ପର ମଧ୍ୟରେ ବିଚାର କରିବାକୁ ଲାଗିଲେ ।

Digitized by srujanika@gmail.com

## ଛପ୍ପୟ

ଅବ ତୋ କ୍ରମ ତେଁ କରହିଁ ବିନୟ ନରହରି କୀ ସବଈ ।
ବ୍ରହ୍ମା, ଶିବ, ଦେବେନ୍ଦ୍ର ହଟେ ଆୟେ ସୁର ତବଈ ॥
ପୁନି ମୁନି, ଋଷି,ମନୁ, ପିତର,ସିଦ୍ଧ,ଚାରନ,ବିଦ୍ୟାଧର ।
ନାଗ, ପ୍ରଜାପତି, ଯକ୍ଷ, ଭୂତ, ବୈତାଲହୁ, କିନ୍ନର ॥
ଆଇଁ ମୃଦୁ ତନୁ ଅପସରା, ଦେବ ଔର ଉପଦେବ ଗନ ।
ହରି ପାର୍ଷଦ ନନ୍ଦାଦି ହୁଁ, ବିନୟ କରହିଁ ଭୟଭୀତ ମନ ।



Digitized by srujanika@gmail.com

# ପ୍ରହ୍ଲାଦଙ୍କ ପ୍ରତି ନୃସିଂହ ଭଗବାନଙ୍କର ଅନୁକମ୍ପା

ସ୍ୱପାଦମୂଳେ ପତିତଂ ତମର୍ଭକମ୍
ବିଲୋକ୍ୟ ଦେବଃ କୃପୟା ପରିପ୍ଲୁତଃ ।
ଉତ୍ଥାପ୍ୟ ତଚ୍ଛୀର୍ଷ୍ଣ୍ୟଦଧାତ୍ କରାମ୍ବୁଜମ୍
କାଲାହିବିତ୍ରସ୍ତଧିୟାଂ କୃତାଭୟମ୍ ।।
(ଶ୍ରୀ ଭା. ୭।୯।୫)

## ଛପ୍ପୟ

ଦୂରହି ତେଁ ଦଂଡୌତ କରେଁ ସୁର ପାସ ନ ଜାବେଁ ।
ତୁ ଜା, ତୂ ଜା କରେଁ ଦୂରୀ ତେଁ ସୈନ ଚଲାବେଁ ।।
ଲକ୍ଷ୍ମୀ ବୋଲୀ ଅବହୁଁ କରୁଁ ବଶ ବେଧୀଁ ଘବରାବତ ।
କରି ସୋଲହ ଶୃଙ୍ଗାର ଚଲୀ ନୂପୁର ଖନକାବତ ।।
ହରି ଝଂଘାରେ ଶ୍ରୀ ଡରୀଁ ମଙ୍ଗୀ ଲୌଟି ଆଇଁ ତହୀଁ ।।
ଥର ଥର କାଁପେଁ ପୂନ କହେଁ, ଜେ ମେରେ ଦୂଲହା ନହୀଁ ।।

ଆପଣାର ଇଷ୍ଟକୁ ତାର ଭକ୍ତ ହିଁ ଭଲ ଭାବରେ ବୁଝିପାରେ । ସେ ଯାହାକୁ ଆପଣାର ଅନନ୍ୟ ପ୍ରେମରେ ଭକ୍ତଭାବରେ ପ୍ରକଟିତ କରିଛି ସେ ତା'ର ଯଥାର୍ଥ ରହସ୍ୟ ବୁଝେ । ପିତା ଯେତେ କୁପିତ ହେଲେ ମଧ୍ୟ ପିତା । ସିଂହ ସବୁରି ଉପରେ କ୍ରୋଧ କରେ ମାତ୍ର ଆପଣାର ଶାବକକୁ ବକ୍ଷରେ ଧାରଣ କରେ । ସିଂହପ୍ରତି ସବୁରି ଭୟ ରହିଛି, ମାତ୍ର ତା'ର ଶାବକ କେବେହେଲେ ତାକୁ ଭୟ କରେ ନାହିଁ । ବିରାଡ଼ି ମୂଷାକୁ ମୁହଁରେ ଧରି ନେଇଯାଏ । ସେହିପରି ସେହି ମୁହଁରେ ତା'ର ଶାବକକୁ ମଧ୍ୟ ନେଇଯାଏ । ମୂଷା ବିରାଡ଼ି ମୁହଁରେ ପଡ଼ିବା ମାତ୍ରକେ ଛଟପଟ ହୁଏ, ଭୟଭୀତ

Digitized by srujanika@gmail.com

ହୋଇ ଅଣ ଯାଏ । ମାତ୍ର ତାର ନିଜ ଶାବକର କୌଣସି ଚିନ୍ତା ନଥାଏ, ଦୁଃଖ ଶୋକ ନଥାଏ ଏବଂ ସେ ଭୟଗ୍ରସ୍ତ ହୁଏ ନାହିଁ । କାରଣ ସେହି ଶାବକର ବିଶ୍ୱାସ ଥାଏ ଯେ ମେ ତା'ର ମାତା ଏବଂ ତାହାଦ୍ୱାରା ତା'ର କୌଣସି ଅନିଷ୍ଟ ସାଧନ ହେବନାହିଁ । ତାର ବିପରୀତ ମତେ ମୂଷା ତାକୁ ଘାତକ ମନେକରିଥାଏ । ତାର ଦୃଢ଼ ଧାରଣା ଯେ ସେ ତାକୁ ମାରିଦେବ, ଖାଇଯିବ । ଭାବନା ହିଁ ଫଳବତୀ ହୋଇଥାଏ । ଜନାର୍ଦ୍ଦନ ପ୍ରଭୁ ଭାବଗ୍ରାହୀ ଅଟନ୍ତି । ଯା'ର ଯେଉଁ ଭାବନା ତା'ର ସିଦ୍ଧି ମଧ୍ଯ ସେହିଭଳି ହୋଇଥାଏ । 'ଯାଦୃଶୀ ଭାବନାର୍ଯସ୍ୟ ସିଦ୍ଧିର୍ଭବତି ତାଦୃଶୀ ।'

ଧର୍ମରାଜ ଯୁଧିଷ୍ଠିରଙ୍କୁ ନାରଦ କହୁଛନ୍ତି, "ରାଜନ୍, ଦେବଗଣ ସିଂହାସନସ୍ଥ ନରହରି ପ୍ରଭୁଙ୍କର ସ୍ତୁତି ଦୂରରେ ଥାଇ କରୁଥିଲେ ସିନା, ଭୟ ହେତୁ କେହି ପାଖକୁ ଯାଉନଥିଲେ । ଦେବତାମାନେ ବ୍ରହ୍ମାଙ୍କୁ କହିଲେ, "ପ୍ରଭୁ, ଆପଣ ସବୁରି ଅଗ୍ରଣୀ, ପ୍ରଥମେ ଆପଣ ଭଗବାନଙ୍କର ପାଦସ୍ପର୍ଶ କରନ୍ତୁ ।"

ଏହାଶୁଣି ବ୍ରହ୍ମା ସମସ୍ତଙ୍କୁ ଧମକେଇ କହିଲେ, "କଣ କହୁଛ ତୁମେମାନେ ? କଭଳି ଅନ୍ୟାୟ କଥା କହୁଛ ? ଏପରି ସମୟରେ ଯୁବକମାନେ ଆଗଭର ହେବା କଥା ।"

ବ୍ରହ୍ମାଙ୍କର ସେ କଥା ଶୁଣି ଦେବତାମାନେ ଶିବଙ୍କୁ କହିଲେ : "ଭଗବାନ୍, ଆମେମାନେ ସମସ୍ତେ ସାଧାରଣ ଦେବତା । ଆପଣ ତ ଦେବାଧିଦେବ ମହାଦେବ । ତେଣୁ ଆପଣ ସବାଗ୍ରେ ଯାଆନ୍ତୁ ।"

ଶିବ କହିଲେ, "ଦେଖ ଭାଇ, ମୋର ଆଗେ ଯିବାରେ କୌଣସି ଆପତ୍ତି ନାହିଁ । ତୁମେମାନେ ସମସ୍ତେ ମୋର ସ୍ୱଭାବ ଜାଣିଛ । ମୋର ତ ସେହିଭଳି ରୁଦ୍ରରୂପ । ତମୋଗୁଣ ପ୍ରଧାନ ହୋଇଥିବା ହେତୁ କ୍ରୋଧ କରିବା ମୋର କାର୍ଯ୍ୟ । ବର୍ତ୍ତମାନ ଏ ମଧ୍ଯ କ୍ରୋଧ ପରିପୂର୍ଣ୍ଣ ହୋଇଛନ୍ତି । ଯଦି ମୋର ମଧ୍ଯ କ୍ରୋଧଜାତ ହେଲା, ତାହେଲେ ମୋର ତ କୌଣସି କ୍ଷତି ହେବ ନାହିଁ । ସବୁ ତମରି ଉପରେ ପଡ଼ିବ ।"

ଏହା ଶୁଣିବା ମାତ୍ରକେ ଇନ୍ଦ୍ର କହିଲେ, "ନା ନା ଭଗବାନ, ଆପଣଙ୍କ ଯିବା ଉଚିତ ହେବ ନାହିଁ । ଏ ସବୁ ସାଜସଜ ହୋଇଥିବା ନୃତ୍ୟକାରିଣୀ ଅପସରାମାନଙ୍କୁ ପଠାଯାଉ । ଏମାନଙ୍କର ରୂପଗର୍ବରେ ଏମାନେ କାହାକୁ କିଛି ବୋଲି ମନେ କରନ୍ତି ନାହିଁ । ଆଜି ଏମାନଙ୍କର ଭାବ-ଭଙ୍ଗିମା ଆଉ କଟାକ୍ଷର ପରୀକ୍ଷା କରାଯାଉ !"

ଏହା ଶୁଣିବା ମାତ୍ରକେ ଅପସରାମାନେ ସମସ୍ୱରରେ ଚିତ୍କାର କଲେ— "ଦେବେନ୍ଦ୍ର, ଆମକୁ କାହିଁକି ପଠାଇବେ, ବରଂ ନିଆଁରେ ଜାଳି ଦିଅନ୍ତୁ । ଗୋଟିଏ ବି ନଖାଘାତ ହେଲେ ଆମର ଯେଉଁ ଦୁର୍ଦ୍ଦଶା ହେବ ତା ଆପଣ ଜାଣନ୍ତି । ଆମେ ହାର

Digitized by srujanika@gmail.com

ମାନୁଛନ୍ତି । ଏଠାରେ ଆମର ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟ କୌଣସି କାମକୁ ଆସିବ ନାହିଁ । ଆମ କଥା ଛାଡ଼ନ୍ତୁ, ସଂସାରର କେହି ବି ସୁନ୍ଦରୀ ସ୍ତ୍ରୀ ଏହି ଭୟଙ୍କର ରୂପବନ୍ତ କୁପିତ ପ୍ରଭୁଙ୍କୁ ପ୍ରସନ୍ନ କରିବାକୁ ସମର୍ଥ ହେବ ନାହିଁ ।''

ପାଖରେ ଲକ୍ଷ୍ମୀ ଠିଆ ହୋଇଥିଲେ । ତାଙ୍କୁ ଏକଥା ଭଲ ଲାଗିଲା ନାହିଁ । ଅପସରାମାନଙ୍କୁ ଧମକ ଦେଇ କହିଲେ, ''ତୁମେମାନେ ଏହାକହି ସମଗ୍ର ନାରୀ ଜାତିର ଅପମାନ କରୁଛ । ପୁରୁଷ ଯେତେ କ୍ରୋଧିତ ହୋଇଥାଉ ପଛକେ ଯେତେବେଳେ ସ୍ତ୍ରୀ ପ୍ରେମପୂର୍ଣ୍ଣ ନେତ୍ରରେ ସ୍ନେହପୂର୍ବକ ତାକୁ ଦେଖେ, ସେତେବେଳେ ତାର ସମସ୍ତ କ୍ରୋଧ କର୍ପୂର ଭଳି ଉଡ଼ିଯାଏ । ତୁମମାନଙ୍କ ଭଳି ବାରାଙ୍ଗନାଙ୍କର କଥା ଅଲଗା । କେଉଁ ସତୀ ସାଧ୍ୱୀ ସ୍ତ୍ରୀ ଆପଣା ପତିର କ୍ରୋଧ ଶାନ୍ତ କରିବାକୁ ସମର୍ଥ ହେବ ନାହିଁ !''

ଅପସରାମାନେ ଏହା ଶୁଣି ହତବାକ୍ ହୋଇ ମୌନ ହୋଇଗଲେ । ସେମାନେ ଆପଣା ଭୁଲ୍ କଥା ଭାବି ମନେ ମନେ ପଶ୍ଚାତ୍ତାପ କଲେ । ସେ କଥା ଶୁଣି ଦେବତାମାନଙ୍କୁ ମଧ୍ୟ ସାହା ଭରସା ମିଳିଲା । ସେମାନେ ହାତଯୋଡ଼ି କହିଲେ, ''ମାତା, ଏଇନେ କେବଳ ଆପଣଙ୍କ ଦ୍ୱାରାହିଁ ଭୟଦୂର ହୋଇ ପାରିବ । ଆପଣ ହିଁ କୁପିତ ପ୍ରଭୁଙ୍କୁ ଶାନ୍ତ କରିବାକୁ ସର୍ବଥା ସମର୍ଥ ହୋଇପାରିବେ । ଆପଣଙ୍କ ଛଡ଼ା ଆମର ଅନ୍ୟ କୌଣସି ଗତି ନାହିଁ, ତ୍ରାଣର ଉପାୟ ନାହିଁ ।''

ଲକ୍ଷ୍ମୀ ସଗର୍ବ କହିଲେ, ''ଆରେ, ତୁମେମାନେ କାହିଁକି ଡ଼ରୁଛ ! ମୁଁ ଭଗବାନଙ୍କ ଆଗକୁ ଯିବାମାତ୍ରକେ ସେ ହସିଦେବେ । ମୋ ସହିତ ଶୁଭଚକ୍ଷୁ ହେବା ମାତ୍ରକେ ସେ ରାଗକଲେ ମଧ୍ୟ ରାଗି ପାରିବେ ନାହିଁ ।''

ବନସ୍ତ ସହିତ ଦେବତାମାନେ କହିଲେ, ''ତେବେ ମାତା, ଆପଣ ପଦାର୍ପଣ କରନ୍ତୁ । ସେଠାରେ ଅପସରାମାନେ ପରଦା ଦେଇ ଅନ୍ତରାଳ କରିଦେଲେ । ଲକ୍ଷ୍ମୀଙ୍କର କେଶ ବିନ୍ୟାସିତ କଲେ । ଲକ୍ଷ୍ମୀ ନେତ୍ରରେ ଅଞ୍ଜନ, ମୁଖରେ ତାମ୍ବୁଲ ଏ ପ୍ରକାର ଷୋଡଶମତେ ବସ୍ତ୍ର-ଭୂଷଣ-ମଣ୍ଡିତା ହୋଇ ପ୍ରେମପୂର୍ଣ୍ଣ ନେତ୍ରରେ ନିରେଖି ଅଧରରେ ମନ୍ଦହାସ ଉକୁଟାଇ ହଂସଗତିରେ ଆଗକୁ ବଢିବାକୁ ଲାଗିଲେ । କିନ୍ତୁ ମାତ୍ର ଆଗକୁ ଯିବା ମାତ୍ରକେ ନୃସିଂହ ଭଗବାନ କୁଟିଳ ଭ୍ରୂକୁଟୀ କରି ଲକ୍ଷ୍ମୀଙ୍କ ଆଡକୁ ବାହୁ ବିସ୍ତାର କରି ଗର୍ଜନ କଲେ । ଗର୍ଜନ କରିବା । ମାତ୍ରକେ ଲକ୍ଷ୍ମୀଙ୍କର ହଂସା ଉଡ଼ିଗଲା । ଆଖି ବୁଜି ହୋଇଗଲା । ଭୟରେ ଥର ଥର କମ୍ପିବାକୁ ଲାଗିଲେ । ବେଣୀରୁ ଫୁଲ ମାଳା ଖସିଗଲା । କେଉଁଠାରେ ବସ୍ତ୍ର ତ କେଉଁଠାରେ ଭୂଷଣ ଖସିଲେ । ସେ ହାତ ମୁଠେଇ ଏଭଳି ଭୟରେ ଦଉଡ଼ିବାକୁ ଲାଗିଲେ ଯେ ତାଙ୍କର କୁଟିଳ ଅଳକାବଳୀ ଏଣେ ତେଣେ ଉଡ଼ିବାକୁ ଲାଗିଲା । କେଶରାଶି ଆନ୍ଦୋଳିତ ହେଲା । ସୁବର୍ଣ୍ଣ ସଦୃଶ ଅଙ୍ଗ ପ୍ରତ୍ୟଙ୍ଗ ଝଟକି ଦେଖାଗଲା । ଗଳାର

Digitized by srujanika@gmail.com

ମାଳା ସମୂହ ଇତସ୍ତତଃ ହୋଇଗଲେ । ସମସ୍ତ ବସ୍ତ୍ରାଭରଣ ଅସ୍ତବ୍ୟସ୍ତ ହୋଇଗଲା । ଅପ୍‌ସରାମାନେ ତ ପୂର୍ବରୁ ଡର ଯାଇଥିଲେ । ସେମାନଙ୍କ ମଧ୍ୟରୁ ଆସି କମଳା ଭୟରେ ଥରିବାକୁ ଲାଗିଲେ ।

ଅପସରାମାନେ ପଚାରିଲେ, "କଣ ହେଲା ମାତା ? ମାଜ ମାତାଙ୍କର ଚେତନା ଥିଲେ ହିନା କଣ ହେଲା କହନ୍ତେ ! ସେ ଅତ୍ୟନ୍ତ ଡ଼ର ଯାଇଥିଲେ । କଣ୍ଠ ରୁଦ୍ଧ ହୋଇ ଯାଇଥିଲା । ସେ ଭୟ କମ୍ପିତ ସ୍ୱରରେ କହିଲେ, "ଭଉଣୀ, ମୁଁ ତ ତାଙ୍କର ଏଭଳି ଭୟଙ୍କର ରୂପ ଏହା ପୂର୍ବରୁ କେବେହେଲେ ଦେଖି ନଥିଲି । ମୋର ସନ୍ଦେହ ହେଉଛି ସେ ପ୍ରାଣନାଥ କି ନାଁ, ଆଉ କଏ ? ସେ ତ ଏଭଳି ଗର୍ଜନ କେବେହେଲେ କରନ୍ତି ନାହିଁ । ଏପରି ଭୟାନକ ସିଂହନାଦ ମଧ ମୁଁ ଏଥି ପୂର୍ବରୁ ଶୁଣି ନାହିଁ । ବସ୍ତ୍ରାଞ୍ଚଳରେ ମୁହଁ ଚାପି ଦେବାଙ୍ଗନାମାନେ ଲୁଚେଇ ଲୁଚେଇ ହସିବାକୁ ଲାଗିଲେ । ଲକ୍ଷ୍ମୀଙ୍କର ଏଭଳି ଦଶା ଦେଖି ବ୍ରହ୍ମାଙ୍କର ତାଙ୍କ ଉପରେ ଦୟା ଆସିଲା । ସେ ଭାବିଲେ—ଯାର ଗଣ୍ଠି ସେଇ ଖୋଲିବ । ପ୍ରଭୁ ପ୍ରହ୍ଲାଦ ଉପରେ କୃପାକଣ ପ୍ରକଟିତ ହୋଇଛନ୍ତି । ତେଣୁ ସେ ସେଇ ପ୍ରହ୍ଲାଦଙ୍କ ଦ୍ୱାରା ହିଁ ପ୍ରସନ୍ନ ହେବେ । ସେ ପ୍ରହ୍ଲାଦଙ୍କୁ ଡ଼ାକି କହିଲେ, "ବତ୍ସ, ତମେ ହିଁ ପ୍ରଭୁଙ୍କର ପାଦପଦ୍ମରେ ପ୍ରଣାମ କରିବାକୁ ଯାଇ ପାରିବ ।"

ପ୍ରହ୍ଲାଦ ଦୃଢ଼ କଣ୍ଠରେ କହିଲେ,—"ହଁ ଭଗବାନ ମୋର କି ଡର । ଆପଣଙ୍କର ଆଜ୍ଞାହେଲେ ମୁଁ ତାଙ୍କର ପାଦଛୁଇଁ ପାରିବ, କୋଳରେ ବସିଯିବି, ମୁହଁରେ ହାତ ଦେଇ ପାରିବ, ଦାଢ଼ୀ ନଣ ସାଉଁଳି ଦେବି । ପିତା ପାଖରେ ପୁଅର କି ଡର । ସିଂହ କଣ ତା'ର ପୁତ୍ରକନ୍ୟାଙ୍କୁ ସ୍ନେହକରେ ନାହିଁ !"

ଦେବତାମାନେ ପ୍ରସନ୍ନତା ପ୍ରକାଶ କରି ସମସ୍ୱରରେ କହିଲେ, "ହଁ, ତମେ ଯାଅ, ତୁମେ ହିଁ ଭଗବାନଙ୍କୁ ପ୍ରସନ୍ନ କରିପାରିବ ।'

ସମସ୍ତଙ୍କର ଆଜ୍ଞାପାଇ ପ୍ରହ୍ଲାଦ ଅତ୍ୟନ୍ତ ସରଳ ଭାବରେ ହସ୍ତାରେ ଲୁଗା ବାନ୍ଧି ଭଗବାନଙ୍କ ସମୀପକୁ ଗଲେ ଏବଂ ସିଂହାସନ ଉପରେ ବିରାଜିତ ନୃସିଂହ ଭଗବାନଙ୍କ ପାଦପଦ୍ମରେ ପ୍ରଣାମ କଲେ । ପ୍ରେମାଶ୍ରୁରେ ତାଙ୍କର ପାଦ ଧୋଇ ଦେଲେ ।

ପ୍ରହ୍ଲାଦଙ୍କୁ ପାଦତଳେ ସାଷ୍ଟାଙ୍ଗ ପ୍ରଣିପାତ କରି ରହିଥିବା ଦେଖି ପ୍ରେମ ପରିପୂର୍ଣ୍ଣ ହୃଦୟରେ ପ୍ରଭୁ ତାଙ୍କୁ ଆପଣାର କରକମଳରେ ଉଠାଇ ନେଲେ ଏବଂ ଗାଢ଼ ଆଲିଙ୍ଗନରେ ଆବଦ୍ଧ କଲେ । ମସ୍ତକ ଘ୍ରାଣ କଲେ ଏବଂ ନିଜର ଶୀତଳ ଅମୃତମୟ କର-ପଲ୍ଲବରେ ତାଙ୍କର ମନୋହର କେଶ ଆଉଁସି ଦେଲେ । କୋଳରେ ସ୍ନେହରେ ଧରି ଆଦର

Digitized by srujanika@gmail.com

କଲେ । ବାତ୍ସଲ୍ୟ ପ୍ରେମାପ୍ଲୁତ ହୋଇ ସେ ବାରମ୍ବାର ପ୍ରହ୍ଲାଦଙ୍କର ମୁଖ ଚୁମ୍ବନ କରିବାକୁ ଲାଗିଲେ । ପ୍ରହ୍ଲାଦ ସେହିଭଳି ଆନନ୍ଦ ନିମଗ୍ନ ଓ ସରଳ ଭାବରେ ତାଙ୍କର କୋଳରେ ବସି ରହିଥିଲେ ଯେଉଁଭଳି ଶିଶୁପୁତ୍ର ଆପଣାର ପ୍ରେମୀ ପିତାର କୋଳରେ ବସିଥାଏ ।

ଭଗବାନଙ୍କର ସୁଖଦ ସ୍ପର୍ଶ ଲାଭକରି ତାଙ୍କର ଶରୀର ଆନନ୍ଦରେ ରୋମାଞ୍ଚିତ ହୋଇ ଉଠୁଥିଲା । ତାଙ୍କର ସମସ୍ତ କୃତକର୍ମ ନାଶ ହୋଇ ସାରିଥିଲା ଓ ଭଗବାନଙ୍କର ବାସ୍ତବ ସ୍ୱରୂପର ବୋଧ ଜାଗ୍ରତ ହୋଇଥିଲା । ସ୍ୱରୂପ ସାକ୍ଷାତକାର ଫଳରେ ତାଙ୍କ ମଧ୍ୟରେ ଭୂତ, ବର୍ତ୍ତମାନ ଓ ଭବିଷ୍ୟତର ଜ୍ଞାନ ଉଦୟ ହୋଇଥିଲା । ହୃଦୟ-ସାଗରରେ ପ୍ରେମର ଜୁଆର ଉଛୁଳି ଉଠୁଥିଲା । ସ୍ନେହରେ ପ୍ଲାବିତ ହୋଇ ଉଠୁଥିଲା ହୃଦୟ । ତାଙ୍କର ନେତ୍ରରୁ ଆନନ୍ଦାଶ୍ରୁ ଝରଝର ଝରିବାକୁ ଲାଗିଲା । ସେ ଭଗବାନଙ୍କର ମନୋହର ମୂର୍ତ୍ତିର ଦର୍ଶନରେ ତୃପ୍ତ ହେଉନଥିଲେ । ସେ ଅପଲକ ନେତ୍ରରେ ନିର୍ବିଶେଷ ଭାବରେ ପ୍ରଭୁଙ୍କର ମୁଖମଣ୍ଡଳକୁ ଅନେଇ ରହିଥିଲେ ।

ନାରଦ କହୁଛନ୍ତି, "ରାଜନ୍ ! ଯେତେବେଳେ ପ୍ରେମାବେଗ କିଞ୍ଚିତ ହ୍ରାସ ହେଲା ଏବଂ କିଛି କିଛି ବାହ୍ୟଜ୍ଞାନ ଉଦୟ ହେବାକୁ ଲାଗିଲା, ସେତେବେଳେ ପ୍ରହ୍ଲାଦ ଗଦଗଦ କଣ୍ଠରେ ଭଗବାନଙ୍କର ସ୍ତୁତି ପାଠ କରିବାକୁ ଲାଗିଲେ ।

## ଛପ୍ପୟ

କମଲଯୋନି ପ୍ରହ୍ଲାଦ ବୁଲାୟେ ବୋଲେ ବାନୀ ।
ବେଟା ବିଭୁ ଅତି କୁପିତ ଡରୀଁ କମଲା ପଟରାନୀ ॥
ତୁମ ପ୍ରଭୁ କେ ହୋ ଭକ୍ତ ଚରନ ଢିଁଗ ଉନକେ ଜାଓ ।
କରି ବିନତୀ ପରି ପୈର କୁପିତ ନରହରିହିଁ ମନାଓ ॥
ତବ ବୋଲେ ପ୍ରହ୍ଲାଦ ବିଧି ! ନରହରି ଢିଁଗ ହୌଁ ଜାଉଁ ଗୋ ।
ବିନୟ କରୌଁ ଅତି ଦୀନ ହ୍ୱୈ, ସବ ବିଧି ପ୍ରଭୁହିଁ ମନାଉଁ ଗୋ ॥

—୦—

Digitized by srujanika@gmail.com

ପ୍ରତିଷ୍ଠାନ
ଓଡ଼ିଶା, ଭୁବନେଶ୍ୱର

# ପ୍ରହ୍ଲାଦଙ୍କଦ୍ୱାରା ଭଗବାନ ନୃସିଂହଙ୍କର ସ୍ତୁତି

ବ୍ରହ୍ମାଦୟଃ ସୁରଗଣା ମୁନୟୋଽଥ ସିଦ୍ଧାଃ
ସତ୍ତ୍ୱୈକତାନମତୟୋ ବଚସାଂ ପ୍ରବାହୈଃ ।
ନାରାଧିତୁଂ ପୁରୁଗୁଣୈରଧୁନାପି ପିପ୍ରୁଃ
କିଂ ତୋଷ୍ଟୁମର୍ହତି ସ ମେ ହରିରୁଗ୍ରଜାତେଃ ॥
(ଶ୍ରୀ ଭା. ୭।୯।୮)

## ଛପ୍ପୟ

ହେଁ ତୋ ଜଗ କେ ଈଶ ପ୍ରନତ କେ କେ ପ୍ରନ ପ୍ରତିପାଲକ ।
ହୌଲେ ହୌଲେ ଗୟେ ଜୋଋ କର ପ୍ରଭୁ ଢିଁଗ ବାଲକ ॥
ପରେ ଦଣ୍ଡବତ ଭୂମି ମାଁହି ଚରନନ ଲପଟାୟେ ।
ଦେଖି ଦୟାବଶ ହୌଋ ଦେବ ନେ ତୁରତ ଉଠାୟେ ॥
ଲଗୁ କପୋଲ କରତେଁ ଗହେ୍ୟା, ପୁନି ପୁନି ମୁଖ ଚୁମ୍ବନ କରୟୋ ।
ସିର ସୁଁଘେୟା ପୁନି ଲଈ ଉର, ଅଭୟ କରନ କର ସିର ଧରୟୋ ॥

ପରା, ପଶ୍ୟନ୍ତୀ, ମଧ୍ୟମା, ଏବଂ ବୈଖରୀ ଏହିଭଳି ବାଣୀ ଚାରି ପ୍ରକାରର ବୋଲି କୁହାଯାଇଛି । ଆମେ ସର୍ବସାଧାରଣ ଲୋକେ ବୈଖରୀ ବାଣୀରେ ହିଁ କଥା ହୋଇଥାଉଁ । ବୃତ୍ତି ଯେତେଯେତେ ଅନ୍ତର୍ମୁଖୀ ହେଉଥାଏ, ଭଗବତ୍ କୃପାରୁ ଆପଣାର ଇଷ୍ଟ ଅନୁଗ୍ରହ ଅନୁଭବ ଯେତେଯେତେ ହେଉଥାଏ, ସେହି ପରିମାଣରେ ବାଣୀ ଶ୍ରେଷ୍ଠ ଏବଂ ସୂକ୍ଷ୍ମ ହେଉଥାଏ । ଯେତେବେଳ ପର୍ଯ୍ୟନ୍ତ ଶରୀରରେ ଅଶୁଭ ସଂସ୍କାର ଥାଏ, ସେତେବେଳ ଯାଏ ବାଣୀ ମଧ୍ୟ ଅଶୁଭ ହୋଇଥାଏ । ପାପର ବିନାଶ ଘଟିବା ସଙ୍ଗେ ସଙ୍ଗେ ବାଣୀ ମଧ୍ୟ କ୍ରମଶଃ ବିଶୁଦ୍ଧ ହେଉଥାଏ । ଯେଉଁମାନେ ଭଗବାନଙ୍କର ସଂସ୍ପର୍ଶ ଲାଭ କରନ୍ତି,

Digitized by srujanika@gmail.com

କିମ୍ବା ଯାହା ଉପରେ କୃପା ପରାୟଣ ହୋଇ ଭଗବାନ ନିଜେ କାଳସର୍ପ ହେତୁ ଭୟଭୀତ ପୁରୁଷଙ୍କୁ ଅଭୟ ପ୍ରଦାନକାରୀ କରପଲ୍ଲବ ଦ୍ୱାରା ମସ୍ତକୋପରି କରୁଣା ବର୍ଷା କରିଥାନ୍ତି, ମାତ୍ର ସମସ୍ତ ଅଶୁଭ ତତ୍‌କ୍ଷଣାତ୍ ନାଶ ହୋଇଯାଏ । ତାପରେ ତାର ବାଣୀ ବେଦବାକ୍ୟ ସଦୃଶ ଶୁଭ ଏବଂ କଲ୍ୟାଣକାରିଣୀ ହୋଇଥାଏ । ତାଦ୍ୱାରା ଉଚ୍ଚାରିତ ସ୍ତୋତ୍ର ପରମ ଶକ୍ତିଶାଳୀ ତଥା ପ୍ରଭୁ କୃପା ପ୍ରାପ୍ତିର ସୁଖଦ ସାଧନ ସ୍ୱରୂପ ହୋଇଯାଏ ।

ଧର୍ମରାଜ ଯୁଧିଷ୍ଠିରଙ୍କୁ ନାରଦ କହୁଛନ୍ତି, "ରାଜନ୍, ଯେତେବେଳେ ଶ୍ରୀହରି ଆପଣାର ଶରଣାଗତ ଭକ୍ତ ପ୍ରହ୍ଲାଦଙ୍କ ଉପରେ କୃପାକଲେ, ତାଙ୍କର ମସ୍ତକ ଉପରେ ବରଦହସ୍ତ ରଖିଲେ, ସେତେବେଳେ ପ୍ରହ୍ଲାଦଙ୍କର ସକଳ ଅଶୁଭ ନାଶ ହେଲା । ତାଙ୍କର ପ୍ରଜ୍ଞା ବିଶୁଦ୍ଧ ହୋଇଗଲା । ସେହି ବିଶୁଦ୍ଧ ବାଣୀରେ ସେ ବିଶ୍ୱେଶ୍ୱର ଶ୍ରୀହରିଙ୍କର ସ୍ତୁତିପାଠ କଲେ ।

ଶ୍ରୀ ସୂତ, ସୌନକ ଆଦି ମୁନିମାନଙ୍କୁ କହୁଛନ୍ତି, "ହେ ଋଷିମଣ୍ଡଳୀ, ପ୍ରହ୍ଲାଦ ଯେଉଁ ସ୍ତୁତିକଲେ ତା'ର ପ୍ରତ୍ୟେକ ପଦ ଅମୂଲ୍ୟ । ସେ ସ୍ତୁତି ଆଉ କିଛି ନୁହେଁ, ସମସ୍ତ ଶାସ୍ତ୍ରର ସାର । ଜ୍ଞାନରୂପୀ ସାଗର ମନ୍ଥନ କରି ସେହି ସ୍ତୁତିରୂପକ ଅମୃତ ବାହାର କରାଯାଇଛି । ତାହା ଭକ୍ତିରୂପୀ ଦୁଗ୍‌ଧର ମଧୁର ମନୋହର ଲହୁଣୀ ଅଟେ । ସେଥିରେ ପ୍ରହ୍ଲାଦଙ୍କର ବାଣୀ ନୁହେଁ, ପ୍ରହ୍ଲାଦଙ୍କର ହୃଦୟର ପୂର୍ଣ୍ଣ ଆବେଗ ହିଁ ରହିଛି ।

ସର୍ବ ପ୍ରଥମେ ପ୍ରହ୍ଲାଦ ଅସୁର ହୋଇଥିବା ହେତୁ ଆପଣାର ହୀନତ୍ୱ ପ୍ରଦର୍ଶନ କରିଛନ୍ତି । ତାପରେ ଭକ୍ତବତ୍ସଳ, ଭକ୍ତପ୍ରିୟ ଭଗବାନଙ୍କ ନିକଟରେ ଉଚ୍ଚନୀଚର ଭେଦାଭେଦ ନଥିବା ସିଦ୍ଧାନ୍ତ ସ୍ଥିରକରି ଆପଣାର ଦୃଷ୍ଟାନ୍ତ ଦେଇଛନ୍ତି । ତାପରେ ଦେବତା-ମାନଙ୍କ ପ୍ରତି ସଙ୍କେତ ଦେଇ ସେମାନଙ୍କୁ ବିପଦଗ୍ରସ୍ତ ଦେଖି ପ୍ରଭୁଙ୍କ ନିକଟରେ କ୍ରୋଧ ପରିତ୍ୟାଗ କରିବାକୁ ପ୍ରାର୍ଥନା କରିଛନ୍ତି ।

ଯେତେବେଳେ ପ୍ରହ୍ଲାଦ ଏହିଭଳି ଅମୃତମୟ ଶୁଦ୍ଧ ଜ୍ଞାନର କଥା ନିର୍ଭୟ ଚିତ୍ତରେ କହିଗଲେ, ଭଗବାନ ସେତେବେଳେ ସ୍ନେହରେ ପଚାରିଲେ, "ବତ୍ସ, ତୋତେ ମୋର ଭୟାନକ ମୁଖ, ଲହଲହ ଜିହ୍ୱା, ବିଶାଳ ଦନ୍ତ ନଖ ଦେଖି ଭୟ ହେଉନାହିଁ ?"

ଏହା ଶୁଣି ପ୍ରହ୍ଲାଦ କହିଲେ, "ପ୍ରଭୁ, ପିତାମାତାଙ୍କୁ ପୁତ୍ର ଭୟ କରିବ କେଉଁପରି ? ମୁଁ ତ ଆପଣଙ୍କର ମୁଖ ପର୍ଯ୍ୟନ୍ତ ହାତ ଦେଉଛି ।" ଏହା କହି ସେ ଭଗବାନଙ୍କର ବିଶାଳ ତୀକ୍ଷ୍ଣ ଦାନ୍ତକୁ କୋମଳ ପିପ୍‌ପଳ ପତ୍ର ଭଳି ତାଙ୍କର ଅରୁଣାଭ କୋମଳ ଅଙ୍ଗୁଳିମାନଙ୍କରେ ଧରିନେଲେ । ଏହା ଦେଖି ଭଗବାନ ମୁରୁକି ହସିଲେ । ଦେବତା-

Digitized by srujanika@gmail.com

ମାନଙ୍କର ମଧ୍ୟ ଭସ୍ମ ଦୂରୀଭୂତ ହୋଇଗଲା । ଭଗବାନ ହସିଲେ ତ ! ତା'ପରେ ପ୍ରହ୍ଲାଦ ଦାସ୍ୟଭାବର ଭୂୟସୀ ପ୍ରଶଂସା କରି ଭଗବାନଙ୍କ ନିକଟରେ ତାଙ୍କୁ ଦାସଭାବରେ ଗ୍ରହଣ କରିବାକୁ ପ୍ରାର୍ଥନା କଲେ । ଆପଣ ହିଁ ମୋର ମାତାପିତା, ବନ୍ଧୁବାନ୍ଧବ ଓ ସର୍ବସ୍ୱ ଅଟନ୍ତି । ତାହାପରେ ଏ ସଂସାରଚକ୍ର ଭଗବାନଙ୍କର ପ୍ରେରଣାପ୍ରାପ୍ତ ହୋଇ କିଭଳି ଘୂରୁଛି ତାହା ବ୍ୟାଖ୍ୟା କଲେ । କହିଲେ, ଏଥିରେ ପଡ଼ି ପ୍ରାଣୀ କେଉଁପରି ପେଷି ହେଉଛି ଏବଂ ସେ ହିଁ କେବଳ ବଞ୍ଚିପାରିବ, ଯାହା ଉପରେ ଆପଣଙ୍କର କୃପା ଅଛି । ତେଣୁ ହେ ନାଥ, ମୋ ପ୍ରତି କୃପାପରବଶ ହୁଅନ୍ତୁ । ମୋତେ ଏହି ଚକ୍ରରୁ ରକ୍ଷା କରନ୍ତୁ । ପ୍ରଭୁ, ଆପଣ ମୋ ଉପରେ ଯେଉଁଭଳି କୃପା କରିଛନ୍ତି, ସେଇଭଳି କୃପା ପୂର୍ବ ବ୍ରହ୍ମାଙ୍କ ପ୍ରତି ପତ୍ନୀ ଲକ୍ଷ୍ମୀଙ୍କ ପ୍ରତି ତଥା ଆପଣାର ଅଂଶଭୂତ ଦେବତାମାନଙ୍କ ପ୍ରତି ମଧ୍ୟ କରିନାହାନ୍ତି ।

ଏହିପରି ଭାବରେ ପ୍ରହ୍ଲାଦ ଈଶ୍ୱରଙ୍କର ବହୁ ସ୍ତୁତି କଲେ । ଶ୍ରୀ ସୂତ କହୁଛନ୍ତି, "ହେ ମୁନିଗଣ, ମୁଁ ଏହି କଥା ପ୍ରସଙ୍ଗରେ ସେହି ସ୍ତୁତିର ବର୍ଣ୍ଣନା କରିବାକୁ ନିତାନ୍ତ ଅକ୍ଷମ । ଅବସର ମିଳିଲେ ସେହି ଦିବ୍ୟ ସ୍ତୁତିର ବର୍ଣ୍ଣନା ପୃଥକ ଭାବରେ ସ୍ତୋତ୍ର ପ୍ରକରଣରେ କରିବି ।"

ଏହାଶୁଣି ଶୌନକ କହିଲେ, "ହେ ସୂତ, ଆମେ ତ ପ୍ରହ୍ଲାଦଙ୍କର ଏକରୁ ଆରେକ ବଳି ଆଶ୍ଚର୍ଯ୍ୟ କଥା ଶୁଣୁଛୁ । ତେବେ ହେ ମହାଭାଗ, ସେ ସ୍ତୋତ୍ର ଶ୍ରବଣକରି ଭଗବାନ କଣ କହିଲେ ? ସେ କଥା ଆମକୁ ଅଧିକ କହନ୍ତୁ ।"

ଏହା ଶୁଣି ସୂତ କହିଲେ, "ମୁନିଗଣ, ପ୍ରହ୍ଲାଦଙ୍କର ସ୍ତୁତି ଶୁଣି ଭଗବାନ ତାଙ୍କୁ ଆଲିଙ୍ଗନ କରି ମୁଖ ଚୁମ୍ବନ କଲେ । କହିଲେ, "ପ୍ରହ୍ଲାଦ, ମୁଁ ତୋର ସରଳତା, ଏକାନ୍ତ ନିଷ୍ଠା ଏବଂ ଅହେତୁକୀ ଭକ୍ତି ହେତୁ ଅତ୍ୟନ୍ତ ପ୍ରସନ୍ନ । ତୁମେ ମୋଠାରୁ ଯାହା ଇଚ୍ଛା ତାହା ବର ନିଅ । ମୋତେ ପ୍ରସନ୍ନ କରି ଯେ କୌଣସି ବର ମାଗିବାକୁ ସଂକୋଚ ବୋଧ କରନାହିଁ । ସଂକୋଚ ତ ସେହିମାନେ କରନ୍ତି ଯେଉଁମାନଙ୍କ ହୃଦୟରେ ଭଗବତ୍ ଭକ୍ତି ନଥାଏ, ଯେଉଁମାନେ ଆପଣାକୁ କର୍ତ୍ତା ବୋଲି ମନେ କରିଥାନ୍ତି ଓ ଯେଉଁମାନେ ଏହି ସଂସାରି ପଦାର୍ଥକୁ ହିଁ ସର୍ବଶ୍ରେଷ୍ଠ ମନେ କରନ୍ତି । ହେ ଆୟୁଷ୍ମାନ, ଯେ ମୋତେ ଭକ୍ତି ଦ୍ୱାରା ପ୍ରସନ୍ନ କରିଛି ତା'ର କେଉଁ କଥାର ଅଭାବ ହେବ ? ସେ କେବେହେଲେ କୌଣସି ପ୍ରକାର ବସ୍ତୁର ଆଦାନ ପ୍ରଦାନର ଲୋଭ କିମ୍ବା ସଂକୋଚ କରିବ ନାହିଁ । ବସ୍ତୁର ଅଭାବ ଜନିତ କ୍ଳେଶ ପ୍ରାଣୀର ସେତେବେଳ ପର୍ଯ୍ୟନ୍ତ ହୋଇଥାଏ, ଯେତେବେଳ ପର୍ଯ୍ୟନ୍ତ ସେ ମୋର ଦର୍ଶନଲାଭ କରି ନଥାଏ । ମୋର ଦର୍ଶନ ପ୍ରାପ୍ତି ମାତ୍ରକେ ତା'ର 'ମୋର ଅମୁକର କାମନା ଅପୂର୍ଣ୍ଣ ରହିଗଲା' ବୋଲି କହିବାର ଅବସର ଆସିପାରେ ନାହିଁ । ଭଗବତ୍ ଭକ୍ତ ସାଧୁଜନମାନେ ସବୁ କିଛି ପରିତ୍ୟାଗକରି ମୋର ପ୍ରସନ୍ନତା ନିମନ୍ତେ ସତତ

Digitized by srujanika@gmail.com

ପ୍ରଚେଷ୍ଟା କରିଥାନ୍ତି । ଯେହେତୁ ସେହି ପ୍ରସନ୍ନତାରେ ହିଁ ସବୁକିଛି ସିଦ୍ଧି ସନ୍ନିହିତ ହୋଇ ରହିଛି । ତୁମେ ମୋତେ ଭକ୍ତି ଭାବରେ ପ୍ରସନ୍ନ କରିନେଇଛ । ତେଣୁ ମୋଠାରୁ ଯାହାଇଚ୍ଛା ସେଇ ବର ମାଗି ନିଅ ।”

ଶ୍ରୀ ସୂତ କହୁଛନ୍ତି, “ହେ ମୁନିଗଣ, ବାଳକ ପ୍ରହ୍ଲାଦଙ୍କ ପାଇଁ ଏହା ସବୁଠାରୁ ବଡ଼ ପ୍ରଲୋଭନ ଥିଲା । ଯେ ଏସବୁ ବିଷୟକୁ ତୁଚ୍ଛ ମନେକରି ନାହିଁ, ଯେ ଇନ୍ଦ୍ରିୟ ମାନଙ୍କୁ ଜୟ କରି ନାହିଁ, ଯଦି ତାହା ଆଗରେ ଏପରି ପ୍ରଲୋଭନ ଉପସ୍ଥିତ ହୁଏ ଏବଂ ଶ୍ରୀହରି ସ୍ୱୟଂ ତାକୁ ଇଚ୍ଛାମତେ ବରଦାନ କରିବାକୁ କହିଥାନ୍ତେ, ତା'ହେଲେ ସେ ଅବଶ୍ୟ ପ୍ରଲୋଭିତ ହୋଇଥାନ୍ତା । ମାତ୍ର ପ୍ରହ୍ଲାଦ ତ ଆପଣାର ସମସ୍ତ ଇନ୍ଦ୍ରିୟ-ବୃତ୍ତି ସଂଯତ କରିଥିଲେ ଏବଂ ତାଙ୍କ ଦୃଷ୍ଟିରେ ଏହି ସବୁ ସାଂସାରିକ ପଦାର୍ଥ ଅତ୍ୟନ୍ତ ତୁଚ୍ଛ ଏବଂ ଗର୍ହଣୀୟ ହୋଇ ସାରିଥିଲା । ଏଣୁ ଈଶ୍ୱର ତାଙ୍କୁ ଯେତେ ପ୍ରଲୋଭିତ କରିଥିଲେ ହେଁ ତାଙ୍କର କୌଣସି ପ୍ରକାର ବିକାର ଜାତ ହେଲାନାହିଁ । ସେ ସେଇଭଳି ନିଷ୍କାମ ରହିଥିଲେ ।

ଧର୍ମରାଜ ଯୁଧିଷ୍ଠିରଙ୍କୁ ନାରଦ କହୁଛନ୍ତି, “ରାଜନ୍, ଏପରି ଭାବରେ ଯେତେବେଳେ ପ୍ରଭୁ ପ୍ରସନ୍ନ ହୋଇ ବାରମ୍ବାର ପ୍ରହ୍ଲାଦଙ୍କୁ ବର ମାଗିବାକୁ କହିଲେ ସେତେବେଳେ ପ୍ରହ୍ଲାଦ କିଛି ସମୟ ମୌନ ରହି ସେଇ କଥା ଉପରେ ଗମ୍ଭୀର ବିଚାର କଲେ । ପରି-ଶେଷରେ ସେ ଯେତେବେଳେ ସ୍ଥିର କରିନେଲେ ଯେ ସାଂସାରିକ ଭୋଗ ଭକ୍ତି-ଯୋଗ-ପଥର ପଥିକ ପାଇଁ ଏକ ବିରାଟ ବିଘ୍ନ, ସେତେବେଳେ ସେ ହସି ହସି ଭଗବାନଙ୍କୁ କହିବାକୁ ଉଦ୍ୟତ ହେଲେ ।

## ଛପ୍ପୟ

ବୋଲେ ଶ୍ରୀ ପ୍ରହ୍ଲାଦ କୃତାରଥ ଭୟୋ ନାଥ ଅବ ।
ପରସେ ପାବନ ପାଦ ପଦୁମ ଦୁଖ ଦୂରୀ ଭୟେ ସବ ॥
କାହି ବିଧି ବିନତୀ କରୂଁ ଆପ ହରି ଅନ୍ତରଜାମୀ ।
ଭଟକେଁ ଜଗମହଁ ଜୀବ ଉବାରୌ ତିନକୂଁ ସ୍ୱାମୀ ॥
ବିନତୀ ସୁନି ପ୍ରହ୍ଲାଦ କୀ, ଭୟେ ମୁଦିତ ଶ୍ରୀ ରମାପତି ।
ମଧୁର ବଚନ ବୋଲେ ବିହଁସି, ବାରବାର କରି ପ୍ୟାର ଅତି ॥

—*—

Digitized by srujanika@gmail.com

# ପ୍ରହ୍ଲାଦଙ୍କର ବିଚିତ୍ର ବରପ୍ରାପ୍ତି

ଯଦି ରାସୀଶ ମେ କାମାନ୍ ବରାଂସ୍ତ୍ୱଂ ବରଦର୍ଷଭ ।
କାମାନାଂ ହୃଦ୍ୟ ସଂରୋହଂ ଭବତସ୍ତୁ ବୃଣେ ବରମ୍ ॥
—ଶ୍ରୀ. ଭା. ୭ । ୧୦ । ୭

## ଛପ୍ପୟ

ଅତି ପ୍ରସନ୍ନ ହ୍ୱୈ ବତ୍ସ ମାଁଗୁ ତୂଁ ବର ମନ ଭାୟୌ ।
ସକଲ ମନୋରଥ ସଫଲ କରନ ହିତ ହୀ ହୌଁ ଆୟୌ ।
ସୁନି ବୋଲେ ପ୍ରହ୍ଲାଦ ନ ହରି ! ବର ତୈଁ ଲଲଚାବୈ ।
ବିଷୟନି ତୈଁ କରି ଦୂରି ଅଖିଲପତି ଅପନାବୈ ॥
ନାହିଁ ମାଗହୁଁ ବର ବିଷୟ ସୁଖ, ସଦାନାଥ ! ହିୟମହିଁ ବସହୁଁ ।
କରୁନାମୟ କରୁନା କରହୁଁ, କବହୁଁ କାମନା ଉଠହିଁ ନହିଁ ॥

ଯେଉଁମାନେ ଭଗବତ୍ କୃପାର ଅନୁଭବ କରି ସାରିଛନ୍ତି, ସେମାନେ ସଂସାରି ବିଷୟଭୋଗର ବନ୍ଧନରେ କାହିଁକି ବାନ୍ଧି ହେବାକୁ ଯିବେ ? ଏ ସଂସାରି ଭୋଗର ପରିଣାମ ତ ସବୁବେଳେ ଦୁଃଖଦ । ସୁଖ ସ୍ୱରୂପ ଶ୍ରୀହରିଙ୍କୁ ପ୍ରସନ୍ନ କରି ମଧ୍ୟ ତାଙ୍କ ନିକଟରୁ ବିଷୟସୁଖର ଇଚ୍ଛାକରିବା ଅର୍ଥ କଳ୍ପବୃକ୍ଷ ତଳେ ପହଞ୍ଚି ଫଟା କୁଡୁଆ ଆଉ ମୁଠାଏ ଚଣାଭଜା ମାଗିନେବା । ଚକ୍ରବର୍ତ୍ତୀଙ୍କୁ ପ୍ରସନ୍ନକରି ତାଙ୍କଠାରୁ କିଛି ଗୁହଳ କୁଣ୍ଡା ମାଗିବା । ମୋକ୍ଷପତି ପ୍ରଭୁଙ୍କ ନିକଟରୁ ବନ୍ଧନ ସାଧନ ସାମଗ୍ରୀର ଇଚ୍ଛା କରିବା ମୂର୍ଖତା ଛଡ଼ା ଆଉ କ'ଣ ହୋଇପାରେ ?

ଶ୍ରୀ ନାରଦ ଧର୍ମରାଜ ଯୁଧିଷ୍ଠିରଙ୍କୁ କହୁଛନ୍ତି—"ରାଜନ ଯେତେବେଳେ ଭଗବାନ ପ୍ରହ୍ଲାଦଙ୍କୁ ବାରମ୍ବାର ବରମାଗ, ବରମାଗ ବୋଲି କହିଲେ, ସେତେବେଳେ ପ୍ରହ୍ଲାଦ ପ୍ରେମ-ସ୍ନେହ-ପୂର୍ଣ୍ଣ କଣ୍ଠରେ କହିଲେ, "ପ୍ରଭୁ, ମୋ ଉପରେ କୃପା କରନ୍ତୁ, ପ୍ରମତ୍ତକୁ ଅଧିକ ସୁରାପାନ କରାନ୍ତୁ ନାହିଁ । ଅନ୍ଧକୁ ଅଧିକ ପଥଭ୍ରଷ୍ଟ କରାନ୍ତୁ ନାହିଁ । ପତିତକୁ ଅଧିକ ପତିତ କରାନ୍ତୁ ନାହିଁ । କ୍ଷତ ଉପରେ ପୁଣି ଶସ୍ତ୍ର ଚାଳନା କରନ୍ତୁ ନାହିଁ । କ୍ଷୁଧାର୍ତ୍ତଙ୍କୁ ସୁମିଷ୍ଟ ଭୋଜନର ଲୋଭ ଦେଖାନ୍ତୁ ନାହିଁ । କାମୀକୁ ଅଧିକାଧିକ କାମ ସାମଗ୍ରୀ ପ୍ରଦାନ କରନ୍ତୁ ନାହିଁ । ମୁଁ ତ ସ୍ୱଭାବତଃ ଭୋଗାସକ୍ତ, ମୋତେ ବର ଆଦିର ଲୋଭ କାହିଁକି ପ୍ରଦାନ କରୁଛନ୍ତି ?"

Digitized by srujanika@gmail.com

ଭଗବାନ ହସି ହସି କହିଲେ, "ନଶ୍ୱର ଏବଂ ନ୍ୟୂନ ଭୋଗଦ୍ୱାରା ଦୁଃଖ ହୋଇଥାଏ । ତୁମେ ଶାଶ୍ୱତ ଭୋଗପାଇଁ ପର୍ଯ୍ୟାପ୍ତ ସାମଗ୍ରୀ ମାଗିନଅ । ସାଂସାରିକ ଭୋଗ ନୁହେଁ, ସ୍ୱର୍ଗର ଚିରସ୍ଥାୟୀ ସୁଖଭୋଗ ମାଗିନଅ, ଅକ୍ଷୟଲୋକ ମାଗିନଅ ।"

ପ୍ରହ୍ଲାଦ କହିଲେ, "ପ୍ରଭୁ, ଭୂଲୋକ ଠାରୁ ଆରମ୍ଭକରି ବ୍ରହ୍ମଲୋକ ପର୍ଯ୍ୟନ୍ତ ସମସ୍ତ ପାର୍ଥିବ ବା ଦିବ୍ୟ ସୁଖ ନଶ୍ୱର ଅଟନ୍ତି ! କାହାର ଅଳ୍ପ ସମୟ ମଧ୍ୟରେ କାହାର ଅଧିକ ସମୟରେ ନାଶ ଅବଶ୍ୟ ହେବ । ଏମାନେ କ୍ଷୟିଷ୍ଣୁ । ଏମାନେ ସମସ୍ତେ ଅନ୍ତବନ୍ତ । ପୁନଃ ପୁନଃ ଜନ୍ମମୃତ୍ୟୁର ଚକ୍ରରେ ଘୂରେଇବା ବସ୍ତୁ, ଅଶାଶ୍ୱତ ଏବଂ ବନ୍ଧନର କାରଣ । ମୁଁ ତ ଏହି ବନ୍ଧନରୁ ମୁକ୍ତ ହେବା ନିମନ୍ତେ ଆପଣଙ୍କର ଶରଣାପନ୍ନ ହୋଇଛି ।"

ଭଗବାନ ହସି ହସି କହିଲେ, "ବାବୁ, ମୁଁ ତମର ଅହିତ କାମନା କରୁନାହିଁ । ବର୍ତ୍ତମାନ ପର୍ଯ୍ୟନ୍ତ ତୁମକୁ ତୁମର ପିତା ନା ନା ପ୍ରକାର କଷ୍ଟ ଦେଇଛନ୍ତି । ଏଣିକି ସୁଖରେ ରହି ବୋଲି ବର ମାଗିବାକୁ କହିଲି ।"

ପ୍ରହ୍ଲାଦ ଚଞ୍ଚଳ ଉତ୍ତର ଦେଲେ, "ନା ପ୍ରଭୁ, ମୋର ଅଭିପ୍ରାୟ ତାହା ନୁହେଁ । ଆପଣ ମୋର ଅହିତ କରିବାପାଇଁ ବିଷୟ ସୁଖ ଦେଉଛନ୍ତି ସେଭଳି ପ୍ରତୀତ ହେଉନାହିଁ, ବରଂ ଆପଣ ମୋର ପରୀକ୍ଷା କରୁଛନ୍ତି । ତେଣୁ ସିନା ସଂସାର ଦିଗକୁ କଢେଇ ନେବାଭଳି ବିଷୟ ନିମନ୍ତେ ପ୍ରେରିତ କରୁଛନ୍ତି । ଆପଣ ଏହା ଦେଖିବାକୁ ଚାହାନ୍ତି ଯେ ଏହାର ବିଷୟ ଆସକ୍ତି କେତେ ଅଛି । ହେ ଜଗଦ୍‌ଗୁରୁ, ମୁଁ ତ ବିଷୟୀ, ଏହି ବିଷୟମାନଙ୍କର ଦୁଃସହ ଦୁଃଖକୁ ଡରି ମୁଁ ଆପଣଙ୍କର ଆଶ୍ରୟ ଗ୍ରହଣ କରିଛି । ଆପଣ ମୋତେ ବିଷୟ ବନ୍ଧନରେ ବାନ୍ଧିବାକୁ ଚାହାନ୍ତି ନାହିଁ । ଏଭଳି ଆପଣ କାହିଁକି କରିବେ ଭଲା ? କେବଳ ମାତ୍ର ପରୀକ୍ଷା କରିବାକୁ କହୁଛନ୍ତି । ମୁଁ ମୋର ପୁରୁଷାର୍ଥଦ୍ୱାରା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପାରିବି ନାହିଁ । ଆପଣ ହିଁ କୃପା କରନ୍ତୁ, ମୁଁ ଉତ୍ତୀର୍ଣ୍ଣ ହୋଇଯାଏ ବୋଲି । ଆପଣ ଇଚ୍ଛାକଲେ ହୋଇଯିବ ।"

ଭଗବାନ କହିଲେ, "ଦେଖ, ପ୍ରେମରେ କୃତଜ୍ଞତା ପ୍ରକାଶନ ଆବଶ୍ୟକ ହୋଇ ଥାଏ । ସ୍ନେହୀ ନିଜର ଅପର ସ୍ନେହୀଜନ ନିକଟକୁ ଉପହାର ପଠାଇଥାଏ । ଏହାତ ସାଧାରଣ ସୌଜନ୍ୟ ବ୍ୟବହାରର କଥା । ତୁମେ ମୋ ପ୍ରତି ଏତେ ଭକ୍ତିଭାବ ରଖିଛ, ତେଣୁ ମୋ ପକ୍ଷରେ ମଧ୍ୟ ତୁମକୁ ବର ଦେବା ଉଚିତ ।"

ପ୍ରହ୍ଲାଦ ହସି ହସି କହିଲେ, "ପ୍ରଭୁ, ଆପଣ ଅକର୍ତ୍ତା-ବୃତ୍ତି ଦେଉଛନ୍ତି । ପରମାର୍ଥରେ ଏହି ବ୍ୟବହାରର ପ୍ରଶଂସା ନାହିଁ । କେବଳ ସ୍ୱାମୀଠାରୁ ଯେ ଆପଣାର କାମନା ପୂର୍ତ୍ତିର ଇଚ୍ଛାରଖେ ତାହା ବାସ୍ତବିକ ସେବା ନୁହେଁ ଏବଂ ସେ ସେବକ ଦ୍ୱାରା

Digitized by srujanika@gmail.com

ଆପଣାର ସବୁ କାର୍ଯ୍ୟ କରାଇ ତା ବଦଳରେ ଯତ୍‌କିଞ୍ଚିତ୍ ଧନବସ୍ତ୍ର ଆଦି ହିଁ ଦେଇଥାଏ, ପ୍ରେମ କରେ ନାହିଁ, ଆପଣାର ଭାବ ରଖେ ନାହିଁ, ସେ ସ୍ୱାମୀ ପ୍ରକୃତ ସ୍ୱାମୀ ନୁହେଁ । ସାଂସାରିକ ବସ୍ତୁର ସେତେ ମହତ୍ତ୍ୱ ନାହିଁ; ପ୍ରେମର ହିଁ ମହତ୍ତ୍ୱ ଅଛି । ନିରପେକ୍ଷ ନିଷ୍କାମ ଭାବରେ କରିଥିବା ସେବା ହିଁ ପ୍ରକୃତ ସେବା । ପ୍ରଭୁ ମୁଁ ଆପଣଙ୍କ ପ୍ରତି ଭକ୍ତି ବିଷୟ-ଭୋଗର କାମନାରେ କରିନାହିଁ । ଆପଣ ମଧ୍ୟ ତାର ପ୍ରତିବଦଳରେ ବିଷୟ-ଭୋଗର ବରଦାନ ଦେଇ ମୋର ସେହି ଭକ୍ତିର ମହତ୍ତ୍ୱ ହ୍ରାସ କରିବା ଠିକ ନୁହେଁ । ମୁଁ ଆପଣଙ୍କର ନିଷ୍କାମ ଭକ୍ତ । ଆପଣ ମୋର ପ୍ରକୃତ ସ୍ୱାମୀ । ତେଣୁ ଆପଣ ମୋତେ ଅପଣାର କରନ୍ତୁ । ଏହି ସଂସାରୀ ବରର ଲୋଭ ବନ୍ଧନରେ ବାନ୍ଧିଦିଅନ୍ତୁ ନାହିଁ ।”

ପ୍ରହ୍ଲାଦଙ୍କର ଏହି ଯୁକ୍ତିଯୁକ୍ତ କଥା ଶୁଣି ଭଗବାନ କହିଲେ, “ଦେଖ, ଏହି ଆଦାନ-ପ୍ରଦାନ ହିଁ ପ୍ରେମର ଲକ୍ଷଣ । ନିର୍ଦ୍ଧନ ପିତା ଆପଣାର ପୁତ୍ରୀକୁ, ସେ ଯେତେ ଧନୀ ପରିବାରରେ ବିବାହ କରିଥାଉ ପଛକେ, ବସ୍ତ୍ର ଆଦି ଦେଇଥାଏ । ମିତ୍ର ମଧ୍ୟ ମିତ୍ରଙ୍କୁ କିଛି ପ୍ରଦାନ କରିଥାନ୍ତି । ଦେବା ସମୟରେ ସେ ବସ୍ତୁର କୌଣସି ମହତ୍ତ୍ୱ ନଥାଏ । ପ୍ରେମ ନିରାକାର ବସ୍ତୁ । ଏମାନଙ୍କ ସାଙ୍ଗରେ ସେ ପ୍ରେମଦାନ କରିଥାନ୍ତି । ଦେବା ସେହି ପ୍ରେମର ଅଭିବ୍ୟକ୍ତି ସ୍ୱରୂପ ଏବଂ ପ୍ରୀତିର ସୂଚକ । ଦେବା-ନେବାରେ ପାରସ୍ପରିକ ପ୍ରେମ ବଢେ । ଏଣୁ ମୋଠାରୁ ତୁମେ କିଛି ମାଗିନିଅ, ତାହା ଦେବାରେ ମୋର ପ୍ରସନ୍ନତା ଆସିବ ।”

ଏହା ଶୁଣି ପ୍ରହ୍ଲାଦ କହିଲେ, “ହେ ବରଦାନୀଙ୍କ ମଧ୍ୟରେ ଶ୍ରେଷ୍ଠ, ଯଦି ଆପଣ ଦେବାକୁ ଆଗ୍ରହ ପ୍ରକାଶ କରୁଛନ୍ତି, ତାହେଲେ ଗୋଟିଏ ମାତ୍ର ବର ଆପଣଙ୍କୁ ମାଗିବି; ଆପଣ କଣ ଦେବେ ?”

ଭଗବାନ ସସ୍ନେହ କହିଲେ, “ବତ୍ସ, ମୋ ପାଖରେ ସେଭଳି କଣ ଅଛି ଯାହା ତୁମ ପାଇଁ ଅଦେୟ । ତୁମେ ଯାହା ବି ଇଚ୍ଛାକର ନିଃସଙ୍କୋଚରେ ମାଗିପାର ।”

ଏହାଶୁଣି ପ୍ରହ୍ଲାଦ କହିଲେ, “ଆପଣ ଦେବାକୁ ଚାହୁଁଛନ୍ତି ଯଦି ମୋତେ ସେହି ବରଦାନ କରନ୍ତୁ, ଯେପରି ମୋ ମନରେ କୌଣସି କାମନା ଜାଗରିତ ନ ହେଉ । ବିଷୟ ଉପଭୋଗ ନିମନ୍ତେ ଅନ୍ତଃକରଣରେ ଅଙ୍କୁର ଉଦ୍‌ଗମ ମଧ୍ୟ ନହେଉ ।”

ଏହା ଶୁଣି ଭଗବାନ ହସିଲେ ଏବଂ ସ୍ନେହରେ କହିଲେ, “ଏହା କେଉଁଭଳି ବର ! କାମନାପ୍ରତି ଏତେ ଭୟ କାହିଁକି କରୁଛ ?”

ପ୍ରହ୍ଲାଦ କହିଲେ, “ପ୍ରଭୁ ! ମୃତ୍ୟୁର ମୂଳ ତ ଏଇ କାମନା ! ଯେଉଁ ସମୟରେ ମନୁଷ୍ୟର ମନ ମଧ୍ୟରେ କୌଣସି ବସ୍ତୁପାଇଁ କାମନା ଜାଗ୍ରତ ହୁଏ ସେତେବେଳେ ଚିତ୍ତ ଚଞ୍ଚଳ

Digitized by srujanika@gmail.com

ହୋଇଯାଏ । ମନ ବିକ୍ଷିପ୍ତ ଭଳି ହୋଇ ନିରନ୍ତର ଚିନ୍ତା କରୁଥାଏ । ବୁଦ୍ଧିର ସତ୍ ଅସତ୍ର ନିର୍ଣ୍ଣୟ କରିବାର ଶକ୍ତି କୁଣ୍ଠିତ ହୋଇଯାଏ । ପ୍ରାଣର ଗତି ଦ୍ରୁତ ହୋଇଯାଏ । ତନୁର ପ୍ରତିଲୋମରେ ସେହି ବାସନା ଭରିଯାଏ । ଧର୍ମର ବିଗ୍ରହ ରହେ ନାହିଁ । ଲୋକଲଜ୍ଜାକୁ ଜଳାଞ୍ଜଳି ଦେଇ ମଣିଷ ଆପଣାର ବାସନା ପୂର୍ତ୍ତି ନିମନ୍ତେ ସତତ ପ୍ରଯତ୍ନଶୀଳ ହୋଇଥାଏ । ତାର ଶ୍ରୀ, ସମୃଦ୍ଧି, ପ୍ରଭା ସବୁକିଛୁ ନ୍ୟୂନ ହୋଇଯାଏ । ତେଜ କ୍ଷୀଣ ହୋଇଯାଏ । ସ୍ମୃତି ବିଭ୍ରମ ଆସେ ଏବଂ ସତ୍ୟ ଅସତ୍ୟର ବିଗ୍ରହ ଗ୍ରୁଡ଼ି କାମନା ପୂର୍ତ୍ତିର ଏକମାତ୍ର ଚିନ୍ତା ମନକୁ ଆଚ୍ଛନ୍ନ କରିନିଏ । ତେଣୁ ପ୍ରଭୁ, କାମନା ବ୍ୟତୀତ ଆତ୍ମାକୁ ପତିତ କରୁଥିବା ଅନ୍ୟ କୌଣସି ବସ୍ତୁ ସଂସାରରେ ନାହିଁ । ଜୀବର ଏହାହିଁ ଜୀବତ୍ୱ ଯେ ତା' ଚିତ୍ତରେ ବିଷୟ-ଭୋଗର ବାସନା ରହିଛି । ଯେତେବେଳେ ଜୀବର ମନ ମଧ୍ୟରେ କାମନା ସମୂହ ନଷ୍ଟ ହୋଇଯାନ୍ତି, ସେତେବେଳେ ସେ ଶିବ ସ୍ୱରୂପ ହୋଇଯାଏ । ତେଣୁ ହେ ଅଶରଣଶରଣ, ହେ ଜଗତଗୁରୁ, ହେ ପରବ୍ରହ୍ମ, ହେ ପରମାତ୍ମନ୍, ହେ ନରହରି ବିଷ୍ଣୁ, ମୋତେ ସେହି ବର ଦିଅନ୍ତୁ ଯେ ମୋ ମନ ମଧ୍ୟରେ କାମନାର ଉଦ୍ରେକ ନହେଉ ।"

ପ୍ରହ୍ଲାଦଙ୍କର ସେଭଳି ନିଷ୍କପଟ, ଛଳଛିଦ୍ର ରହିତ ନିଷ୍କାମ ବଚନ ଶୁଣି ଭଗବାନ ଅତ୍ୟନ୍ତ ପ୍ରସନ୍ନ ହେଲେ ଓ କହିଲେ, "ବତ୍ସ ପ୍ରହ୍ଲାଦ, ତୁମ ଭଳି ନିଷ୍କାମ ଅନ୍ୟାନ୍ୟ ଭକ୍ତ ନା ପୃଥିବୀର ଭୋଗ ଇଚ୍ଛା ରଖନ୍ତି, ନା ଦିବ୍ୟ ସ୍ୱର୍ଗୀୟ ଭୋଗର । ତଥାପି ମଧ୍ୟ ଯେଉଁମାନଙ୍କୁ ମୁଁ କୌଣସି କାମ ଦେବାର ଇଚ୍ଛା ରଖିଥାଏଁ, ସେମାନେ ନଚାହିଁଲେ ମଧ୍ୟ ମୁଁ କିଛି ସମୟପାଇଁ ତାଙ୍କୁ ଐଶ୍ୱର୍ଯ୍ୟ ପ୍ରଦାନ କରିଥାଏଁ । ତେଣୁ ତୁମେ ମନ୍ୱନ୍ତର ପର୍ଯ୍ୟନ୍ତ ଅସୁର ମାନଙ୍କର ସମ୍ରାଟ ହୋଇ ନାନା ଭୋଗ ଭୋଗକର । ରାଜ-ସିଂହାସନରେ ଅଧିଷ୍ଠିତ ହୋଇ ରହି, ବିବାହ କର ଏବଂ ପୁତ୍ରଲାଭ କର ।"

ପ୍ରହ୍ଲାଦ କହିଲେ, "ମହାପ୍ରଭୁ, ଆପଣ ଏଭଳି କ'ଣ ବରଦାନ କଲେ ? ମୋତେ କାହିଁକି ଏପରି ଗୃହ-ଜଞ୍ଜାଳକୁ ଟାଣୁଛନ୍ତି । ଭଗବାନ, ମୁଁ କେବଳ ମୋ ପାଇଁ ନୁହେଁ, ସମସ୍ତ ପ୍ରାଣୀମାନଙ୍କ ନିମନ୍ତେ ଏହି ପନ୍ଥାକୁ ହିଁ ସର୍ବୋତ୍ତମ ମନେ କରୁଛି । ଆତ୍ମ-ପତନର ହେତୁ-ରୂପୀ ଏହି ପତ୍ନୀ, ପୁତ୍ର, ପରିବେଷ୍ଟିତ ଗୃହସ୍ଥାଶ୍ରମ-ରୂପୀ ଅନ୍ଧକାର କୂପ ମଧ୍ୟରୁ ବାହାରି ଆସି ଏକାନ୍ତ ବନକୁ ଯାଇ ସର୍ବାତ୍ମ ଭାବରେ ଆପଣଙ୍କର ଉପାସନା କରିବା ଉଚିତ । ଏହି ଦାରାପୁତ୍ର-ଜଞ୍ଜାଳ ବନ୍ଧନରେ ମୋତେ ବାନ୍ଧ ଦିଅନ୍ତୁ ନାହିଁ । ସେ କ୍ଷେତ୍ରରେ ପତ୍ନୀର ଇଙ୍ଗିତରେ ଚାଲିବାକୁ ହେବ । ଆଜି ଏହା ନାହିଁ, କାଲି ସେଥିା ନାହିଁ, ଯା ଆଣ ତା ଆଣ ଏଥିରେ ସମୟ ଯିବ । ଆପଣଙ୍କୁ ଭୁଲିଯିବ ମଣିଷ ।"

ଭଗବାନ କହିଲେ, "ନା ତାହା ନୁହେଁ, ଭୁଲିବ ନାହିଁ । ସେଇମାନେ ଭୁଲି ଯାଆନ୍ତି ଯେଉଁମାନେ ବିଷୟ ସୁଖକୁ ସର୍ବୋତ୍ତମ ମନେକରିଥାନ୍ତି । ନିଜକୁ କର୍ତ୍ତା ମନେକରି ବିଷୟ-ସାଧନର ଯୋଗାଡ଼ରେ ଲାଗି ପଡ଼ନ୍ତି । ତମେ ଗୃହସ୍ଥାଶ୍ରମକୁ ମଧ୍ୟ ମୋର ସେବା

Digitized by srujanika@gmail.com

ବୋଲି ମନେ କରିବ । ମନ ମଧ୍ୟରେ ସର୍ବଦା ଏହି ଭାବନା ରଖିବ ଯେ ତୁମେ ଯାହାକିଛି ବି କରୁଛ ଭଗବତ ଆଜ୍ଞାରେ, କର୍ତ୍ତବ୍ୟ ବୁଦ୍ଧିରେ କରୁଛ । ସଂସାରି କାର୍ଯ୍ୟ କରୁଥିବା ସମୟରେ ଏହା ଭୁଲିଯିବ ନାହିଁ । ସମସ୍ତ ଭୂତମାନଙ୍କ ମଧ୍ୟରେ ସମାନ ଭାବରେ ବିରାଜମାନ କରିଥିବା ମୋତେ ହୃଦୟ ମଧ୍ୟରେ ଧାରଣ କରି ସର୍ବଦା ଅବ୍ୟଗ୍ରଭାବରେ ମୋର ସୁମଧୁର କଥା ଅବଶ୍ୟ ଶ୍ରବଣ କରୁଥିବ । ମୋତେ ମନ ମଧ୍ୟରେ ରଖି, ମୋର କଥା ଯେ ବିନା ବ୍ୟବଧାନରେ ନିତ୍ୟ ଶ୍ରବଣ କରେ, ତାକୁ ଏ ସଂସାର ବାଧା ଦିଏ ନାହିଁ । ତେଣୁ ମୋର କଥା ଶ୍ରବଣ କରିବା ଭୁଲିବ ନାହିଁ । ଯେଉଁଦିନ ତୁମେ ପ୍ରଭୁକଥା ଶ୍ରବଣରୁ ବଞ୍ଚିତ ହେବ ସେ ଦିନକୁ ବ୍ୟର୍ଥ ମନେ କରିବ । ଯଦି ତୁମେ ନିତ୍ୟ ନିୟମ ପୂର୍ବକ ମୋର କଥା ଶ୍ରବଣ କରିବ ଏବଂ ସମସ୍ତ କର୍ମକୁ ମୋତେ ସମର୍ପିତ କରି ଭକ୍ତି ଯୋଗଦ୍ୱାରା ମୋର ଆରାଧନା କରୁଥିବ, ତାହେଲେ ଗୃହସ୍ଥାଶ୍ରମ ମଧ୍ୟରେ ରହି ମଧ୍ୟ ବାନ୍ଧି ହେବ ନାହିଁ ।

ପ୍ରହ୍ଲାଦ କହିଲେ, "ପ୍ରଭୁ, ଆପଣଙ୍କର ଆଜ୍ଞା ସର୍ବତୋଭାବେ ଶିରୋଧାର୍ଯ୍ୟ । ମାତ୍ର କର୍ମ ଯେଉଁପରି ବି କରାଯାଉ ନା କାହିଁକି ତାର ଶୁଭ ଅଶୁଭ କିଛି ନା କିଛି ଫଳ ତ ନିଶ୍ଚୟ ହେବ । କର୍ମ ହିଁ ବନ୍ଧନର କାରଣ । ମୁଁ ଏହି ସଂସାର ବନ୍ଧନରୁ ମୁକ୍ତ ହେବାକୁ ଚାହୁଁଛି । ଆପଣ ମୋତେ କର୍ମ ବନ୍ଧନରେ ବାନ୍ଧିବାକୁ ଚାହୁଁଛନ୍ତି ।"

ଭଗବାନ କହିଲେ, "ବତ୍ସ, ମୋର ପ୍ରୀତି ନିମିତ୍ତ କରାଯାଇଥିବା କର୍ମ ବନ୍ଧନର କାରଣ ହେବ ନାହିଁ । ଏବେ ବି ପୁଣ୍ୟପାପଯୁକ୍ତ ତୁମର ପ୍ରାରବ୍ଧ ଅବଶେଷ ରହିଛି । ପ୍ରାରବ୍ଧ ଅବଶେଷ ନଥିଲେ ଏ ଶରୀର ରହି ପାରିବ ନାହିଁ । ତେଣୁ ଯେଉଁ ପୁଣ୍ୟ ରହିଛି ତାକୁ ସୁଖଭୋଗ ଦ୍ୱାରା କ୍ଷୟ କର । ଯେଉଁ ପାପ ରହିଛି ତାହା ଯଜ୍ଞକର୍ମମାନଙ୍କ ଦ୍ୱାରା କ୍ଷୟ କର । ଯଜ୍ଞାଦି ଅନୁଷ୍ଠାନ ଦ୍ୱାରା ପାପ କ୍ଷୟ ପ୍ରାପ୍ତ ହୋଇଥାଏ । ଯେତେବେଳେ ତୁମର ପାପ ଏବଂ ପୁଣ୍ୟ ଉଭୟ କ୍ଷୟପ୍ରାପ୍ତ ହେବେ ସେତେବେଳେ ତୁମେ ମୋତେ ପ୍ରାପ୍ତ ହେବ । ତୁମର ଅନନ୍ୟ ଭକ୍ତିର ଗାଥା ତ୍ରୈଲୋକ୍ୟରେ ବ୍ୟାପ୍ତ ହୋଇଯିବ । ତୁମେ ତ ମୁକ୍ତ ହେବ ତାହା ସହିତ ଯେ ଆମର ଏହି କଥା ଶୁଣିବେ, ତୁମର କଥିତ ସ୍ତୋତ୍ରମାନଙ୍କର ପାଠ କରିବେ ସେମାନେ ମଧ୍ୟ କର୍ମ-ବନ୍ଧନରୁ ମୁକ୍ତ ହୋଇଯିବେ । ତୁମେ ମୋ ଠାରୁ କୌଣସି ପ୍ରକାର ବର ପ୍ରାର୍ଥନା କରି ନାହଁ । ଯଦି ମାଗି ନେଇଥାନ୍ତ ତାହାହେଲେ ମୁଁ ଆନନ୍ଦିତ ହୋଇଥାନ୍ତି ।"

ଧର୍ମରାଜ ଯୁଧିଷ୍ଠିରଙ୍କୁ ନାରଦ କହୁଛନ୍ତି—"ରାଜନ୍, ଯେତେବେଳେ ଭଗବାନ ପ୍ରହ୍ଲାଦଙ୍କୁ ବାରମ୍ବାର ବର ମାଗିବାକୁ କହିଲେ ସେତେବେଳେ ପ୍ରହ୍ଲାଦ ଦ୍ୱନ୍ଦ୍ୱରେ ପଡ଼ିଲେ ଏବଂ ଅନେକ ବିଚାର କରି ଭଗବାନଙ୍କଠାରୁ ବର ମାଗିବାକୁ ଉଦ୍ୟତ ହେଲେ ।"

Digitized by srujanika@gmail.com

## ଛପ୍ପୟ

ହଁସି ବୋଲେ ଭଗବାନ୍ ବିଷୟୀ ଗୃହେଁ ନହିଁ ହରିଜନ ।
କରହିଁ ନିରନ୍ତର ଭକ୍ତି ସଦା ରଖେଁ ମୋ ମେ ମନ ॥
ମନ୍ୱନ୍ତର ତକ ତଉ ଭୋଗ ସବ ଭୋଗୋ ଜଗ ମହିଁ ।
କଥା ନିରନ୍ତର ସୁନୈ ଚିତ୍ତ ବାଁଧୌ ମମ ପଗ ମହିଁ ॥
ସୁଖ ତୈଁ ପୁଣ୍ୟନ ନାଶ କରି, ଦୁଖ ହୂ ମଖ କରିକୈ ନସୌ ।
ପୁଣ୍ୟ ପାପ ତେଁ ମୁକ୍ତ ହ୍ୱୈ, ମମ ସମୀପ ମହିଁ ଫିରି ବସୌ ॥



Digitized by srujanika@gmail.com

## ଦ୍ୱେଷୀ ପିତା ପ୍ରତି ଅନୁରାଗ ପ୍ରଦର୍ଶନ

ବରଂ ବରୟ ଏତତ୍ ତେ ବରଦେଶାନ୍ମହେଶ୍ୱର
ଯଦନିନ୍ଦତ୍ପିତା ମେ ତ୍ୱାମବିଦ୍ୱାଂସ୍ତେଜ ଐଶ୍ୱରମ୍ ।
ତସ୍ମାତ୍ପିତା ମେ ପୂୟେତ ଦୁରନ୍ତାଦ୍ ଦୁସ୍ତରାଦଘାତ୍ ।
ପୂତସ୍ତେଽପାଙ୍ଗସଂଦୃଷ୍ଟସ୍ତଦା କୃପଣବତ୍ସଲ ॥
(ଶ୍ରୀ ଭା. ୭।୧୦।୧୫, ୧୭)

### ଛପ୍‌ପୟ

ବାରବାର ବର ହେତୁ କହୀ ତବ ବର ଜିହ୍ନ ମାଁଗେୟା ।
ମେରୀ ଶୂଉ ଆଚରନ ପିତା କୂଁ ଖୋଟୋ ଲଗେୟା ॥
ହର ନନ୍ଦା ନତ କାରୀ ଦାସ କୂଁ ଦୂଖ ବହୁ ଦୀହ୍ନୋ ।
ପଗପଗ ପୈ ଅପମାନ ନାଥ କୋ ମମ ପତୁ କୀହ୍ନୋ ॥
ଅତ ଦୁରନ୍ତ ଦୁସ୍ତର ଦୁସହ, ଦୋଷ ଦୈତ୍ୟପତ ନେ କରେ ।
ଛମେ ନାଥ, ଯଦ୍ୟପି ସବହି, ଦୃଷ୍ଟି ମାତ୍ର ତେ ଅଘ ହରେ ॥

ହୃଦୟହୀନ କୃତଘ୍ନମାନଙ୍କ କଥା ଛାଡ଼ନ୍ତୁ, ସାଧାରଣତଃ ଆପଣା ପ୍ରତି ସ୍ନେହଶୀଳ ବ୍ୟକ୍ତିଙ୍କୁ ସମସ୍ତେ ସ୍ନେହ କରନ୍ତି । ଚୋର ଡ଼କାୟତ ଓ ହତ୍ୟାକାରୀମାନଙ୍କର ମଧ୍ୟ ସ୍ନେହୀଲୋକ ଅଛନ୍ତି । ମାତ୍ର ବୈଷ୍ଣବ ତ ଆପଣା ପ୍ରତି ଦ୍ୱେଷକାରୀ ବ୍ୟକ୍ତିଙ୍କୁ ମଧ୍ୟ ସ୍ନେହ କରିଥାନ୍ତି । ତାଙ୍କୁ ଯେ ଦୁଃଖଦିଏ, ଶରୀରକୁ ମିଳିଥିବା ଦୁଃଖ କଷ୍ଟ ନିମନ୍ତେ ଯେତେ ଚିନ୍ତା କରନ୍ତି ନାହିଁ ସେତେ ଚିନ୍ତା ଦୁଃଖ ପ୍ରଦାନକାରୀ ବ୍ୟକ୍ତିଟି ପାଇଁ କରନ୍ତି । ମନେ ମନେ ଭାବନ୍ତି ଏ ଉଦ୍‌ଭ୍ରାନ୍ତ ଭାଇଟି ଭ୍ରମବଶତଃ ଦୁଃଖ ଦେଉଛି । ଏହା ଫଳରେ ଏହାକୁ ବୃଥାରେ ନର୍କ ଯାତନା ଭୋଗ କରିବାକୁ ପଡ଼ିବ । ତେଣୁ ସେମାନେ ଦୀନ ବିନୀତ ଭାବରେ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରନ୍ତି, "ପ୍ରଭୁ, ଏହାର ମଙ୍ଗଳ କରନ୍ତୁ । ଦୁର୍ଗତି ଦିଅନ୍ତୁ ନାହିଁ ।"

Digitized by srujanika@gmail.com

ଭଗବଦ୍ ଭକ୍ତ, ମହାତ୍ମାମାନଙ୍କର ଏପରି ଗୋଟିଏ ନୁହେଁ, ଅନେକ ଦୃଷ୍ଟାନ୍ତ ରହିଛି । କୃଷକ ଜଣେ କେହି ଜଣେ ସାଧୁଙ୍କୁ ତାର କ୍ଷେତରୁ ଧାନ କେଣ୍ଡା ଛିଣ୍ଡେଇ ନେବା ଅପରାଧରେ ପ୍ରହାର କଲା । ସେହି ସାଧୁ ରାଜାଙ୍କର ଗୁରୁ ଥିଲେ । ରାଜା ଯେତେବେଳେ ଏ ଖବର ପାଇଲେ ସେତେବେଳେ କୃଷକକୁ ବନ୍ଦୀ କରି ନେଲେ ଏବଂ ସାଧୁମହାତ୍ମାଙ୍କୁ ପଚାରିଲେ, "ଗୁରୁଦେବ, ଏ ଦୁଷ୍ଟକୁ କେଉଁ ଦଣ୍ଡ ଦିଆଯିବା ଉଚିତ ।"

ମହାତ୍ମା କହିଲେ, "ଭୋକ ହେତୁ ମୁଁ ଯେଉଁ କ୍ଷେତରୁ ଧାନ କେଣ୍ଡା ଛିଣ୍ଡେଇ ଥିଲି ସେଇ କ୍ଷେତଟି ପାଇଁ ସବୁଦିନ ଲାଗି ଏ କୃଷକକୁ କରମୁକ୍ତ କରିଦିଅ" । ରାଜା ସେହିପରି କଲେ । ଏ ଘଟଣାରୁ ଏହା ପ୍ରମାଣିତ ହେଉଛି ଯେ ସାଧୁ ସନ୍ଥ ମାନଙ୍କର ସତ୍‌ସଙ୍ଗ କେଉଁ ପରି ବି ହେଉ ନା କାହିଁକି, କେଉଁପରି ଭାବନାରେ ବି ହୋଇଥାଉ ନା କାହିଁକି, କଲ୍ୟାଣକାରୀ ଅବଶ୍ୟ ହେବ । ସନ୍ଥମାନଙ୍କର ସମ୍ବନ୍ଧ ପ୍ରତ୍ୟେକ ପରିସ୍ଥିତିରେ ସୁଖପ୍ରଦ ହିଁ ହୋଇଥାଏ ।

ନାରଦ ଧର୍ମରାଜ ଯୁଧିଷ୍ଠିରଙ୍କୁ କହୁଛନ୍ତି, "ରାଜନ୍, ଯେତେବେଳେ ଭଗବାନ ବର ମାଗିବାକୁ ପ୍ରହ୍ଲାଦଙ୍କୁ ବାରମ୍ବାର କହିଲେ, ସେତେବେଳେ ଅନେକ ଚିନ୍ତାକରି ପ୍ରହ୍ଲାଦ କହିଲେ, "ପ୍ରଭୁ, ମୁଁ ଗୋଟିଏ ବର ମାଗିବି । ଦେବେ ତ !"

ଭଗବାନ କହିଲେ, "ତମେ କେଉଁଭଳି କଥା କହୁଛ ? ମୋଠାରେ ଭକ୍ତଙ୍କ ନିମନ୍ତେ କୌଣସି ବସ୍ତୁ ଅଦେୟ ନୁହେଁ । ତମର ଯାହା ତାହା ମାଗି ନିଅ ।"

ପ୍ରହ୍ଲାଦ କହିଲେ, "ଆପଣ ଯେତେବେଳେ ବରପ୍ରଦାନର ଅନୁଗ୍ରହ କରୁଛନ୍ତି ଏବଂ ବାଞ୍ଛିତ ବରଦାନ କରିବାକୁ ଚାହାନ୍ତି, ତା'ହେଲେ ମୋତେ ସେହି ବରଦାନ କରନ୍ତୁ, ଯେପରି ମୋର ପିତା ପବିତ୍ର ହୋଇ ଯିବେ ।"

ଭଗବାନ ହସି ହସି କହିଲେ, "ତୋର ବାପାଙ୍କର କଣ ହୋଇଛି ଯେ ?"

ପ୍ରହ୍ଲାଦ କହିଲେ, "ପ୍ରଭୁ, କିଛି ହୋଇନାହିଁ । ମାତ୍ର ସେ ଅନେକ ପାପ କରିଛନ୍ତି, ଏପରିକି ସବଦା ଆପଣଙ୍କ ପ୍ରତି ଦ୍ୱେଷ ଆଚରଣ କରିଛନ୍ତି । କହିବା-ନକହିବା ଶବ୍ଦ ଆପଣଙ୍କ ପ୍ରତି ବ୍ୟବହାର କରିଛନ୍ତି । ଆପଣଙ୍କର ଈଶ୍ୱରୀୟ ତେଜ ନ ଜାଣିଥିବା ହେତୁ, ବନ୍ଧୁ ମୋର ଭାଇର ସଂହାରକର୍ତ୍ତା, ତେଣୁ ମୋର ପ୍ରତିପକ୍ଷୀ ଶତ୍ରୁ ମନେକରି, ଭ୍ରମ ଧାରଣା ରଖି ଆପଣଙ୍କ ସହିତ ମଧ୍ୟ ଦ୍ରୋହ ଆଚରଣ କରୁଥିଲେ । ଆପଣ ଆପଣଙ୍କର ଦ୍ରୋହୀକୁ କ୍ଷମା କରି ଦେଇ ପାରନ୍ତି, ମାତ୍ର ଭକ୍ତ-ଦ୍ରୋହୀକୁ କଦାପି କ୍ଷମା ଦିଅନ୍ତି ନାହିଁ । ଏହି ଦୋଷକୁ ଆପଣ ଅତ୍ୟନ୍ତ ଦୁରନ୍ତ ଓ ଦୁସ୍ତର ମନେ କରନ୍ତି । ହେ ଦୀନବନ୍ଧୁ ! ହେ ଭକ୍ତବତ୍ସଳ ! ମୁଁ ଆପଣଙ୍କର ପାଦପଦ୍ମରେ ଏତିକି ମାତ୍ର ବିନୟ ନିବେଦନ କରୁଛି ଯେ ଆପଣ

Digitized by srujanika@gmail.com

ତାଙ୍କୁ ଏହି ସବୁ ଦୋଷରୁ ମୁକ୍ତ କରନ୍ତୁ । ତାଙ୍କୁ ପାପୀ ହୋଇ ନର୍କ ଯାତନା ଭୋଗ କରିବାକୁ ନପଡୁ । ମୃତ୍ୟୁକାଳରେ ଆପଣଙ୍କ ଦର୍ଶନ ମାତ୍ରକରେ, ଯାହା ଉପରେ ଆପଣଙ୍କର ଦୃଷ୍ଟିପାତ ହେବ, ତତ୍କ୍ଷଣାତ୍ ତାର ପାପ ଦୂର ହୋଇଯିବ, କଦାଚତ୍ ରହିବ ନାହିଁ । ତଥାପି ମଧ୍ୟ ମୁଁ ଦୀନଭାବଶତଃ ଆପଣଙ୍କ ନିକଟରେ ପ୍ରାର୍ଥନା କରୁଛି, ଆପଣ ତାଙ୍କ ଉପରେ କୃପା କରନ୍ତୁ ଏବଂ ତାଙ୍କୁ ପବିତ୍ର କରନ୍ତୁ ।”

ପ୍ରହ୍ଲାଦଙ୍କର ସେଭଳି ମଧୁର ବଚନ ଶୁଣି ଭଗବାନ ଅତ୍ୟନ୍ତ ପ୍ରସନ୍ନ ହେଲେ । ହସି ହସି ଅତି ସ୍ନେହରେ କହିଲେ, “ବତ୍ସ, ତୁ ସରଳ । ଯେଉଁ କୋଳରେ ତୋ ଭଳି ଭଗବତ୍ ଭକ୍ତ ପୁତ୍ର ଜନ୍ମଗ୍ରହଣ କରିଛି, ସେ ପାପୀ ହୋଇ ରହିବ କିପରି ? ହେ ନିଷ୍ପାପ, ପିତାଙ୍କର କଥା କଣ କହିବ, ଯେଉଁ କୁଳରେ ତୋଭଳି ପୁତ୍ରଜାତ ହୋଇଛି, ତାର ପୂର୍ବ ସପ୍ତମ ଏବଂ ଉତ୍ତର ସପ୍ତମ ପୁରୁଷ ପର୍ଯ୍ୟନ୍ତ ଏବଂ ମାତୃକୁଳରେ ସପ୍ତମ ପୁରୁଷ ଏଭଳି ଏକବିଂଶ ପୁରୁଷ ତୋର ଭକ୍ତିର ପ୍ରଭାବରେ ତରିଯିବେ । ତେଣୁ କେବଳ ମାତ୍ର ତୋର ପିତା ନୁହନ୍ତି, ତୋର ଏକବିଂଶ ପୁରୁଷର ଲୋକେ ଏହା ଫଳରେ ପବିତ୍ର ହୋଇଛନ୍ତି । ଏହିକ୍ରମରେ ମୁଁ ମଧ୍ୟ ତରିଯାଇଛି । ତୋର ପିତା ହିରଣ୍ୟକଶିପୁର ପିତା ମହର୍ଷି କଶ୍ୟପ, ତାଙ୍କର ପିତା ମରୀଚି, ମରୀଚଙ୍କର ପିତା ଲୋକ-ପିତାମହ ବ୍ରହ୍ମା ଏବଂ ମୁଁ ବ୍ରହ୍ମାଙ୍କର ପିତା । ଏଣୁ ମୁଁ ବା ଏ ପ୍ରସଙ୍ଗରେ କାହାକୁ ପାବନ କରିବି ? ମୁଁ ସ୍ୱୟଂ ପବିତ୍ର ହୋଇଛି । ମୋର ଭକ୍ତମାନଙ୍କର ସେଭଳି ମହାତ୍ମ୍ୟ ରହିଛି ଯେ ସେମାନେ ଯେଉଁଠାରେ ଜନ୍ମଗ୍ରହଣ କରିବେ ସେ ସ୍ଥାନ ପବିତ୍ର ତୀର୍ଥରେ ପରିଣତ ହୋଇଯିବ ।

ପ୍ରହ୍ଲାଦ କହିଲେ, “ପ୍ରଭୁ ଆପଣଙ୍କର ଭକ୍ତମାନେ ତ ଅବଶ୍ୟ ପୁଣ୍ୟକ୍ଷେତ୍ରରେ ରହିଥାନ୍ତି । ପବିତ୍ର କୁଳରେ ହିଁ ସେମାନଙ୍କର ଜନ୍ମ ହୋଇଥାଏ । ସେମାନେ ସ୍ୱୟଂ ମଧ୍ୟ ପବିତ୍ର ! ତାହାହେଲେ ସେମାନଙ୍କ ପାଇଁ ପବିତ୍ରତା କଣ ହେବ ?”

ଭଗବାନ କହିଲେ, “ସେଭଳି ନୁହେଁ । ମୋର ଭକ୍ତ ଯେଉଁଠାରେ ବି ଜନ୍ମ-ଗ୍ରହଣ କରୁ; ଅଙ୍ଗ ବଙ୍ଗ କଳିଙ୍ଗ ଆଦି ଯେ କୌଣସି ଦେଶ ବା ସେ ଦେଶର ଯେ କୌଣସି କୁଳରେ ମୋର ଭକ୍ତର ଜନ୍ମ ହେଲେ ସେ ଯେଉଁକୁଳରେ ଜନ୍ମଗ୍ରହଣ କଲା, କେବଳ ତାହା ନୁହେଁ ସେ ଦେଶ ମଧ୍ୟ ପବିତ୍ର ହୋଇଯିବ । ଯେଉଁ କୁଳରେ ତା'ର ଜନ୍ମ ହେବ, ସେକୁଳ ପୂଜନୀୟ ହେବ । ମୋର ଭକ୍ତମାନେ ସଦୈବ ସମଦର୍ଶୀ । ତୁମେ ଯେପରି କଲ ସେପରି ମୋଠାରେ ସେମାନେ ମଧ୍ୟ କୌଣସି କାମନା ରଖନ୍ତି ନାହିଁ । ସେମାନେ ମାନସିକ ସ୍ତରରେ ମଧ୍ୟ କୌଣସି ପ୍ରାଣୀର ଅନିଷ୍ଟ କାମନା କରନ୍ତି ନାହିଁ ବା କାହାରିକୁ କୌଣସି ପ୍ରକାରେ ପୀଡ଼ିତ କରି ନଥାନ୍ତି ।”

ପ୍ରହ୍ଲାଦ କହିଲେ, “ ପ୍ରଭୁ, ମୋର ଜନ୍ମ ଅସୁର ଯୋନିରେ ହୋଇଛି । ମୋର ପିତା ସର୍ବଦା ଆପଣଙ୍କର ଦ୍ୱେଷୀ ହୋଇ ରହିଥିଲେ । ମୋର ମଧ୍ୟ ଆପଣଙ୍କ ପାଦପଦ୍ମରେ

Digitized by srujanika@gmail.com

ଦୃଢ଼ ଅନୁରାଗ ନାହିଁ, ତେଣୁ ହେ ଶରଣାଗତ ବତ୍ସଳ, ହେ ଦୀନବନ୍ଧୁ, ମୋତେ ଆଶୀର୍ବାଦ ପ୍ରଦାନ କରନ୍ତୁ, ମୋ ପ୍ରତି କୃପା କରନ୍ତୁ, ଯେପରି ମୁଁ ଆପଣଙ୍କର ଭକ୍ତମାନଙ୍କର ଏକ ତୁଚ୍ଛ ସେବକ ଭାବରେ ପରିଗଣିତ ହେବି । ଦାସ ହେବାର ଅଧିକାର ମଧ୍ୟ ମୋର ନାହିଁ । ସୌଭାଗ୍ୟ ମଧ୍ୟ ମୋର ନାହିଁ ଯେ ଆପଣଙ୍କର ଦାସାନୁଦାସ ହୋଇ ପାରିବି ।"

ଏହାଶୁଣି ଭଗବାନ ନୃସିଂହ ହସିଲେ ଏବଂ କହିଲେ, "ପ୍ରହ୍ଲାଦ, ତୁ ଭକ୍ତାନୁଚର ହେବା କଥା କହୁଛୁ, ମାତ୍ର ମୁଁ କହୁଛି ତୋଠାରୁ ବଡ଼ ହୋଇ ମୋର କେହି ଭକ୍ତ ନାହାନ୍ତି । ତୁ ମୋର ସମସ୍ତ ଭକ୍ତମାନଙ୍କ ମଧ୍ୟରେ ଆଦର୍ଶ-ସ୍ୱରୂପ । ତୋର ଭକ୍ତ ହେବାରେ ସନ୍ଦେହର ଲେଶମାତ୍ର ଅବକାଶ ନାହିଁ । ଯେଉଁମାନେ ସଂସାରରେ ତୋର ଅନୁକରଣ କରିବେ, ସେମାନେ ମଧ୍ୟ ତ୍ରୈଲୋକ୍ୟ ବନ୍ଦନୀୟ ହୋଇ ମୋର ଭକ୍ତ ହେବେ । ତୁ ଆଉ ପିତାଙ୍କ ସମ୍ବନ୍ଧରେ କୌଣସି ସନ୍ଦେହ ରଖ ନା । ତାଙ୍କର ଅଧୋଗତି ହେବ ନାହିଁ । ମୋର ଅଙ୍ଗସ୍ପର୍ଶ ଲାଭକରି ସେ ପବିତ୍ରରୁ ପବିତ୍ରତମ ହୋଇ ସାରିଛନ୍ତି । ତଥାପି ମଧ୍ୟ ଲୋକ ମର୍ଯ୍ୟାଦା ରକ୍ଷାକରି ତୁ ତାଙ୍କର ଔର୍ଦ୍ଧ୍ୱଦୈହିକ କ୍ରିୟା ସଂପାଦନ କର ।

ପ୍ରହ୍ଲାଦ କହିଲେ, "ମୁଁ ଆପଣଙ୍କର ଆଜ୍ଞାରେ ତ ପିତାଙ୍କର ସମସ୍ତ ପାରଲୌକିକ କ୍ରିୟା କରିବି, ମାତ୍ର ଏହି ଦୈତ୍ୟ-ସିଂହାସନରେ କାହାକୁ ବସେଇ ଦିଅନ୍ତୁ । ମୋର ଆଉ ପାଞ୍ଚୋଟି ବଡ଼ ଭାଇ ଅଛନ୍ତି, ସେମାନଙ୍କ ମଧ୍ୟରୁ ଆପଣ ଯାହାକୁ ବି ଉଚିତ ମନେ କରୁଛନ୍ତି, ତାଙ୍କୁ ସିଂହାସନରେ ବସାନ୍ତୁ । ମୁଁ ସର୍ବାତ୍ମଭାବରେ ଆପଣଙ୍କର ସେବା କରିବାକୁ ଚାହୁଁଛି ।"

ଭଗବାନ କହିଲେ, "ଏହି ସିଂହାସନରେ ବସିବାପାଇଁ ତୁ ହିଁ ସର୍ବଥା ଉପଯୁକ୍ତ । ମୁଁ ତୋତେ ହିଁ ଆଜ୍ଞା ଦେଉଛି ନିଜର ଆସକ୍ତି ପାଇଁ ନୁହେଁ, ମୋର ଆଦେଶ ମନେକରି ତୁ ଏ ସିଂହାସନ ଆରୋହଣ କର । ତୁ ସବୁ କାର୍ଯ୍ୟ ବେଦବାଦୀ ମୁନିମାନଙ୍କୁ ପଚାରି କରୁଥିବୁ । ବେଦଜ୍ଞ ବ୍ରାହ୍ମଣମାନଙ୍କର ଆଜ୍ଞାର ଉଲ୍ଲଙ୍ଘନ କଦାପି କରିବୁ ନାହିଁ । ତୁ ଏପରି କଲେ ଏ ରାଜକାର୍ଯ୍ୟ ତୋତେ ବନ୍ଧନ ବୋଲି ମନେ ହେବନାହିଁ ।"

ପ୍ରହ୍ଲାଦ କହିଲେ, "ପ୍ରଭୁ, ଏହି ରାଜକାର୍ଯ୍ୟରେ ରହି ଆପଣଙ୍କର ଭଜନ କୀର୍ତ୍ତନ ତ କରି ପାରିବି ନାହିଁ ।"

ଭଗବାନ ଆଦରରେ କହିଲେ, "ଭଜନ କୀର୍ତ୍ତନ ଆଉ କ'ଣ ? ମୋର ଆଜ୍ଞା ପାଳନ କରିବା ହିଁ ଭଜନ କୀର୍ତ୍ତନ । ତୁ ଏସବୁ କାର୍ଯ୍ୟ କର୍ତ୍ତବ୍ୟ ବୁଦ୍ଧିରେ ସମ୍ପାଦନ କର । ଚିତ୍ତ ମୋ ନିକଟରେ ସ୍ଥିର ଥାଉ । ମୋ ପରିଚର୍ଯ୍ୟାରେ ନିୟୋଜିତ ଥାଉ । ଏପରି କଲେ ରାଜ୍ୟ ଶାସନ ଏବଂ ଗୃହସ୍ଥାଶ୍ରମ ତୋତେ କ୍ଲେଶ ଦେବେ ନାହିଁ ।"

Digitized by srujanika@gmail.com

ପ୍ରହ୍ଲାଦ କହିଲେ, " ପ୍ରଭୁ, ଆପଣଙ୍କର ଆଦେଶ ଶିରୋଧାର୍ଯ୍ୟ । ଆପଣଙ୍କ ଶ୍ରୀମୁଖ ଆଦେଶ ହିଁ ବେଦବାକ୍ୟ । ଆପଣ ମୋ ପ୍ରତି ସେହି କୃପା କରନ୍ତୁ ଯେପରି ମୋର ରାଜମଦ ଧନମଦ ହେବନାହିଁ । ଅଜ୍ଞାନତାବଶତଃ ମଧ୍ୟ ମୋ ଭିତରେ ଯେପରି ଅହଂକାର ପ୍ରବେଶ କରିବ ନାହିଁ ।"

ଭଗବାନ କହିଲେ, "ପ୍ରହ୍ଲାଦ, ମୋର ଭକ୍ତମାନଙ୍କର ପ୍ରଥମରୁ ମଦ ମାତ୍ସର୍ଯ୍ୟ ନଥାଏ । କଦାଚିତ ଅହଂକାର ଆସିଲେ ମୁଁ ତାହା ତତ୍‌କ୍ଷଣାତ୍ ନାଶ କରିଥାଏ । ମୋର ସୁଦର୍ଶନ ଚକ୍ର ସର୍ବଦା ତୁମର ରକ୍ଷା କରିବ । ବିପଦମୁକ୍ତ କରୁଥିବ ।"

ନାରଦ ଧର୍ମରାଜ ଯୁଧିଷ୍ଠିରଙ୍କୁ କହୁଛନ୍ତି, "ରାଜନ, ଭଗବାନଙ୍କର ଆଜ୍ଞାପ୍ରାପ୍ତ ହୋଇ ପ୍ରହ୍ଲାଦ ଶାସ୍ତ୍ରୀୟ ବିଧିରେ ପିତାଙ୍କର ସମସ୍ତ ଊର୍ଦ୍ଧ୍ୱଦୈହିକ କ୍ରିୟା ସମ୍ପନ୍ନ କଲେ ।

## ଛପ୍ପୟ

ନରହରି ବୋଲେ ବତ୍ସ, ତେରେ କୁଲ ପିତୃ ମହତାରୀ ।
ପୀଢ଼ୀ ପାବନ ଭଇ ପୁତ୍ର ! ଇକ୍‌କୀସ ତୁମ୍ହାରୀ ॥
ତୁମ ସମ ଜାକେ ତନୟ ନରକ କୈସେ ବହ ଜାବୈ ।
ପୁତ୍ର ପୁଣ୍ୟ ପରଭାବ ପରମ ପଦ ପିତୁ ତବ ପାବୈ ॥
ମୃତକ କରମ ପିତୁ କେ କରୋ, ଅବ ଚେଷ୍ଟା ତୁମ ଜାଇ କୈଁ ।
ନିତ ମମ ପରିଚର୍ଯ୍ୟା କରୋ, ମୋ ମେଁ ଚିତ୍ତ ଲଗାଇ କୈଁ ॥



Digitized by srujanika@gmail.com

# ପ୍ରହ୍ଲାଦଙ୍କର ରାଜ୍ୟାଭିଷେକ ଓ ଭଗବାନଙ୍କର ଅନ୍ତର୍ଦ୍ଧାନ

ଇତ୍ୟୁକ୍ତ୍ୱା ଭଗବାନ୍ ରାଜଂସ୍ତତ୍ରୈବାନ୍ତର୍ଦଧେ ହରିଃ ।
ଅଦୃଶ୍ୟଃ ସର୍ବଭୂତାନାଂ ପୂଜିତଃ ପରମେଷ୍ଠିନା ॥
ତତଃ କବ୍ୟାଦିଭିଃ ସାର୍ଦ୍ଧଂ ମୁନିଭିଃ କମଳାସନଃ ।
ଦୈତ୍ୟାନାଂ ଦାନବାନାଂ ଚ ପ୍ରହ୍ଲାଦମକରୋତ୍ ପତିମ୍ ॥

—ଶ୍ରୀ. ଭା. ୭ । ୧୦ । ୩୧, ୩୩ ।

ଛପ୍ପୟ

ହରି ଆୟୁସ ସରିଧାର ଅସୁର କେ କରେ କର୍ମ ସବ ।
ରାଜ୍ୟାସନ ଅଭିଷିକ୍ତ ମୁନିକ ପ୍ରହ୍ଲାଦ କରେ ତବ ॥
କୀନ୍ହୀ ବହୁବିଧି ବିନୟ ବିଶ୍ୱପତ ଭଲ ଅତ କୀନ୍ହେ ।
ଅସୁର ମାରି ପ୍ରହ୍ଲାଦ ତଥା ଦେବନୀ ସୁଖ ଦୀନ୍ହେ ॥
ହୁଁ ସଁ ବଧି ତେ ନରହରି କହେଁ, ବୀଜ ତୁମ୍ହାରେ ଇ ବୟେ ॥
ତୁମନେ ବାବା ବିଧାତା, ଦୁରଭ ବର ଜାକୂଁ ଦୟେ ॥

ଭଗବାନ ତ ନିତ୍ୟ ଅଟନ୍ତି । ତାଙ୍କର କେତେବେଳେ ଜନ୍ମ ହୁଏ ନାହିଁ ଓ ସେ କେବେହେଲେ ଶରୀର ତ୍ୟାଗ କରନ୍ତି ନାହିଁ । ମତ୍ସ୍ୟ, କଚ୍ଛପ, ବରାହ, ନୃସିଂହ ଆଦି ଯେତେ ଯେତେ ଅବତାର ହୋଇଛି, ସବୁ ନିତ୍ୟ, ଶାଶ୍ୱତ ଅଟନ୍ତି । ପୃଥକ ପୃଥକ ଦ୍ୱୀପ ଓ ଭୂଖଣ୍ଡରେ ତଥା କାଳରେ ତାଙ୍କର ସତ୍ତା ରହିଥାଏ ଏବଂ ସେ କ୍ଷେତ୍ରର ଅଧିବାସୀ ସେ ସମସ୍ତରେ ତାଙ୍କର ଶାସ୍ତ୍ରୀୟ ବିଧିରେ ପୂଜା କରିଥାନ୍ତି । ହିରଣ୍ୟକଶିପୁ ପୂର୍ବରୁ ନୃସିଂହ ଭଗବାନ ନଥିଲେ କିମ୍ବା ପୂଜାର୍ଚ୍ଚନା ହେଉ ନଥିଲା, ତାହା ନୁହେଁ । ନୃସିଂହ ଯେତେବେଳେ ମଧ୍ୟ ଯେଉଁଭଳି ଥିଲେ ବର୍ତ୍ତମାନ ମଧ୍ୟ ଅଛନ୍ତି ଏବଂ ପ୍ରହ୍ଲାଦ ନିମନ୍ତେ ହିରଣ୍ୟକଶିପୁର ସଭାରେ ଯେଉଁଭଳି ରୂପରେ ପ୍ରକଟିତ ହେଲେ; ତାହା ସେହି ନିତ୍ୟ ରୂପର

Digitized by srujanika@gmail.com

ପରିପ୍ରକାଶ । ତେବେ ମଧ୍ୟ ଲୌକିକ ବ୍ୟବହାର ଦୃଷ୍ଟିରୁ ଭଗବାନଙ୍କର ଏଭଳି ଅବତାର ଯେଉଁ ଉଦ୍ଦେଶ୍ୟ ନିମନ୍ତେ ହୋଇଥାଏ, ସେହି ନିମିତ୍ତକୁ ସାଧନ କରି ତତ୍କ୍ଷଣାତ୍ ତିରୋହିତ ହୋଇଯାନ୍ତି । କେବଳ ମାତ୍ର ଭକ୍ତରକ୍ଷାର୍ଥ ହିଁ ନୃସିଂହ ଭଗବାନ ଅବତରିତ ହୋଇଥିଲେ । ଭକ୍ତର ରକ୍ଷାକରିବା ପରେ ତାଙ୍କର ସେହି ଅବତାରର କାର୍ଯ୍ୟ ସେଠାରେ ହିଁ ସମ୍ପୂର୍ଣ୍ଣ ହେଲା । ବାସ୍ତବ ବିଚାରରେ ଭଗବାନଙ୍କର ନା କୌଣସି କାର୍ଯ୍ୟ ଅଛି ନା ତା'ର ପରିସମାପ୍ତି ଅଛି । ଏ ସବୁ ଉପରୁ ଆଉ ଆରୋପିତ ଲୀଳା ବୋଲି ଗ୍ରହଣ କରାଯାଏ ।

ଧର୍ମରାଜ ଯୁଧିଷ୍ଠିରଙ୍କୁ ନାରଦ କହୁଛନ୍ତି—''ରାଜନ୍, ଯେତେବେଳେ ପ୍ରହ୍ଲାଦ ଭଗବାନଙ୍କ ଆଜ୍ଞାରେ ପିତାଙ୍କର ଅନ୍ତ୍ୟେଷ୍ଟି କ୍ରିୟା ସମ୍ପନ୍ନ କଲେ, ତାପରେ ଭଗବାନଙ୍କର ଆଜ୍ଞାରେ ହିଁ ପ୍ରହ୍ଲାଦଙ୍କର ବିଧିବତ୍ ରାଜ୍ୟାଭିଷେକ ହେଲା । ହିରଣ୍ୟକଶିପୁର କ୍ରିୟାକର୍ମ ପୂର୍ବରୁ ସିଂହାସନ ଶୂନ୍ୟ ହୋଇ ନରହୁ ବୋଲି ପ୍ରଥମେ ସାମାନ୍ୟ ରୀତିରେ ରାଜଟୀକା ଲଗେଇ ପ୍ରହ୍ଲାଦଙ୍କୁ ସିଂହାସନର ଅଧିକାରୀ ବୋଲି ଘୋଷଣା କରାଗଲା । ତା'ର ଅଗ୍ନି ସଂସ୍କାର ବେଳେ ଶୁକ୍ରାଚାର୍ଯ୍ୟଙ୍କୁ ବରଣ କରାଗଲା । ସେ ହିଁ ଦୈତ୍ୟ ଦାନବମାନଙ୍କର କୁଳ ପୁରୋହିତ । ଅନ୍ୟ ଋଷି ମୁନିମାନଙ୍କୁ ମଧ୍ୟ ନିମନ୍ତ୍ରିତ କରାଗଲା । ରାଜ-ସିଂହାସନରେ ପ୍ରହ୍ଲାଦ ଅତ୍ୟନ୍ତ ଶୋଭିବନ୍ତ ମନେହେଲେ । ଭଗବାନ ତାଙ୍କୁ ଶିକ୍ଷାଦେବା ଛଳରେ କହିଲେ, ''ଦେଖ, ନିରନ୍ତର ମୋ ପ୍ରତି ଭକ୍ତିଭାବ ରଖି ନିଷ୍କାମ ଭାବରେ କର୍ତ୍ତବ୍ୟ ବୁଦ୍ଧି ଦ୍ୱାରା ସବୁ କାର୍ଯ୍ୟ କରିବ ।''

ବ୍ରହ୍ମା ଦେଖିଲେ ଭଗବାନ ହର୍ଷ ହସି କହୁଛନ୍ତି । ଅସୁରର କ୍ରିୟା କର୍ମ ସହିତ ପ୍ରଭୁଙ୍କର କ୍ରୋଧ ମଧ୍ୟ ସମାପ୍ତ ହେଲା । ପ୍ରସନ୍ନତାରେ ତାଙ୍କର ଶ୍ରୀମୁଖ ଅତ୍ୟନ୍ତ ସୌମ୍ୟ ମନେ ହେଲା । ରୋଷର କୌଣସି ଚିହ୍ନ ନଥିଲା । ଏହା ଦେଖି ବ୍ରହ୍ମା ମଧ୍ୟ ସାହସ କଲେ । ସେ ଶ୍ରୀ ହରିଙ୍କର ନିକଟବର୍ତ୍ତୀ ହୋଇ ସ୍ତୁତିପାଠ କରିବାକୁ ଲାଗିଲେ ।

ବ୍ରହ୍ମା କହିଲେ, ''ହେ ଦେବାଧିଦେବ, ଏହା ତ ଅତ୍ୟନ୍ତ ଆନନ୍ଦର ବିଷୟ ଯେ ଆପଣ ଏହି ଅଧମ ଅସୁରକୁ ଯମ ଭୁବନକୁ ପଠେଇ ଦେଇଛନ୍ତି । ତା'ର ଅମାପ ଗର୍ବକୁ ଭୂଲୁଣ୍ଠିତ କରିଛନ୍ତି । ତାକୁ ତା'ର ପାପର ଫଳ ଭୋଗ କରେଇଛନ୍ତି । ଏ ଦୁଷ୍ଟ ସମସ୍ତ ଲୋକଙ୍କୁ ସନ୍ତ୍ରସ୍ତ କରି ରଖିଥିଲା ।''

ଭଗବାନ ମୃଦୁକ ହସିଲେ, କହିଲେ, ''ସେ ଏତେ ବଳବାନ କେମିତି ହେଲା ?''

ବ୍ରହ୍ମା କହିଲେ, ''ସେ କଥା କ'ଣ କହୁଛନ୍ତି ପ୍ରଭୁ, ସେ ଏତେ ଅସାଧ୍ୟ ଓ ଘୋର ତପସ୍ୟା କଲା ଯେ ସେ ତପସ୍ୟାରେ ପ୍ରସନ୍ନ ହୋଇ ମୋତେ ଏପରି ଦୁର୍ଲ୍ଲଭ ବରଦାନ କରିବାକୁ ହେଲା । ସେଥିରେ ସେ ମଦୋନ୍ମତ୍ତ ହୋଇ ଉଠିଲା । ସେ ବର ମାଗିଲା ଯେ ଆପଣଙ୍କ ସୃଷ୍ଟିର କୌଣସି ପ୍ରାଣୀ ହାତରେ ମରିବ ନାହିଁ । ସେହି କାରଣରୁ ସେ

Digitized by srujanika@gmail.com

ତାର ତପ, କର୍ମ କୌଶଳ ଏବଂ ଶାରୀରିକ ବଳ ପ୍ରଭାବରେ ସମସ୍ତ ଦେବଲୋକ ଜୟ କରିନେଲା । ସମସ୍ତ ଲୋକପାଳଙ୍କୁ ସେବକ କରିନେଲା । ସମସ୍ତ ବେଦ ବିଧିର ଉଚ୍ଛେଦନ କଲା । ନିଜର ପୁତ୍ରମାନଙ୍କୁ ମଧ୍ୟ କଷ୍ଟ ଦେଲା ।"

ଭଗବାନ କହିଲେ, "ମୁଁ ତ ଏଭଳି ସମୟରେ ଧର୍ମ-ସଙ୍କଟରେ ପଡ଼ିଥାଏ । ହେ ବ୍ରହ୍ମା, ଆପଣ ବିନା ବିଚାରରେ ଦୁର୍ଲଭ ବରଦାନ କରନ୍ତି ଏବଂ ଏ କ୍ରୂରକର୍ମା ଅସୁର ପ୍ରଜା ପୀଡ଼ନ ଆରମ୍ଭ କରନ୍ତି । ମୁଁ ଅନ୍ୟାନ୍ୟ କଥା ସିନା ସହିନ କରିନେବି, ଭକ୍ତମାନଙ୍କ ପ୍ରତି ହେଉଥିବା ଅନ୍ୟାୟ ସହିବାକୁ ମୁଁ ଅସମର୍ଥ । ତେଣୁ ମୋତେ ଏଭଳି ଉଗ୍ର ରୂପ ନେଇ ନୃସିଂହ ରୂପ ଧାରଣ କରିବାକୁ ପଡ଼ିଲା ।"

ବ୍ରହ୍ମା କହିଲେ, "ପ୍ରଭୁ, ଆପଣ ତ ସମସ୍ତଙ୍କର ସ୍ୱାମୀ । ଆପଣ ମୋର ପ୍ରତ୍ୟେକ ବର ଦାନର ମାହାତ୍ମ୍ୟରକ୍ଷାକରି ଏହି ଦୈତ୍ୟର ସଂହାର କରିଛନ୍ତି ଏବଂ ପରମଭକ୍ତ ପ୍ରହ୍ଲାଦଙ୍କର ଦୁଃଖ ହରଣ କରିଛନ୍ତି । ଏ ପ୍ରହ୍ଲାଦ ମଧ୍ୟ ସର୍ବଭାବରେ ଆପଣଙ୍କର ଶରଣାଗତ ହେଲା । ପ୍ରଭୁ, ଆପଣ ଏହା ଉପରେ କୃପା କରନ୍ତୁ । ଏହାକୁ ଅଭୟ ପ୍ରଦାନ କରନ୍ତୁ । ଆପଣଙ୍କ ଦର୍ଶନ ମାତ୍ରକେ ସମସ୍ତ ଅମଙ୍ଗଳ ଏବଂ ଭୟ ନିବାରିତ ହୋଇଯାଇଛି । ଆପଣ ଅନନ୍ୟ ଆଶ୍ରିତ ଭକ୍ତର ମଧ୍ୟ ଉଦ୍ଧାର କରିଛନ୍ତି ଏବଂ ତାହା ସହିତ ମୁଁ ଦେଇଥିବା ବରଗୁଡ଼ିକର ମର୍ଯ୍ୟାଦା ରକ୍ଷାକରି ମୋତେ ମଧ୍ୟ ମିଥ୍ୟାବାଦୀ ହେବାରୁ ବଞ୍ଚେଇଛନ୍ତି । ଏହା ଶୁଣି ହସି ହସି ଭଗବାନ କହିଲେ, "ହେ ବ୍ରହ୍ମା, ଆପଣଙ୍କର ବରଗୁଡ଼ିକ ତ ସବୁକଥା ଗୋଳମାଳ କରିଦେଲେ । ସେଇମାନେ ହିଁ ଅସୁରକୁ ଉନ୍ମତ୍ତ ଓ ଉଚ୍ଛୃଙ୍ଖଳ କରିଦେଲେ । ଆପଣ ଏକଥା ଭବିଷ୍ୟତ ନିମନ୍ତେ ମନେ ରଖିବେ । ଭୁଲରେ ସୁଦ୍ଧା ଏଭଳି ବରଦାନ କରିବେ ନାହିଁ । କେହି ଭଲ ଲୋକ, ଜ୍ଞାନୀ, ଧ୍ୟାନୀ, ଭକ୍ତ, ତପସ୍ୱୀ, ସଦାଗ୍ରସ୍ତ ହୋଇଥିଲେ ସେମାନଙ୍କ ପ୍ରତି ବରଦାନ ଶୋଭାପାଏ । ମାତ୍ର ଏଭଳି ଦୁଷ୍ଟ ଲୋକଙ୍କୁ ବରଦେବା ଅର୍ଥ ଆପଣା ହାତରେ ଆପେ ଜିହ୍ୱା ଛେଦନ କରିବା । ସାପକୁ କ୍ଷୀର ଦେଇ ଘରେ ପାଳିବା ।"

ବ୍ରହ୍ମା କହିଲେ, "ଠିକ୍ କହୁଛନ୍ତି ପ୍ରଭୁ ! ଯାହା ହେଲା ହେଲା, ଏଣିକି ମୁଁ ମନେ ରଖିବି ।" ଏହାକହି ବ୍ରହ୍ମା ବିଧିପୂର୍ବକ ଭଗବାନଙ୍କର ପୂଜା କଲେ ।

ଧର୍ମରାଜ ଯୁଧିଷ୍ଠିରଙ୍କୁ ନାରଦ କହୁଛନ୍ତି, "ରାଜନ୍, ବ୍ରହ୍ମାଙ୍କର ପୂଜା ଗ୍ରହଣ କରି ନୃହରି ଭଗବାନ ଦେଖୁ ଦେଖୁ ଅନ୍ତର୍ଦ୍ଧାନ ହୋଇଗଲେ । ତା'ପରେ କାହାକୁ ହେଲେ ସେହି ମନମୋହିନୀ ମୂର୍ତ୍ତି ଦୃଶ୍ୟ ହେଲା ନାହିଁ । ଭଗବାନଙ୍କର ଅନ୍ତର୍ଦ୍ଧାନ ପରେ ରାଜ୍ୟପ୍ରାପ୍ତ ହୋଇଥିବା ପ୍ରହ୍ଲାଦ ସମାଗତ ସମସ୍ତ ଦେବତାମାନଙ୍କୁ ଯଥୋଚିତ ପୂଜା ଅର୍ଚ୍ଚନା କରି ତାଙ୍କ ପ୍ରତି କୃପା ଦୃଷ୍ଟି ରଖିବାକୁ ପ୍ରାର୍ଥନା କଲେ ।

Digitized by srujanika@gmail.com

ଦେବତାମାନେ, ମୁନିଗଣ ତଥା ସମାଗତ ସାଧୁସନ୍ଥମାନେ ପ୍ରହ୍ଲାଦଙ୍କୁ ଆଶୀର୍ବାଦ ଦେଲେ, ତାଙ୍କର ମଙ୍ଗଳ କାମନା କଲେ ଏବଂ ତାଙ୍କର ସତ୍କାରରେ ସନ୍ତୁଷ୍ଟ ହୋଇ ଆପଣା ଆପଣା ଧାମକୁ ଚାଲିଗଲେ ।

ଶ୍ରୀ ନାରଦ କହୁଛନ୍ତି "ରାଜନ୍, ଆପଣ ମୋତେ ହିରଣ୍ୟକଶିପୁର ବୃତ୍ତାନ୍ତ ପଚାରିଥିଲେ । ତାହା ମୁଁ ଆପଣଙ୍କୁ କହିଲି । ହିରଣାକ୍ଷ ଏବଂ ହିରଣ୍ୟକଶିପୁ ପ୍ରଥମେ ଭଗବାନଙ୍କର ଜୟ ବିଜୟ ନାମକ ପାର୍ଷଦ ଥିଲେ । ସନକାଦି ମହର୍ଷିଙ୍କର ଅଭିଶାପ ଫଳରେ ଭଗବାନ କଶ୍ୟପଙ୍କ ବୀର୍ଯ୍ୟରୁ ଅଦିତିଙ୍କ ଗର୍ଭରେ ଜନ୍ମଗ୍ରହଣ କଲେ । ସେମାନେ ଭଗବାନଙ୍କୁ ନିଜର ଶତ୍ରୁ ମନେକରି ନିରନ୍ତର ତାଙ୍କର କଥା ଭାବୁଥିଲେ । ତିନୋଟି ଜନ୍ମରେ ସେମାନେ ଶାପମୁକ୍ତ ହେବେ ବୋଲି ନିର୍ଦ୍ଧାରିତ ହୋଇଥିଲା । ତେଣୁ ସେମାନେ ଉଭୟେ ପରେ ରାବଣ ଓ କୁମ୍ଭକର୍ଣ୍ଣ ଭାବରେ ଜନ୍ମହେଲେ, ଯେଉଁମାନଙ୍କୁ ରାମ ଅବତାରରେ ଶ୍ରୀହରି ସଂହାର କଲେ । ତା'ପରେ ସେମାନେ ଶିଶୁପାଳ ଏବଂ ଦନ୍ତବକ୍ତ୍ର ଭାବରେ ଜନ୍ମ ହେଲେ ଏବଂ କୃଷ୍ଣାବତାରରେ ଭଗବାନ ସେମାନଙ୍କର ଉଦ୍ଧାର କରିଛନ୍ତି ।

ରାଜନ୍, ବର୍ତ୍ତମାନ ଶିଶୁପାଳ ନିହତ ହେଲା । ଯା'ର ସାଯୁଜ୍ୟ ମୁକ୍ତି ଦେଖି ଆପଣ ବିସ୍ମିତ ହୋଇଛନ୍ତି, ସେ ଭଗବାନଙ୍କର ପାର୍ଷଦ ବ୍ୟତୀତ ଆଉ କେହି ନୁହେଁ । ଦ୍ୱିତୀୟ ଜନ୍ମରେ ଏକମାତ୍ର ତାକୁ ମୁକ୍ତି ପ୍ରାପ୍ତ ହେଲା । ମୁଁ ଭଗବନ୍ ବ୍ରହ୍ମଣ୍ୟ ଦେବ ପରମାତ୍ମା ଶ୍ରୀକୃଷ୍ଣଙ୍କର ପରମ ପବିତ୍ର ନୃସିଂହ ଅବତାରର କଥା କହିଲି । ଏହି ଅବତାରରେ ସେ ଦୈତ୍ୟ ହିରଣ୍ୟକଶିପୁର ସଂହାର କଲେ । ହିରଣାକ୍ଷ ବଧ କଥା ମୁଁ ତାଙ୍କର ବରାହ ଅବତାର ପ୍ରସଙ୍ଗରେ କହି ସାରିଛି ।"

ହିରଣାକ୍ଷ ବଧ କଥା ଶୁଣି ଶୌନକ କହିଲେ, "ହେ ସୂତ, ଆପଣତ ଭଗବାନଙ୍କର ଅଦ୍ଭୁତ ଅବତାର କଥା କହୁଛନ୍ତି । ଶିଶୁପାଳର ତିନୋଟି ଜନ୍ମ ବିଷୟରେ ବିବରଣୀ ପ୍ରଦାନ କଲେ, ମାତ୍ର ମୋର ତଥାପି ମଧ୍ୟ ଏକ ସନ୍ଦେହ ରହିଗଲା । ଆପଣ ତା'ର ସମାଧାନ କରନ୍ତୁ ।"

ଶ୍ରୀ ସୂତ କହିଲେ, "ମହାଭାଗ, କହନ୍ତୁ ମୁଁ ଯଥାସମ୍ଭବ ତାର ଉତ୍ତର ଦେବି ।"

ଶୌନକ କହିଲେ, "ମହାଭାଗ, ପ୍ରହ୍ଲାଦଙ୍କର ଯେତେ କଥା ମୁଁ ଶୁଣିଛି, ସେତେ ଆଶ୍ଚର୍ଯ୍ୟାନ୍ୱିତ ହୋଇଛି । ବାଲ୍ୟକାଳରୁ ହିଁ ଭଗବତ ଗୁଣପ୍ରତି ଅନୁରକ୍ତ, ଆସୁରୀ ଭାବ ପ୍ରତି ବିରକ୍ତ, ପଠନ-ପାଠନରେ ପ୍ରଭୁ-ପାଦ-ପଦ୍ମରେ ଆସକ୍ତ, ଏହା ସାଧାରଣ କାର୍ଯ୍ୟ ନୁହେଁ । ପିତା ତାଙ୍କୁ କେତେ କେତେ କଷ୍ଟ ଦେଲେ ନାହିଁ, ସେଥିରୁ ବଞ୍ଚିଯିବା ତ କୌଣସି ପ୍ରକାର ଆଶ୍ଚର୍ଯ୍ୟ କଥା ନୁହେଁ, କାରଣ ଯା'ର ରକ୍ଷକ ଭଗବାନ ତାକୁ ମାରିବାକୁ କିଏ ସମର୍ଥ ହେବ । ମାତ୍ର ମୁଁ ସେହି କଥା ଲାଗି ବିସ୍ମିତ

Digitized by srujanika@gmail.com

ହେଉଛି ଯେ ପିତା ତାଙ୍କୁ ଏତେ କ୍ଳେଶ ଦେଇଥିବା ସତ୍ତ୍ୱେ ପ୍ରହ୍ଲାଦଙ୍କ ମନରେ କୌଣସି ଦ୍ୱେଷଭାବ ଜନ୍ମିଲା ନାହିଁ କେଉଁପରି ? ତାଙ୍କର ଶ୍ରଦ୍ଧା ସେଭଳି ଅତୁଟ ରହିଥିଲା । କେବଳ ସେତିକି ନୁହେଁ, ମୃତ୍ୟୁ ପରେ ପ୍ରହ୍ଲାଦ ପିତାଙ୍କର ସଦ୍‌ଗତି ନିମନ୍ତେ ଭଗବାନଙ୍କ ନିକଟରେ ପ୍ରାର୍ଥନା ମଧ୍ୟ କରିଛନ୍ତି । ମହାଭାଗ, ମୁଁ ଏଭଳି ନା ଦେଖିଥିଲି ନା ଶୁଣିଥିଲି । ଏଭଳି ଧୈର୍ଯ୍ୟ, ଏତେ ସହନଶୀଳତା କେଉଁ କାରଣରୁ ପ୍ରହ୍ଲାଦଙ୍କର ରହିଥିଲା ।

ଏହାଶୁଣି ସୂତ କହିଲେ, "ମହାଭାଗ, ଏହା କେବଳମାତ୍ର ଗୋଟିଏ ଜନ୍ମର ପୁଣ୍ୟ ଫଳ ନୁହେଁ । ଏତେ ସହନଶୀଳତା ଏପରି ମହତ୍ ଗୁଣ ଅନେକ ଜନ୍ମର କଠିନ ସାଧନା ଦ୍ୱାରା ହିଁ ସମ୍ଭବ ହୋଇଥାଏ ।

ଏହା ଶୁଣି ଶୌନକ କହିଲେ, "ହେ ସୂତ, ଆପଣ ତ ଶିଶୁପାଳର କଥା କହିଲେ, ଏହା ଉପରୁ କହନ୍ତୁ, ପ୍ରହ୍ଲାଦ ପୂର୍ବ ଜନ୍ମରେ କିଏ ଥିଲେ । ତାଙ୍କର ଏତେ ସହନଶକ୍ତି କିପରି ଆସିଲା । କେଉଁପରି ସେ ଦ୍ୱେଷୀ ପିତା ପ୍ରତି ମଧ୍ୟ ଭକ୍ତି ରଖିଥିଲେ । ଏହା ଶୁଣିବାକୁ ଆମର ଚିତ୍ତର କୌତୂହଳ ଜାତ ହେଉଛି ।"

ସୂତ କହିଲେ, "ହେ ମୁନିଗଣ, ମୁଁ ପ୍ରହ୍ଲାଦଙ୍କର ପୂର୍ବ ଜନ୍ମର କଥା କହୁଛି । ଆପଣମାନେ ଧ୍ୟାନ ଦେଇ ଶୁଣନ୍ତୁ ।"

## ଛପ୍‌ପୟ

ଅବ କବହୂଁ ନହିଁ ଦେଇଁ ଦୁଷ୍ଟ ଦୈତ୍ୟନ କୂଁ ଅସ ବର ।
କରୈଁ ସୁଧା କୋ ପାନ ସଦା ବିଷ ଉଗଲୈଁ ବିଷଧର ॥
ଯୌଁ ସବ କୂଁ ସମୁଝାଇ ଭୟେ ଅନ୍ତର୍ହିତ ନରହରି ।
ବିଦା କରେ ପ୍ରହ୍ଲାଦ ଦେବ ଋଷି ଅତି ଆଦର କରି ॥
ହିରନକଶିପୁ ଉଦ୍ଧାର ଅରୁ, ଚରିତ ଅସୁର ସୁତ କୋ କହ୍ୟୋ ।
ଯୌଁ ଦ୍ୱେଷୀ ଶିଶୁପାଲ ହରି, ସାଥନି ମରି ତନ୍ମୟ ଭୟୋ ॥

—※—

Digitized by srujanika@gmail.com

# ପ୍ରହ୍ଲାଦଙ୍କର ପୂର୍ବଜନ୍ମ ବୃତ୍ତାନ୍ତ

ସ ବୈ ମହାଭାଗବତୋ ମହାତ୍ମା
ମହାନୁଭାବୋ ମହତାଂ ମହିଷ୍ଠଃ ।
ପ୍ରବୃଦ୍ଧଭକ୍ତ୍ୟା ହ୍ୟନୁଭାବିତାଶୟେ
ନିବେଶ୍ୟ ବୈକୁଣ୍ଠମିମଂ ବିହାସ୍ୟତ ॥

ଶ୍ରୀ. ଭା. ୩ । ୧୪ । ୪୭

## ଛପ୍ପୟ

ପୂର୍ବ ଜନ୍ମ ମହଁ ହତେ ବିପ୍ର ପ୍ରହ୍ଲାଦ ଯଶସ୍ୱୀ ।
ମାତୁ ପିତା କେ ଭକ୍ତ ଧର୍ମରତ ପରମ ତପସ୍ୱୀ ॥
ଲୈନ ପରୀକ୍ଷା ପିତା ଦେହ ମହଁ କୁଷ୍ଟ ବନା ୟେ ।
ଘୃନା ତନକ ନହିଁ କରୀ ଅମୃତ କୋ ଘଡ଼ା ଭରାୟେ ॥
ପୁତ୍ର ଭକ୍ତି ତେଁ ପିତା ହୁ, ଅତି ପ୍ରସନ୍ନ ତନ ପୈ ଭୟେ ।
ଅଶିଷ ଦୈ ଦୀକ୍ଷା ଦଇ, ପତ୍ନୀ ସଁଗ ବନ କୁଁ ଗୟେ ॥

ଜୀବର ଯେତେବେଳ ପର୍ଯ୍ୟନ୍ତ କାହାପ୍ରତି ନିଷ୍ଠା ଆସି ନାହିଁ, ସେତେବେଳ ପର୍ଯ୍ୟନ୍ତ ହୃଦୟରେ ଆସ୍ତିକତା, ଦୃଢ଼ତା, ସ୍ଥିରତା, କର୍ତ୍ତବ୍ୟ ତତ୍ପରତା ତଥା ସହନଶୀଳତା ଆସେ ନାହିଁ । ନିଷ୍ଠା ସମ୍ବନ୍ଧରୁ ହୋଇଥାଏ । ସମସ୍ତଙ୍କଠାରୁ ସମ୍ବନ୍ଧରେ ଅଧିକ ହୋଇଥାନ୍ତି ମାତା ପିତା । ସେମାନେ ଏ ଶରୀରର ପ୍ରଦାନକର୍ତ୍ତା । ଏହାଠାରୁ ଅଧିକ ସମ୍ବନ୍ଧୀ ହୋଇଛନ୍ତି ଶ୍ରୀ ଗୁରୁଦେବ । ସେ ଅଜ୍ଞାନତା ଦୂରକରି ଜ୍ଞାନର ପ୍ରଦୀପ ପ୍ରଜ୍ୱଳିତ କରନ୍ତି । ଶ୍ରେଷ୍ଠ ସିଦ୍ଧ ଶାସ୍ତ୍ରକାରମାନେ ଏହି କଥା ଉପରେ ପୁନଃ ପୁନଃ ଗୁରୁତ୍ୱ ଆରୋପ କରିଥାନ୍ତି ଯେ ପିତା ମାତା

Digitized by srujanika@gmail.com

ଏବଂ ଗୁରୁଙ୍କୁ ଦେବତାତୁଲ୍ୟ ଜ୍ଞାନ କର । ଯେ ମାତୃଦେବ, ପିତୃଦେବ ଓ ଆଗୃହୀ ଦେବଙ୍କର ଆଶୀର୍ବାଦ ପ୍ରାପ୍ତ ହୋଇଛନ୍ତି ତାଙ୍କର କଦାପି ଦୁର୍ଗତି ହୁଏ ନାହିଁ । ଯେଉଁମାନଙ୍କ ଘରେ ପିତାମାତା ଉପସ୍ଥିତ ଅଛନ୍ତି ଏବଂ ସେ ଏଣେତେଣେ ତୀର୍ଥାଟନ କରୁଛନ୍ତି, ତେବେ ସେ ତୀର୍ଥ ଭ୍ରମଣ ବୃଥା । ଆରେ, ଘରେ ଜଙ୍ଗମତୀର୍ଥ ଉପସ୍ଥିତ ଅଛି ଯେତେବେଳେ, ସ୍ଥାବର ତୀର୍ଥକୁ କାହିଁକି ଯାଉଛ ? ମାତାପିତାଙ୍କଠାରୁ ସଂସାରରେ ଆଉ କେଉଁ ବଡ଼ ତୀର୍ଥ ଅଛି ?

ଶ୍ରୀ ସୂତ କହୁଛନ୍ତି, "ହେ ମୁନିଗଣ, ମୁଁ ଆପଣମାନଙ୍କୁ ପରମ ଭାଗବତ ପ୍ରହ୍ଲାଦଙ୍କର ପୂର୍ବ ଜନ୍ମର ବୃତ୍ତାନ୍ତ ଶୁଣାଉଛି । ତାକୁ ଆପଣମାନେ ଦୃଢ଼ଚିତ୍ତ ହୋଇ ଶ୍ରବଣ କରନ୍ତୁ ।"

ସମୁଦ୍ର ପରିବୃତ୍ତ ହୋଇ ପୂର୍ବକାଳରେ ଦ୍ୱାରକା ନାମକ ଏକ ପରମ ପବିତ୍ର ଧାମ ଥିଲା । ତାକୁ ଗନ୍ଧର୍ବମାନେ ଧ୍ୱଂସ କରିଦେବା ଫଳରେ ଦ୍ୱାପରରେ ଭଗବାନ ତାର ପୁନଃ -ନିର୍ମାଣ କଲେ । ତାହା ଏକ ଅତ୍ୟନ୍ତ ପ୍ରାଚୀନ ନଗରୀ । ପୂର୍ବକାଳରେ ଏହି ନଗରୀରେ ବେଦ-ବେଦାଙ୍ଗବିତ୍ ପରମଧାର୍ମିକ ଶିବଶର୍ମା ନାମକ ଜଣେ ବ୍ରାହ୍ମଣ ବାସ କରୁଥିଲେ । ସେ ଜଣେ ତପସ୍ୱୀ ପୁରୁଷ । ତାଙ୍କର ପାଞ୍ଚୋଟି ପୁତ୍ରଥିଲେ । ପୁତ୍ରମାନଙ୍କର ନାମ ଯଥାକ୍ରମେ ଯାଜ୍ଞଶର୍ମା, ବେଦଶର୍ମା, ଧର୍ମଶର୍ମା ଏବଂ ବିଷ୍ଣୁଶର୍ମା ଥିଲା । ସେମାନେ ସମସ୍ତେ ଧର୍ମାତ୍ମା, ମାତୃ-ପିତୃଭକ୍ତ ଏବଂ ପିତାଙ୍କର ଅତ୍ୟନ୍ତ ଆଜ୍ଞାକାରୀ । କୌଣସି ଦେବତାଙ୍କୁ ମଧ୍ୟ ପିତାମାତାଙ୍କଠାରୁ ବଡ଼ ବୋଲି ମନେ କରୁନଥିଲେ । ପିତୃ ସେବା କରି କରି ସେମାନେ ମଧ୍ୟ ସିଦ୍ଧ ହୋଇ ଯାଇଥିଲେ । ସମସ୍ତଙ୍କୁ ମାନସିକ ସିଦ୍ଧି ମଧ୍ୟ ପ୍ରାପ୍ତ ହୋଇଥିଲା ।

ସୂତ କହୁଛନ୍ତି, "ହେ ମୁନିଗଣ, ଏହା ତ୍ରେତୟା ଯୁଗର କଥା । ସେ ସମୟରେ ପ୍ରାୟ ସମସ୍ତେ ସଦାଚାରୀ, ନିୟମ ସଂଯମ ପାଳନ କରୁଥିବା ଶାନ୍ତ ଓ ଦାନ୍ତ ବ୍ୟକ୍ତିମାନେ ଥିଲେ । ଦେବତାମାନେ ପ୍ରତ୍ୟକ୍ଷ ରୂପରେ ପୃଥିବୀରେ ଅବତରଣ କରୁଥିଲେ । ତପସ୍ୟାଦ୍ୱାରା ମନୁଷ୍ୟମାନେ ଜୀବିତ ଅବସ୍ଥାରେ ସ୍ୱର୍ଗଯାତ୍ରା କରିପାରୁଥିଲେ ଏବଂ ଇଚ୍ଛାମତେ ପ୍ରତ୍ୟାବର୍ତ୍ତନ କରୁଥିଲେ । ମହାରାଜ ଦଶରଥ, ଖଟ୍ୱାଙ୍ଗ ଆଦି ଅନେକ ରାଜା ଦେବତାମାନଙ୍କ ପକ୍ଷରୁ ଦୈତ୍ୟମାନଙ୍କ ସହିତ ଯୁଦ୍ଧ କରିବାକୁ ଯାଉଥିଲେ । ଏପରିକି ପୃଥିବୀର କେତେଜଣ ରାଜା ଇନ୍ଦ୍ରାସନରେ ବସି ସ୍ୱର୍ଗର ଶାସନ ପର୍ଯ୍ୟନ୍ତ କରୁଥିଲେ । ତପସ୍ୟାର ପ୍ରଭାବରେ ସେତେବେଳେ ବ୍ରାହ୍ମଣମାନଙ୍କର ମଧ୍ୟ ବରଦାନ କରିବା ଏବଂ ଅଭିଶାପ ଦେବାର ଶକ୍ତି ରହିଥିଲା । ଯାହାପ୍ରତି ପ୍ରସନ୍ନ ହେଉଥିଲେ ଇଚ୍ଛାମତେ ବରଦାନ କରିପାରୁଥିଲେ । କ୍ରୋଧିତ ହେଲେ ଅଭିଶାପ ଦେଉଥିଲେ । ଆଜି କଳିଯୁଗରେ ଲୋକେ ଏ କଥା ବିଶ୍ୱାସ ପର୍ଯ୍ୟନ୍ତ କରିବେ ନାହିଁ । କାରଣ ବର୍ତ୍ତମାନ ଲୋକଙ୍କର ସଂଯମ ନାହିଁ, ଶ୍ରଦ୍ଧା ନାହିଁ, ସଦାଚାର ଏବଂ ସାଧୁତା ମଧ୍ୟ ନାହିଁ । ଯେଉଁମାନେ ଇନ୍ଦ୍ରିୟ ଜୟ କରିଛନ୍ତି, କାମିନୀ କାଞ୍ଚନପ୍ରତି ଲୋଭ ଯେଉଁମାନଙ୍କର ନାହିଁ, ସେମାନେ ଯାହା ଇଚ୍ଛା କରିବେ ତାହା କରିପାରିବେ ।

Digitized by srujanika@gmail.com

ତପସ୍ୟାରତ ସାଧୁମାନଙ୍କୁ ପରୀକ୍ଷା କରି ଦେଖାଯାଉଥିଲା, କାମିନୀ କାଞ୍ଚନର ମୋହ ତ ରହିନାହିଁ । ତେଣୁ ଇନ୍ଦ୍ର ଯାହାକୁ ବି ଉଗ୍ର ତପସ୍ୟା କରିବା ଦେଖୁଥିଲେ ତା ପାଖକୁ ସ୍ୱର୍ଗର ଅପସରୀମାନଙ୍କୁ ପଠେଇ ଦେଉଥିଲେ ।

ଏହା ଶୁଣି ଶୌନକ କହିଲେ —"ହେ ସୂତ, ସତରେ ସ୍ୱର୍ଗରେ ଅପ୍‌ସରା ଅଛନ୍ତି, ନା ଆକାଶ-ପୁଷ୍ପ ଭଳି ନାମୋଚ୍ଚାରଣ ମାତ୍ରକୁ ଅଛନ୍ତି । କଳିଯୁଗରେ ତ ସେମାନେ ଦେଖାଯାଉ ନାହାନ୍ତି । ପ୍ରଥମରେ ତ ଯେ ଯେଉଁଠି ତପସ୍ୟା କଲା ମାତ୍ରକେ ଇନ୍ଦ୍ର ଅପସରାଙ୍କୁ ପଠେଇ ଦେଉଥିଲେ । ଆଜିକାଲି ଲୋକେ ଯେତେ ଯେତେ ତପସ୍ୟା କଲେ ମଧ୍ୟ ସେମାନେ ଆସୁ ନାହାନ୍ତି । କଥା କଣ ?"

ଏହି ପ୍ରଶ୍ନରେ ସୂତ ଗମ୍ଭୀର ହୋଇଗଲେ, କହିଲେ—"ମହାରାଜ, ବେଦ ପୁରାଣର ଯେତେ ଯେତେ କଥା ସବୁ ସତ୍ୟ । ଆମର ଶ୍ରଦ୍ଧାର ଅଭାବ ଫଳରେ ଆମର ବିଶ୍ୱାସ ଆସୁ ନାହିଁ । ବେଦଶାସ୍ତ୍ରମାନଙ୍କରୁ ପୁନର୍ଜନ୍ମ ତଥା ପରଲୋକ ସମ୍ବନ୍ଧୀ କଥା ବାଦଦେଲେ ଆଉ କଣ ବା ରହିବ ? ତଳେ ଉପରେ ଅନେକ ଲୋକ ରହିଛି । ସେଥିରେ ଦେବ, ଅସୁର, ଗୁହ୍ୟକ, ରାକ୍ଷସ, ଯକ୍ଷ, ଗନ୍ଧର୍ବ, କିଂପୁରୁଷ, କିନ୍ନର, ଭୂତ, ବେତାଳ ଆଦି ଅନେକ ପ୍ରକାର ପ୍ରାଣୀ ରହିଛନ୍ତି । ଦେବତା ଅଛନ୍ତି । ସ୍ୱର୍ଗ ଅଛି, ତାର ଅଧିପତି ଇନ୍ଦ୍ର ଅଛନ୍ତି, ଅପସରାମାନେ ଅଛନ୍ତି । ଏସବୁ ତପସ୍ୟାର ପୁଣ୍ୟ ବଳରୁ ପ୍ରାପ୍ତ ହୋଇଥାଏ । କଳିଯୁଗରେ ଏତେ ପୁଣ୍ୟ କେଉଁଠାରୁ ଆସିବ ? ପହିଲେ କଥା କଥାରେ ଗୋଦାନ, ସୁବର୍ଣ୍ଣଦାନ, ଭୂମିଦାନ ହେଉଥିଲା । ଜଣେ ଜଣେ ନିତ୍ୟ ଲକ୍ଷ ଲକ୍ଷ ଗୋଦାନ କରୁଥିଲେ । ଏବେ ଲକ୍ଷେ ଗାଈ ଦେଖିବାକୁ ମିଳୁ ନାହାନ୍ତି । ପହିଲେ ଲୋକେ ଲକ୍ଷ ଲକ୍ଷ ବର୍ଷ ନ ଖାଇ ତପସ୍ୟା କରୁଥିଲେ, ତା'ହେଲେ ଇନ୍ଦ୍ରଙ୍କ ଆସନ ଟଳମଳ ହେଉଥିଲା । ସେତେବେଳେ ଇନ୍ଦ୍ର ଅପ୍‌ସରା ପଠେଇବାକୁ ଚିନ୍ତା କରୁଥିଲେ । ଆଜିକାଲି ତ ଦିନେ ଅନ୍ନ ନ ମିଳିଲେ ଆମର ପ୍ରାଣ ଟଳମଳ ହୋଇଯାଉଛି । ପହିଲେ ଲୋକେ କାମିନୀ କାଞ୍ଚନକୁ ତୁଚ୍ଛ ମନେକରି ସେମାନଙ୍କ ନିକଟରୁ ଦୃଷ୍ଟି ଫେରାଇ ତପସ୍ୟା କରୁଥିଲେ । ଯେତେବେଳେ ଏହି ମର୍ତ୍ତ୍ୟ-ଲୋକର ଲଳନାମାନଙ୍କ ପ୍ରତି ବିରକ୍ତି ଆସୁଥିଲା, ସେତେବେଳେ ସ୍ୱର୍ଗର ଅପ୍‌ସରା ଆସୁଥିଲେ । କଳିଯୁଗର ତପସ୍ୱୀଙ୍କର ତ ମାନବୀୟ ରୂପ ଦେଖିଲେ ଗୋଡ଼ ଖସି ଯାଉଛି । ସାମାନ୍ୟ ଟିକିଏ ଚାକଚକ୍ୟ ଓ ସୌନ୍ଦର୍ଯ୍ୟ ଦେଖି ଚିତ୍ତ ଚାଞ୍ଚଲ୍ୟ ଆସୁଛି । ତା'ହେଲେ ସେମାନଙ୍କ ନିକଟକୁ ଇନ୍ଦ୍ର ସ୍ୱର୍ଗର ଅପ୍‌ସରା କାହିଁକି ପଠେଇବେ । ଯେ ଅତି ସହଜରେ ଚୁପୁଡ଼ାଟିଏରେ ମରିଯିବ ତା'ପାଇଁ ଅସ୍ତ୍ର ଉଠେଇବାର କି ଦରକାର ! ଭଗବନ୍, କଳିକାଳରେ କାମିନୀ କାଞ୍ଚନ ଲୋଭ ସିଦ୍ଧି ପ୍ରାପ୍ତ ହେବାକୁ ଦେବ ନାହିଁ । ଏମାନଙ୍କ ପ୍ରତି ଆକର୍ଷଣ ଅନାଦି କାଳରୁ ରହିଛି । ସତ୍ୟଯୁଗରେ ମଧ୍ୟ ଲୋକ ମୋହିତ ହେଉଥିଲେ, ମାତ୍ର ଯା'ର ଯେତେ ସାମର୍ଥ୍ୟ ଥିଲା, ଯା'ର ଯେତେ ବଡ଼ ତ୍ୟାଗ ଓ ବୈରାଗ୍ୟ ଥିଲା, ତାକୁ ସେଭଳି ମହତ୍ତ୍ୱ ବସ୍ତୁ

Digitized by srujanika@gmail.com

ପ୍ରାପ୍ତ ହେଉଥିଲା । କଳିଯୁଗର ଜୀବଙ୍କ ହୃଦୟରେ ତ କାମିନୀ କାଞ୍ଚନ ଲୋଭ ପୂରି ରହିଛି । ଉପରେ ଉପରେ ଜପ, ତପ, ପୂଜା ପାଠ, ପରୋପକାର କରନ୍ତି । ଏହି ଶୁଭ-କର୍ମମାନଙ୍କପାଇଁ ସେମାନଙ୍କ ପ୍ରତି ଲୋକଙ୍କର ଆକର୍ଷଣ ବଢ଼ିଥାଏ । ନରନାରୀ ସେମାନଙ୍କ ନିକଟକୁ ଆସନ୍ତି । ସାମାନ୍ୟ କିଛିଏ ଆକର୍ଷଣ ଜାତ ହେଲେ ସବୁ କଥାର ବିକୃତ ଆସେ । ଯାହାବି ହେଉ, ହେ ମୁନିଗଣ, ଈଶ୍ୱର ଆପଣମାନଙ୍କର ମଙ୍ଗଳ ବିଧାନ କରନ୍ତୁ । ସଭିଏଁ ତ ଜପ ତପ ସବୁକିଛି ଭୁଲି ଯାଉଛନ୍ତି । ହୃଦୟ ଧନ ଛାଡ଼ି ସଂସାରୀ ଧନ ସଂଗ୍ରହରେ ମାତି ଯାଉଛନ୍ତି । ସମସ୍ତେ ଭୁଲି କାମର ଭ୍ରମରେ ପଡ଼ି ଯାଉଛନ୍ତି । ଏଭଳି ଅବସ୍ଥାରେ ଅପସରି କୁଆଡୁ ଆସିବେ ? ଏହି କାରଣରୁ କଳିଯୁଗୀ ବଗ-ବୈଷ୍ଣବମାନଙ୍କୁ ଭଗବାନଙ୍କର ଦର୍ଶନ ଲାଭ ହେଉ ନାହିଁ । ଏଭଳି ସନ୍ଦେହ ଦିନେ ଭଗବାନଙ୍କ ନିକଟରେ ନାରଦ ମଧ୍ୟ କରିଥିଲେ ।"

ଏହାଶୁଣି ଶୌନକ ପଚାରିଲେ—"ହେ ସୂତ, ନାରଦ ଭଗବାନଙ୍କ ନିକଟରେ କେଉଁଭଳି ଶଙ୍କା ପ୍ରକାଶ କଲେ ଏବଂ ଭଗବାନ କ'ଣ ଉତ୍ତର ଦେଇ ସେ ଶଙ୍କାର ସମାଧାନ କଲେ । କୃପାକରି ତାହା କହନ୍ତୁ ।"

ଶୌନକଙ୍କର କଥା ଶୁଣି ସୂତ କହିଲେ—"ମୁନିଗଣ, ସେ କଥା ମୁଁ ଆପଣମାନଙ୍କୁ ଶୁଣାଇବି, ଆପଣମାନେ ଦୃଢ଼ଚିତ୍ତ ହୋଇ ଶ୍ରବଣ କରନ୍ତୁ ।"

ଦିନେ ନାରଦ ଭଗବାନ ବୈକୁଣ୍ଠନାଥଙ୍କ ନିକଟରେ ପହଞ୍ଚିଲେ । ପହଞ୍ଚି ଭଗବାନଙ୍କୁ ପ୍ରଣାମ କଲେ ଓ ହାତଯୋଡ଼ି କହିଲେ "ଭଗବାନ, ଆପଣ କଳିଯୁଗ ଜୀବଙ୍କ ପ୍ରତି ଏତେ କଠୋର ହୋଇଛନ୍ତି କାହିଁକି ?"

ଭଗବାନ ବିସ୍ମିତ ହୋଇ କହିଲେ, "କାହିଁକି, କଣ ହେଲା ନାରଦ !"

ନାରଦ କଥାଟି ଉପରେ ଗୁରୁତ୍ୱ ଦେଇ କହିଲେ—"ପ୍ରଭୁ, କଣ ବା ଆଉ ହୁଅନ୍ତା ? ଅନ୍ୟଯୁଗମାନଙ୍କରେ ଆପଣ ସ୍ମରଣ ମାତ୍ରକେ ଆସି ଯାଉଥିଲେ, ମାତ୍ର କଳିକାଳରେ ଆପଣଙ୍କର ଏତେ ଭଜନ କୀର୍ତ୍ତନ ହେଉଥିଲେ ବି, ଆପଣଙ୍କୁ ଏତେ ଡାକୁଥିଲେ ବି ଆପଣ ଦର୍ଶନ ଦେଉନାହାନ୍ତି । ଆପଣଙ୍କର ଭକ୍ତମାନେ ଆପଣଙ୍କ ନିମନ୍ତେ ସବୁଦା ବ୍ୟାକୁଳ ହୋଇ ରହିଛନ୍ତି ।"

ଭଗବାନ ଅନ୍ୟମନସ୍କ ଭାବରେ କହିଲେ, "ହେ ନାରଦ, ମୋତେ କିଏ ଡାକୁଛି ! କେହି ମୋତେ ହୃଦୟ ସହିତ ଡାକିଲେ ମୁଁ କଦାପି ରହି ପାରିବି ନାହିଁ ।"

Digitized by srujanika@gmail.com

ନାରଦ ବିସ୍ମିତ ହୋଇ କହିଲେ, "ଭଗବାନ, ଆପଣ ଏପରି କିପରି କହୁଛନ୍ତି ? ମୁଁ ତ ଭାରତବର୍ଷକୁ ପ୍ରତିଦିନ ଯାଉଛି । ସେଠାରେ ମୁଁ ଭକ୍ତମାନଙ୍କୁ ଦେଖୁଛି । ପ୍ରେମବିହ୍ୱଳ ହୋଇ ଅନେକେ କାନ୍ଦି ପକାଉଛନ୍ତି, ଗାଉଛନ୍ତି, ଅନେକେ କୀର୍ତ୍ତନ କରିକରି ମୂର୍ଚ୍ଛିତ ହେଉଛନ୍ତି । ଅନେକ ଦାନ କରୁଛନ୍ତି । ଅନେକ ଅହରହ କୀର୍ତ୍ତନ କରୁଛନ୍ତି, ଆପଣଙ୍କୁ ଡାକୁଛନ୍ତି, ଚିତ୍କାର କରୁଛନ୍ତି । ଆପଣ କ'ଣ କାହାରି ହେଲେ ଡାକ ଶୁଣୁ ନାହାନ୍ତି ?"

ଭଗବାନ ଦୀର୍ଘଶ୍ୱାସ ତ୍ୟାଗକରି କହିଲେ, "ଆହେ ନାରଦ, ମୋତେ କିଏ ଡାକୁଛି ? ମନରେ 'କାମ' ଆଉ 'ଦାମ' ଭରି ରହିଛି, ଉପରେ ଉପରେ କିନା ମୋତେ ଡାକୁଛନ୍ତି । ସାରା ଦିନ ପାପ କରୁଛନ୍ତି, ଆଉ ସେଇ ପାପ ଲୁଚେଇବାକୁ ଭକ୍ତ ସାଜିଛନ୍ତି କିମ୍ବା ଚିତା କାଟୁଛନ୍ତି । ମାଳା ଗଡ଼େଇ ମିଛଟାରେ ଜପିବା ବାହାନାରେ ଓଠ ହଲଉଛନ୍ତି, ମୁହଁରେ ରାମନାମ ଅନ୍ତରେ ଛୁରି ଏମିତ ଏସବୁ କଳିକାଳିଆ ବକ-ବୈଷ୍ଣବ । ଦାନ ଦେଉଛନ୍ତି ନାଆଁ ପାଇଁ । ପ୍ରତିଦିନ ପାପ ଅର୍ଜନ କରିବେ । ଦୀନ ଦରିଦ୍ରଙ୍କର ରକ୍ତ ଶୋଷଣ କରିବେ । ସେଇ ପାପ ପଇସାରେ ପ୍ରତିଷ୍ଠା ନିମନ୍ତେ ଦାନ କରିବେ । ସେମାନେ ଯାହା ଚାହାନ୍ତି ମୁଁ ସେମାନଙ୍କୁ ତାହା ପ୍ରଦାନ କରେ । ସେମାନେ ମୋର ଦର୍ଶନରେ ସୁଖ ପାଇବେ ନାହିଁ, ଅର୍ଥ ଆଉ କାମରେ ଶ୍ରେଷ୍ଠତମ ସୁଖ ମିଳିବ ସେମାନଙ୍କୁ । ମୁଁ ତ, ଭାବଗ୍ରାହୀ । ସେମାନେ ଅନ୍ୟମାନଙ୍କୁ ଭ୍ରମରେ ପକେଇ ପାରନ୍ତି । ମାତ୍ର ମୁଁ ତ ଅନ୍ତର୍ଯ୍ୟାମୀ, ପ୍ରତ୍ୟେକ ଘଟର କଥା ଜାଣୁଛି । ମୋ ପାଖରେ କାହାରି ହେଲେ ମନୋଭାବ ଗୋପନ ରହିବ ନାହିଁ । ତେଣୁ ମୁଁ ଭାବାନୁସାରେ ଫଳ ଦେଇଥାଏ । ତୁମେ ଯଦି ମୋର ଦର୍ଶନ ଖୋଜୁଥିବା କୌଣସି ଭକ୍ତ କଥା ଜାଣିଛ, ତା'ହେଲେ କହ । ମୁଁ ବର୍ତ୍ତମାନ ଯାଇ ତାକୁ ଦର୍ଶନ ଦେବି ।"

ଏହା ଶୁଣି ନାରଦ ବିସ୍ମିତ ହେଲେ । ନିଜ କଥା ଉପରେ ଗୁରୁତ୍ୱ ଦେଇ କହିଲେ, "ପ୍ରଭୁ, ଆପଣ କିପରି ବିଚିତ୍ର କଥା କହୁଛନ୍ତି ? ଜଣେ କାହିଁକି ଆପଣଙ୍କ ଦର୍ଶନ ନିମନ୍ତେ ଉତ୍କଣ୍ଠାରେ ବ୍ୟାକୁଳ ମୁଁ ସହସ୍ର ସହସ୍ର ଭକ୍ତ ଦେଖିଛି । ଅନେକଙ୍କର ତ ଆହାର ହିଁ ସତ୍ସଙ୍ଗ । ସତ୍ସଙ୍ଗ ନିମନ୍ତେ ଦୂରଦୂରାନ୍ତରକୁ ଯାଆନ୍ତି । ନିତ୍ୟ ଗଙ୍ଗାସ୍ନାନ କରନ୍ତି । ଅନେକେ ଅନ୍ନତ୍ୟାଗ କରି ଫଳମୂଳ ଖାଆନ୍ତି । ଅନେକେ କହିବା ଛାଡ଼ିଦେଇ ମୌନୀ ହୋଇଛନ୍ତି । ଅନେକେ ସତ୍ସଙ୍ଗ ନିମନ୍ତେ ଭକ୍ତମାନଙ୍କୁ ଦୂରଦୂରାନ୍ତରୁ ନିମନ୍ତ୍ରିତ କରି ଆଣନ୍ତି । ଆପଣ ପ୍ରକଟିତ ହେଲେ ଦେଖିବେ କେତେ ଭିଡ଼ ହେବ । କେତେ ଭକ୍ତ ଆନନ୍ଦରେ ତନ୍ମୟ ହୋଇଯିବେ !"

ଭଗବାନ କହିଲେ, "ଅତ୍ୟନ୍ତ ଉତ୍ତମ କଥା, ମୁଁ ତ ଭକ୍ତମାନଙ୍କୁ ଦର୍ଶନ ଦେବା ନିମନ୍ତେ ଲାଳାୟିତ ହୋଇ ରହିଥାଏ । ଚାଲ କେହି ଭକ୍ତ ମିଳିଲେ ମୁଁ ମଧ୍ୟ ତାର ଦର୍ଶନ ଲାଭକରି କୃତାର୍ଥ ହୋଇଯିବି ।"

Digitized by srujanika@gmail.com

ଏହା ଶୁଣି ପରୋପକାରୀ ନାରଦଙ୍କର ଆନନ୍ଦର ସୀମା ରହିଲା ନାହିଁ । ତାଙ୍କର ତ ବ୍ରତ ହେଲା ସେପରି କି ହେଉ ଜୀବମାନଙ୍କୁ ଭଗବାନଙ୍କର ନିକଟବର୍ତ୍ତୀ କରିବେ, ପଥଭ୍ରଷ୍ଟ ବ୍ୟକ୍ତିଙ୍କୁ ଉଚିତ ମାର୍ଗ ଦେଖାଇ ଦେବେ । ଭଗବାନଙ୍କର ଦୟାଳୁପଣ ସ୍ମରଣକରି ତାଙ୍କର ହୃଦୟସ୍ଥ ଆନନ୍ଦ ଅଧୀର ହୋଇ ଉଠିଲା । ଭାବିଲେ—ସେଠାକୁ ଯିବି, ସେଠାକାର ଭକ୍ତମାନଙ୍କୁ ଏ ସୁଖଦ ସମାଚାର ଶୁଣାଇବି । ସେମାନଙ୍କୁ ଭଗବାନଙ୍କର ଦର୍ଶନ କରାଇବି । ଏଭଳି ଅନେକ କଥା ଭାବି ଭାବି ସେ ଭଗବାନଙ୍କ ପଛେ ପଛେ ଚାଲିଲେ । ଆଜି ଭଗବାନ ଗରୁଡ଼ଙ୍କୁ ସାଙ୍ଗରେ ନନେଇ ସ୍ୱୟଂ ଚତୁର୍ଭୁଜ ରୂପରେ ନାରଦଙ୍କ ସାଙ୍ଗରେ ଚାଲିଥିଲେ ।

ଭଗବାନ ନାରଦଙ୍କୁ ପଚାରିଲେ, "ହେ ନାରଦ, ପ୍ରଥମେ କୁଆଡ଼େ ଯିବା ?"

ନାରଦ କିଛି ସମୟ ଚିନ୍ତା କରି କହିଲେ, "ଭଗବାନ୍, ପ୍ରଥମେ ପ୍ରୟାଗତୀର୍ଥକୁ ଯିବା । ତାହା ତୀର୍ଥମାନଙ୍କ ମଧ୍ୟରେ ରାଜା । ପୃଥିବୀର ଜଘନ ସ୍ଥାନ । ଭାରତର କେନ୍ଦ୍ର । ସଭ୍ୟତାର ଉଦ୍‌ଗମ ସ୍ଥଳ । ସେଠାରେ କଳ୍ପକଳ୍ପାନ୍ତରେ ବି ନାଶହୀନ ଅକ୍ଷୟ କଳ୍ପବଟ ରହିଛି । ପରମ ପବିତ୍ର ବ୍ରହ୍ମାବର୍ତ୍ତ ପ୍ରଦେଶ । ଗଙ୍ଗା ଯମୁନାର ସଙ୍ଗମ ସ୍ଥଳ । ସାରା ପ୍ରଦେଶର ପ୍ରଧାନ ନ୍ୟାୟାଳୟ ସେଠାରେ ରହିଛି । ସମସ୍ତ ଦେଶମାନଙ୍କରୁ ଯାତ୍ରୀ ସେଠାରେ ସଙ୍ଗମ ସ୍ନାନ କରିବାକୁ ଉପସ୍ଥିତ ହୁଅନ୍ତି । ସେଠାରେ ନିରନ୍ତର ଘରେ ଘରେ କୀର୍ତ୍ତନ ଚାଲିଥାଏ । ସଙ୍ଗମରେ ସବୁବେଳେ ଭିଡ ଲାଗି ରହିଥାଏ । ସେଠାରେ କେଉଁପରି କେହି ଅଭକ୍ତ ପହଞ୍ଚିବ ? ସେଠାକୁ ଚାଲନ୍ତୁ । ସେଠାରେ ଲକ୍ଷ ଭକ୍ତଙ୍କର ଦର୍ଶନ ହୋଇଯିବ । ସେଠାରୁ ଏ ସୁଖଦ ସମ୍ବାଦ ସବୁଆଡ଼େ ବ୍ୟାପିଯିବ । ପୁଣି କାଶୀ ଯିବା । ଏପରି ଭାବରେ ପୃଥିବୀର ମୁଖ୍ୟ ତୀର୍ଥସ୍ଥାନ ମାନଙ୍କରେ ପହଞ୍ଚି ସେଠାକାର ଭକ୍ତମାନଙ୍କର ଜୀବନ ସାର୍ଥକ କରିବା ।

ଭଗବାନ କହିଲେ—"ଚାଲ ! ଏବେ ତ ହେ ନାରଦ, ମୁଁ ତୁମ ଅଧୀନରେ ରହିଛି । ଯେଉଁଠିକି ଇଚ୍ଛା ସେଠାକୁ ନେଇଚାଲ । ଏହା କହି ଭଗବାନ ନାରଦଙ୍କ ସାଙ୍ଗରେ ଚାଲିଲେ ଏବଂ ତୀର୍ଥରାଜ ପ୍ରୟାଗରେ ପହଞ୍ଚିଲେ । ଯେଉଁଠାରେ ଗଙ୍ଗା ଯମୁନା ପରସ୍ପର କୋଳାକୋଳି ହୋଇ ପ୍ରେମ କରୁଥିଲେ, ସେଠାରେ ମାଧବ ଦ୍ୱାଦଶ ରୂପରେ ପ୍ରୟାଗ ମଣ୍ଡଳର ଚତୁର୍ଦ୍ଦିଗରେ ନିବାସ କରୁଛନ୍ତି । ସେହି ସମସ୍ତ ତୀର୍ଥର ସମ୍ରାଟ ପ୍ରୟାଗ କ୍ଷେତ୍ରରେ ନାରଦଙ୍କ ସାଙ୍ଗରେ ଭଗବାନ ପଦାର୍ପଣ କଲେ । ସଙ୍ଗମର ଅର୍ଦ୍ଧକୋଶ ଦୂରରେ ପୂର୍ବ ଦିଗରେ ଯେଉଁଠାରେ ଭଗବାନ ଶଙ୍ଖମାଧବ ରୂପରେ ବିରାଜିତ ହୋଇଛନ୍ତି, ସେଠାରେ ପହଞ୍ଚିଲେ । ସଘନ ଆମ୍ବତୋଟା ଏବଂ ମନ୍ଦିର ସମୀପର ବିରାଟ ବଟବୃକ୍ଷ ଦେଖି

Digitized by srujanika@gmail.com

ସେଠାରେ ଭଗବାନ ରହି ନାରଦଙ୍କୁ କହିଲେ, "ନାରଦ, ଦେଖ, ସହଜରେ ଯେଉଁ ବସ୍ତୁ ପ୍ରାପ୍ତ ହୋଇଯାଏ, ଲୋକେ ତାର ଆଦର କରନ୍ତି ନାହିଁ। ଯେଉଁ ବସ୍ତୁ କଷ୍ଟ ପରିଶ୍ରମ ଦ୍ୱାରା ମିଳିଥାଏ ତା'ର ମହତ୍ତ୍ୱ ଅଧିକ ହୁଏ। ଆମେ ତ ବୈକୁଣ୍ଠରୁ ଏତେ ଦୂର ପର୍ଯ୍ୟନ୍ତ ଆସିଛୁ। ଏଣିକି ସେମାନଙ୍କୁ ତାଙ୍କ ଘରେ ପହଞ୍ଚି ଦର୍ଶନ ଦେବା ଉଚିତ ହେବନାହିଁ। ଯେଉଁମାନଙ୍କ ମଧ୍ୟରେ ଦର୍ଶନ କରିବାର ଇଚ୍ଛା ଅଛି ସେମାନଙ୍କୁ ଡାକି ଆଣିବ। ଏଠାରେ ତ କେତେ ଭକ୍ତମାନେ ଉପସ୍ଥିତ ହେଉଛନ୍ତି। ଆମେମାନେ ମଧ୍ୟ ସଂଗମ ନିକଟରେ ଅଛୁଁ। ତୁମେ ଯାଇ ଭକ୍ତମାନଙ୍କୁ ଡାକି ଆଣ।"

ନାରଦ କହିଲେ, "ପ୍ରଭୁ, ଠିକ୍ ଅଛି। ଅତି ଉତ୍ତମ। ମୁଁ ବର୍ତ୍ତମାନ ଯାଇ ଡାକି ଆଣିବି। ଆପଣ ଏଇ ବଟବୃକ୍ଷ ତଳେ ବିରାଜମାନ ହୁଅନ୍ତୁ। ଅନ୍ତର୍ଦ୍ଧାନ ହୋଇ ଯିବେ ନାହିଁ।"

ଭଗବାନ କହିଲେ, "ନା' ନା' ନାରଦ, ଅନ୍ତର୍ଦ୍ଧାନ କାହିଁକି ହେବି ? ଭକ୍ତମାନେ ମୋତେ ଦର୍ଶନ କରିବାକୁ ଯେତେ ଲାଳାୟିତ ହୋଇଥାନ୍ତି, ମୁଁ ସେମାନଙ୍କୁ ଦେଖିବାକୁ ତା'ଠାରୁ ଶତଗୁଣ ଅଧିକ ଲାଳାୟିତ ହୋଇଥାଏ। ତୁମେ ଯାଅ ଏବଂ ଯେ ମୋର ଦର୍ଶନ କରିବାକୁ ଆଗ୍ରହୀ, କେବଳ ମାତ୍ର ତାଙ୍କୁ ହିଁ ନେଇ ଆସ।"

ଏହା ଶୁଣି ନାରଦ ଚଞ୍ଚଳ ବୀଣା ଉଠାଇଲେ। ଗ୍ରୀଷ୍ମକାଳ, ବୈଶାଖ ମାସ। ତ୍ରିବେଣୀରେ ଅନେକ ଭିଡ଼ ଥିଲା। ବୀଣା ବଜାଇ ନାରଦ ସମସ୍ତଙ୍କୁ କହିଲେ, "ଯେଉଁ-ମାନେ ଭଗବାନଙ୍କୁ ଦେଖିବାକୁ ଇଚ୍ଛାକରନ୍ତି, ସେମାନେ ଶଙ୍ଖମାଧବଙ୍କ ମନ୍ଦିର ନିକଟକୁ ଯାଇ ଦର୍ଶନ କରନ୍ତୁ।"

ଏହାଶୁଣି କେତେକ ହସିଲେ, କେତେଜଣ ମୁରୁକି ହସିଲେ, ଆଉ କେତେଜଣ କହିଲେ, 'ଭଗବାନ ତ ସର୍ବତ୍ର ବିରାଜିତ।' ଆଉ କେତେ ଜଣ କହିଲେ, 'ବାଃ, ଭଗବାନ କ'ଣ ଏମିତି ଆସନ୍ତି ?'

ନାରଦ ଦୃଢ଼ ସ୍ୱରରେ କହିଲେ, "ଆରେ, ତୁମେମାନେ ନିତାନ୍ତ ଅଶ୍ରଦ୍ଧାଳୁ। ପ୍ରତ୍ୟକ୍ଷ ପ୍ରମାଣ କ'ଣ ଦରକାର ? ଶଙ୍ଖମାଧବ ତ ଏଇ ପାଖରେ, ଯାଇ ଦେଖି ଆସୁନ ? ଯେଉଁ ଈଶ୍ୱରଙ୍କ ନିମନ୍ତେ ତୁମେମାନେ ଏତେ ଭଜନ, କୀର୍ତ୍ତନ, ଗଙ୍ଗାସ୍ନାନ କରୁଛ, ସେ ସାକ୍ଷାତ୍ ବିରାଜିତ ହୋଇଛନ୍ତି।" ଏପରି ଭାବରେ ନାରଦ ଏକ ପ୍ରଭାବଶାଳୀ ବକ୍ତୃତା ଦେଲେ। ସମସ୍ତେ ତାହା ଶୁଣି ହସିଲେ ସିନା, କେହି ହେଲେ ତାଙ୍କ କଥାକୁ କାନ ଦେଲେ ନାହିଁ। ସେ ଜଣ ଜଣକୁ ପଚାରିଲେ। ସେତେବେଳେ ଧଳାଲୁଗା ପିନ୍ଧି କେତେ ଜଣ

Digitized by srujanika@gmail.com

ଗାଧୋଉଥିଲେ । ସେ କହିଲେ, "ତମେମାନେ କଆଁ ଯିବାକୁ ଚାହୁଁନାହଁ ? ଏତେ ଶ୍ରଦ୍ଧାରେ ଗଙ୍ଗାସ୍ନାନ କରୁଛ !" ସେମାନେ ଉତ୍ତରଦେଲେ, "ବାବା, ଆମେ ତ ସ୍ୱାସ୍ଥ୍ୟ ନିମନ୍ତେ ଗାଧୋଇବାକୁ ଆସୁଛୁଁ ।" କିଏ କହିଲା, "ମୋତେ ଅଫିସ୍ ଯିବାକୁ ଏଠାରୁ ଯାଉ ଯାଉ ଡେରି ହେବ । ଠିକ୍ ସମୟରେ ନ ପହଞ୍ଚିଲେ ଚାକିରି ଯିବ ।" ଆଉ କିଏ କହିଲା, "ମୁଁ କଚେରୀକୁ ଯିବ ।" ସ୍ତ୍ରୀମାନେ କହିଲେ, "ଆମର ରାନ୍ଧିବା କାମରେ ବିଳମ୍ବ ହେବ ।" ଏକଥାର ସାରାଂଶ ହେଲା, କେହିହେଲେ ନାରଦଙ୍କ ସାଙ୍ଗରେ ଯିବାକୁ ବାହାରିଲେ ସାହିଁ । ନାରଦ ଭାବିଲେ, "ଗୁଡ଼, ଏମାନେ ତ ପ୍ରତିଦିନ ଆସୁଛନ୍ତି । ଏମାନଙ୍କର ଧର୍ମବନ୍ଧା ସମସ୍ତ । ସହର ଭିତରକୁ ଗଲେ ଭକ୍ତ ମିଳିଯିବେ । ତାପରେ ନାରଦ ନଗର ମଧ୍ୟରେ ଥିବା ମନ୍ଦିର ମାନଙ୍କୁ ଗଲେ । ସତ୍ସଙ୍ଗ ଚାଲୁଥିବା ସ୍ଥାନମାନଙ୍କୁ ଗଲେ । ଯେଉଁ ସବୁ ସ୍ଥାନମାନଙ୍କରେ ସେ ଭକ୍ତମାନଙ୍କର ଆଶା କରୁଥିଲେ, ସେସବୁ ସ୍ଥାନକୁ ଗଲେ । ମାତ୍ର କେଉଁଠାରେ ଲୋକଙ୍କୁ ଚିନ୍ତାମଗ୍ନ ତ କେଉଁଠାରେ ଲୋକଙ୍କୁ ବ୍ୟସ୍ତହୋଇ ରହିଥିବା ଦେଖିଲେ !" ପ୍ରତ୍ୟେକେ କୌଣସି ନା କୌଣସି କାମରେ ଲାଗି ପଡ଼ିଛନ୍ତି । କିଏ ତାଙ୍କ କଥା ଖାଲି ଶୁଣି ଗଲା, କିଏ ଶୁଣିଦେଇ ହସିଦେଲା, କିଏ ସମୟ ନାହିଁ କହି ଦୁଃଖ ପ୍ରକାଶ କଲା । କିଏ ଆଉ କୌଣସି କାର୍ଯ୍ୟର ବାହାନା ଦେଖେଇ ତାଙ୍କ ସାଙ୍ଗରେ ଯିବାକୁ ମଙ୍ଗିଲାନାହିଁ । ଏହିପରି ଭାବରେ ଦିନ ଦ'ପହର ହେଲା । ଠିକ୍ ଦୁଇପ୍ରହର ବେଳେ କିଏ କାହିଁକି ବାହାରିବ ? ନିଜ ଘର ଭିତରେ ତଳୁ ଉପରମହଲାକୁ ଯିବା ମୁସ୍କିଲ । ନାରଦ ଅତ୍ୟନ୍ତ ହତାଶ ହେଲେ । ଦ'ପହର ବିତିଲେ । କାର୍ଯ୍ୟାଳୟ ମାନଙ୍କରୁ କାମସାରି ଲୋକେ ଫେରୁଥିଲେ । ନାରଦ ଯାହାକୁ ବି ଚିତା ଚନ୍ଦନ କରିଥିବା ଦେଖିଲେ ବା ଧର୍ମାତ୍ମା ବୋଲି ମନେକଲେ ତାକୁ କହିଲେ । କିନ୍ତୁ ସେ ଉତ୍ତର ଦେଲା, "ବାବା, ଆମ ଉପରେ ଦୟାକର । ସାରା ଦିନର ଖଟଣିରେ କ୍ଳାନ୍ତ ହୋଇ ଫେରୁଛୁ । ତମେ ଯା' ଭଗବାନଙ୍କର ଦର୍ଶନ କରି ପକାଅ ।" ତା'ପରେ ନାରଦଙ୍କୁ ଭାରି ଦୁଃଖ ହେଲା । ନିରାଶ ହେଲେ । ଲଜ୍ଜାବୋଧ ହେଲା ମଧ୍ୟ । କେମିତି ଯିବେ, କ'ଣ କହିବେ ଭଗବାନଙ୍କୁ ! ଭାବିଲେ ସେପଟେ ପ୍ରତିଷ୍ଠାନପୁରରେ ଭାରି କୀର୍ତ୍ତନ ହୁଏ । ସେଠାରେ ଭଗବାନଙ୍କ ନାମରେ ଘରଦ୍ୱାର, ବାଡ଼ି ବୃତ୍ତି ଛାଡ଼ି ଦଉଡ଼ି ଯିବାକୁ ଲୋକ ବାହାରିବେ । ସେଠାରୁ ପାଖରେ ଶଙ୍ଖମାଧବ ଅଛନ୍ତି ବି । ଏହା ଭାବି ନାରଦ ପ୍ରତିଷ୍ଠାନପୁର(ଝୁସୀ)ରେ ପହଞ୍ଚିଲେ । ଯାହାକୁ ଦେଖିଲେ ତାକୁ କହିଲେ— "ଦେଖ ଭାଇ, ମୁଁ ନାରଦ । ଭଗବାନ ଦର୍ଶନ ଦେବେ ବୋଲି ଶଙ୍ଖମାଧବ ପାଖରେ ଉପସ୍ଥିତ ହୋଇଛନ୍ତି । ଚାଲ ଦର୍ଶନକରି ଆସିବା ।" ପିଲାମାନେ କହିଲେ, "ଆମେ ପଢିବାକୁ ଯିବୁ ।" କିଏ କହିଲା, "ମୋର ଅମୁକ କାମ ଅଛି । ଆଉ କିଏ କହିଲା, "ମୁଁ କୀର୍ତ୍ତନ ଓ ଧନ୍ଦାଙ୍କୁ ଯିବ ।' କେତେ ଜଣ ମାତାଙ୍କୁ ଦେଖି ନାରଦ କହିଲେ । ସେମାନେ ମଧ୍ୟ କହିଲେ, "ମହାରାଜ, କେତେ କଣ କାମ ଅଛି । ଆଉ ଏତେ ଦୂର ଚାଲି ଯାଇ ପାରିବୁ ନାହିଁ । ତା'ପରେ ଏଠାକୁ ରାତିରେ ଫେରିବୁ କେମିତି ? ଅଉ ସେଠାରେ ଭଗବାନ ଅଛନ୍ତି କି ନାହିଁ କଣ ଠିକଣା ଅଛି ?"

Digitized by srujanika@gmail.com

ଏହା ଶୁଣି ନାରଦ କହିଲେ, "ମୁଁ ନାରଦ, ମୁଁ କଣ ମିଛ କହିବି ?"

ମାତାମାନେ କହିଲେ, "ମହାରାଜ, ଏଠାକୁ ସବୁ ଶୁକଦେବ ନାରଦ ଆଉ ଦତ୍ତାତ୍ରେୟ ଆସନ୍ତି । ଏମାନଙ୍କଠାରୁ କେହି କମ ଲୋକ ଏଠାକୁ ଆସନ୍ତି ନାହିଁ ।" ସେମାନେ କହିଲେ, "ଏଇନେ ଦାବା, ଭଲ ଆଉ ଭେଲର ପରୀକ୍ଷା କଏ କରିବ ? ସବୁ ସତ୍ୟ । ହରି ବ୍ୟାପକ, ସର୍ବତ୍ର ସମାନ । ପ୍ରେମେ ପ୍ରକଟ ହୁଅନ୍ତି ଭଗବାନ । ସବୁଠାରେ ଭଗବାନ ଅଛନ୍ତି । ମନ ଭଲ ଥିଲେ ଗୋଡ଼ିଆରେ ଗଙ୍ଗା ।"

ନାରଦ ଏତିକି ଶୁଣି ମୁହଁକରି ଫେରି ଆସିଲେ ସଙ୍ଗମକୁ । ସେଠାରେ କେତେ ଜଣ ଯାତ୍ରୀ ଥିଲେ । କେତେ ଜଣ ସନ୍ଧ୍ୟା ଭ୍ରମଣରେ ଅସି ପହଞ୍ଚିଥିଲେ । କେତେ ଜଣ ନିଷାଦ କୈବର୍ତ୍ତ ମଧ୍ୟ ଥିଲେ । ନାରଦ ମନେମନେ ବିରକ୍ତ ହେଉଥିଲେ । ସେ ଏକାକୀ ଭଗବାନଙ୍କ ପାଖକୁ ଫେରିଯିବାକୁ ଚାହୁଁ ନଥିଲେ । ସେ ସେଠାରେ ପୁଣି ଆଧ୍ୟାତ୍ମିକତା ଉପରେ ଏକ ପ୍ରଭାବଶାଳୀ ପ୍ରବଚନ ଦେଲେ । ଶେଷରେ କହିଲେ, "ମୁଁ ତୁମଠାରୁ କୌଣସି କଥା ମାଗୁନାହିଁ । କୌଣସି ପରିଶ୍ରମ କରାଉନାହିଁ । ଆଉ ଦୂର ସ୍ଥାନକୁ ମଧ୍ୟ କହୁନାହିଁ । ମୋ କଥା ଉପରେ ବିଶ୍ୱାସ କରି ଚାଲ ଏବଂ ଭଗବାନଙ୍କର ଦର୍ଶନ କରି ମନୁଷ୍ୟ ଜନ୍ମ ସାର୍ଥକ କର । ସେଠାରେ ଭଗବାନ ନଥିଲେ ଜଘନ୍ୟତମ ଚୋରକୁ ଯେଉଁଭଳି ଦଣ୍ଡ ଦିଆଯାଏ ମୋତେ ଦେବ । ସେଠାରେ ଦଶ ପାଞ୍ଚ ଜଣ ଉତ୍ସାହୀ ଯୁବକ ଥିଲେ । କେତେ ଜଣ ଯାତ୍ରୀ ଥିଲେ । ସମସ୍ତେ କହିଲେ, "ଠିକ୍ କଥା, ଚାଲ ଭଗବାନ ଥିଲେ ଭଲ ନଥିଲେ ଭଲ । ସାନ୍ଧ୍ୟଭ୍ରମଣ ତ ହୋଇଯିବ । କୁତୂହଳୀ ହୋଇ ସେମାନଙ୍କ ସାଙ୍ଗରେ କେତେକ କୈବର୍ତ୍ତ ମଧ୍ୟ ଗଲେ । ଏପରିଭାବରେ ତାଙ୍କ ସାଙ୍ଗରେ ପ୍ରାୟ ଶହେ ଦୁଇଶହ ଲୋକ ବାହାରି ପଡ଼ିଲେ । କେତେ ଜଣ ସ୍ତ୍ରୀ ମଧ୍ୟ ଯିବାକୁ ବାହାରିଥିଲେ । ମାତ୍ର ଫେରିବାକୁ ବିଳମ୍ବ ହେବ, ସେଇ ଭୟରେ ଗଲେନାହିଁ । ରାତିରେ କେମିତି ଫେରିବେ ! ଘରଲୋକେ କ'ଣ କହିବେ ? ସ୍ତ୍ରୀ ଜନ୍ମ ତ ଭଗବାନ ବୃଥାରେ ଦେଇଛନ୍ତି । ସାରା ଜୀବନ ବନ୍ଧନୀ ହୋଇ ପରମୁଖାପେକ୍ଷୀ ହୋଇ ବିତେଇବାକୁ ପଡ଼ିବ ।" ଏପରି କହି ବିଧାତାକୁ ନିନ୍ଦା କରି କରି ସେମାନେ ଚାଲିଗଲେ ।

ନାରଦ ଅନେକ ଉତ୍ସାହ ସହକାରେ ଆଗେ ଆଗେ ଚାଲିଥିଲେ । ସେ ଏତେଗୁଡ଼ିଏ ଭକ୍ତ ମିଳିଗଲେ ବୋଲି ଖୁବ ସନ୍ତୁଷ୍ଟ ଥିଲେ । ମଝିରେ ଭଗବାନ ଜଣ ମାୟା କଲେ ଯେ ଲୋକେ ରାସ୍ତାରେ ପଇସା ଗଦାଏ ଦେଖିଲେ । କେତେ ଜଣ କହିଲେ—ଆରେ ବାନ୍ଧ ନେଇଥିବୁ । ଯେତେବେଳେ କେତେଜଣ ସେପଟକୁ ଧାଇଁଲେ ନାରଦ ବକ୍ତୃତା ଦେବା ଆରମ୍ଭ କରିଦେଲେ । "ଛି, ଛି, କେତେ ଦୁଃଖର କଥା । ମନୁଷ୍ୟ ଜନମ ପାଇଁ ଏ ତମ୍ବା ପଇସାର ଲୋଭରେ ଭଗବାନଙ୍କ ଦର୍ଶନରୁ ବଞ୍ଚିତ ହେଉଛ ? ଭଗବାନଙ୍କର ଦର୍ଶନ ଲାଭକଲେ ସବୁ

Digitized by srujanika@gmail.com

ପାଇଯିବ ।' ମାତ୍ର ନାରଦଙ୍କ କଥା କିଏ ଶୁଣେ ? କେତେ ଜଣ ପଇସା ବନ୍ଧାବନ୍ଧି କରି ଫେରି-ଆସିଲେ । ଆଉ କେତେ ଜଣ ତାଙ୍କ କଥା ଶୁଣି ତାଙ୍କ ପଛରେ ଗଲେ । କିଛି ଦୂର ଗଲାପରେ ରୂପା ଟଙ୍କା ଗଦାଏ ଦେଖାଗଲା ରାସ୍ତାକଡ଼ରେ । ଅନେକେ ସେଠାରେ ଅଟକି ଗଲେ । ବାକି ଯେଉଁମାନେ ରହିଲେ ସେମାନେ ଆଗକୁ ବଢ଼ିଲେ । ଆଉ ଆଗକୁ ଯିବାପରେ ଗଦାଏ ସ୍ୱର୍ଣ୍ଣମୁଦ୍ରା ଦେଖାଗଲା । କେତେଜଣ ସେଠାରେ ରହିଗଲେ । ଆଉ ଯେଉଁମାନେ ରହିଲେ ସେମାନଙ୍କ ଆଗରେ ମୋତି ମଣିମାଣିକ୍ୟ ଦେଖାଗଲା । ନାରଦ ମନା କରୁଥିବା ସତ୍ତ୍ୱେ ବାକି ସଭିଏଁ ସେଠାରେ ରହିଗଲେ । କେବଳ ରହିଲେ ପାଞ୍ଚ ଜଣ ସାହସୀ ଯୁବକ, ଯେଉଁମାନେ ଏ ସବୁର ଲୋଭ ନ କରି ନାରଦଙ୍କ ସାଙ୍ଗେ ସାଙ୍ଗେ ଚାଲିଲେ ।

କିଛି ଦୂର ଗଲାପରେ ଆଗରେ ଭଗବାନଙ୍କର ଦ୍ୱାରା ମାୟାନିର୍ମିତ ପାଞ୍ଚଜଣ ଅତ୍ୟନ୍ତ ସୁନ୍ଦରୀ ଯୁବତୀ ସାମନାରେ ଠିଆ ହୋଇଗଲେ ଓ ସେମାନେ ସମସ୍ତେ କାନ୍ଦୁଥିଲେ । ସେହି ପାଞ୍ଚଜଣ ସାହସୀ ଯୁବକ ସେମାନଙ୍କ ପାଖକୁ ଯାଇ ପଚାରିଲେ—"ଦେବୀଗଣ, ତୁମେମାନେ କାହିଁକି କାନ୍ଦୁଛ ?"

ସେମାନେ କାନ୍ଦି କାନ୍ଦି କହିଲେ, "ଆମେମାନେ ସମସ୍ତେ ରାଜପରିବାରର କୁଳୀନା କୁମାରୀ । ଆମ ଦେଶରେ ଉପଦ୍ରବ ହେତୁ ଏଠାକୁ ପଳେଇ ଆସିଛୁଁ । ଆମେ ଚାହୁଁଛୁ କେହି ଆମର ଉଦ୍ଧାର କରୁ । ଆମ ସହିତ କେହି ବିବାହ କରୁ । ଆମ ପାଖରେ ଯଥେଷ୍ଟ ଧନ ଅଛି, ବହୁ ଅମୂଲ୍ୟ ଭୂଷଣ ମଧ୍ୟ ଅଛି । ସୁନ୍ଦରୀ ଯୁବତୀ ସ୍ତ୍ରୀ ଏବଂ ଅଖଣ୍ଡ ସମ୍ପତ୍ତିର ଲୋଭ ସମ୍ବରଣ କରିପାରିଲେ ନାହିଁ ସେହି ଯୁବକମାନେ । ସେତେବେଳେ ନାରଦ ଅତ୍ୟନ୍ତ କ୍ରୋଧକଲେ ଏବଂ ବିରକ୍ତ ହୋଇ କହିଲେ, "ତୁମମାନଙ୍କର ବୁଦ୍ଧି ଭ୍ରଷ୍ଟ ହୋଇଛି । କିଏ ଦେଖ ଏମାନେ ! ନା ସ୍ତ୍ରୀ ନା ଏମାନଙ୍କ ପାଖରେ ଧନ ଅଛି । ଏସବୁ ଭଗବାନଙ୍କର ମାୟା । ତୁମମାନଙ୍କୁ ଭ୍ରମରେ ପକାଇ ତମର ପରୀକ୍ଷା କରିବା ନିମନ୍ତେ ଏସବୁ ମାୟା ପ୍ରଦର୍ଶନ କରିଛନ୍ତି । ଆଉ ତୁମେ ଏ ଡାହାଣୀମାନଙ୍କର ମୋହଗ୍ରସ୍ତ ହୁଅ ନାହିଁ । କୂଳରେ ଲାଗିଲା ପରେ ନାଆ ବୁଡ଼େଇ ଦିଅ ନାହିଁ । ଭଗବାନଙ୍କର ଦର୍ଶନ ମାତ୍ରକେ ଅଷ୍ଟ ସିଦ୍ଧି ଓ ନବନିଧି ଆପେ ପ୍ରାପ୍ତ ହେବ । ଏମାନେ ସମସ୍ତେ ତୁମର ପରମାର୍ଥର ବିଘ୍ନକାରିଣୀ ଅଟନ୍ତି ।"

ସେମାନଙ୍କ ମଧ୍ୟରୁ ଜଣେ ରାଗିଯାଇ କହିଲା—"ତୁମେ ସାଧୁ ନା ରାକ୍ଷସ ! ଦୁଃଖୀର ସେବା କରିବା ସାଧୁମାନଙ୍କର କର୍ତ୍ତବ୍ୟ । ମନେ ହେଉଛି ତୁମେ ଜଣେ ଧୂର୍ତ୍ତ ।"

ନାରଦ କହିଲେ, "ଦେଖ, ଏଇନେ ଏକଥାର ପରୀକ୍ଷା ହୋଇଯିବ । ତୁମେମାନେ ଏମାନଙ୍କୁ ଛାଡ଼ ଆଉ ମୋ ସାଙ୍ଗରେ ଚାଲ । ତମେ ତମର ଛାତିରେ ହାତ ଦେଇ କହ, ତୁମେମାନେ ଏସବୁ ପରୋପକାର କରିବାକୁ କରୁଛ, ନା ଲୋଭବଶତଃ କରୁଛ ! ତୁମେମାନେ ନିହାତି ପାଖକୁ ଆସିଗଲଣି—ଏମାନଙ୍କୁ ନେବାକୁ ଚାହୁଁଛ ଯଦି ଫେରିବା ବାଟରେ ନେବା"

Digitized by srujanika@gmail.com

ଏହାଶୁଣି ସେମାନଙ୍କ ମଧ୍ୟରୁ ଜଣେ କହିଲା : "ହଁ ଠିକ୍ କଥା, ଏମାନେ ଏଠାରେ ବସି ଥାଆନ୍ତୁ । ଆମେ ଦର୍ଶନ କରି ଆସୁଁ ।"

ଏହାଶୁଣି ସେହି କୁମାରୀମାନେ କହିଲେ—"ଏଇନେ ସୂର୍ଯ୍ୟାସ୍ତ ହୋଇଯିବ । ଆମେ ଏଇ ଅରଣ୍ୟ ମଧ୍ୟରେ ଅଧିକ ସମୟ ରହିପାରିବୁ ନାହିଁ । ତୁମେମାନେ ଚାଲିଗଲେ ଆମେ ଆମ ନଗରକୁ ଯାଇ ବାଧ୍ୟ ହୋଇ ଅନ୍ୟର ଶରଣ ନେବୁଁ ।"

ଏହାଶୁଣି ସେମାନଙ୍କ ମଧ୍ୟରୁ ଜଣେ କହିଲା, "ଦୁଇଜଣ ଏମାନଙ୍କ ପାଖରେ ରହିବା ଠିକ୍ ହେବ । ଆଉ ତିନି ଜଣ ଯାଇ ଏ ବାବାଜୀ କଥା ପରୀକ୍ଷା କରି ଆସିବା ଉଚିତ ହେବ ।"

ସୂତ କହୁଛନ୍ତି—"ହେ ମୁନିଗଣ, ଧନ ଆଉ ସ୍ତ୍ରୀ ଏଭଳି ବସ୍ତୁ ଯେ କେହିହେଲେ ଏକଥାରେ ଅନ୍ୟକୁ ବିଶ୍ୱାସ କରନ୍ତି ନାହିଁ । ଅତି ଆପଣାର ମଣିଷ ଉପରେ ମଧ୍ୟ ଅବିଶ୍ୱାସ ଆସେ । ସେଇ ଗୋଟିଏ କଥାରୁ ସେମାନଙ୍କ ଭିତରେ ଝଗଡ଼ା ଆରମ୍ଭ ହୋଇଗଲା । କେଉଁମାନେ ସେଠାରେ ରହିବେ ଆଉ କେଉଁମାନେ ଯିବେ । ଶେଷରେ ସେମାନଙ୍କ ମଧ୍ୟରୁ ଜଣେ କହିଲା, "ତାହାହେଲେ ଏଇଆ ହେଉ ଯେ ଏମାନେ ମଧ୍ୟ ଆମ ସାଙ୍ଗରେ ଈଶ୍ୱରଙ୍କ ଦର୍ଶନ ନିମନ୍ତେ ଯାଆନ୍ତୁ ।"

ଏହା ଶୁଣି ସେହି ସୁନ୍ଦରୀମାନେ କହିଲେ, "ଦେଖନ୍ତୁ, ଆପଣମାନେ ସମସ୍ତେ କୁଳୀନ ପରିବାରର ଭଳି ମନେ ହେଉଛନ୍ତି । ଆମେ ଆପଣମାନଙ୍କୁ ସ୍ପଷ୍ଟ କହି ଦେଉଛୁ ଯେ ଆମେମାନେ ଏ ବାବାଜୀ ସାଙ୍ଗରେ ପାଦେ ବି ଯିବୁ ନାହିଁ । ଆମମାନଙ୍କୁ ଏ ଜଣେ ଠକ ବୋଲି ମନେ ହେଉଛି । ସାଧୁମାନେ କୋମଳ ପ୍ରକୃତିର । ତା'ଲଗି ସ୍ତ୍ରୀ ପୁରୁଷ ସମସ୍ତେ ସମାନ । ମାତ୍ର ଏ ଜଣେ ଦୟାହୀନ କଠୋର ମଣିଷ । ଏ ତୁମମାନଙ୍କୁ ନିଶ୍ଚୟ କୌଣସି ବଡ଼ ଫାନ୍ଦରେ ପକେଇବ ବୋଲି ଭାବୁଛି । ଆପଣମାନେ ଯଦି ଫାନ୍ଦରେ ପଡ଼ିବେ ଯଦି ପଡ଼ନ୍ତୁ । ଆମେ ଚାଲିଲୁ ।"

ଏହା କହି ସେମାନେ ଚାଲି ଯିବାକୁ ଉଦ୍ୟତ ହେଲେ । ତାପରେ ସବୁରି ମନ ଚଞ୍ଚଳ ହୋଇ ଉଠିଲା । ଏପଟେ ଭଗବାନଙ୍କୁ ଦେଖିବାର ଇଚ୍ଛା, ସେପଟେ ମାଲ୍ ହାତରୁ ଆସି ହାତଛଡ଼ା ହୋଇଯିବା । ଶେଷରେ ସେମାନେ ଭାବିଲେ ଏ ବାବାଜୀକୁ ବିଶ୍ୱାସକରି ଲାଭ କ'ଣ ? ଆସିଥିବା ଲକ୍ଷ୍ମୀକୁ ଗଡ଼େଇ ଦେବେ କେମିତି ? ସେମାନେ ନାଚି କୁଦି ସେମାନଙ୍କୁ ସାଙ୍ଗରେ ଧରି ଚାଲିଲେ । ପଛରେ ନାରଦ କେତେ ଚିତ୍କାର କଲେ ବି ସେମାନେ ଆଉ ଶୁଣିଲେ ନାହିଁ ।

Digitized by srujanika@gmail.com

ନାରଦ ଅତ୍ୟନ୍ତ ଦୁଃଖକଲେ । ଅତ୍ୟନ୍ତ ଲଜ୍ଜାରେ ଭଗବାନଙ୍କ ପାଖକୁ ଫେରି ଆସିଲେ । ଭଗବାନ ଅତି ଉଲ୍ଲାସରେ ଠିଆ ହୋଇ ପଚାରିଲେ, "ଆରେ, ଆସ ନାରଦ ଆସ, କୁଆଡ଼େ ଗଲେ ତମର ଭକ୍ତମଣ୍ଡଳୀ ! ଖୁବ ଡେରିକଲ । ମୁଁ ତ ସେତେବେଳଠାରୁ ଏଠାରେ ଅପେକ୍ଷା କରି ବସିଛି ।

ନାରଦ ହାତଯୋଡ଼ି କହିଲେ, "ପ୍ରଭୁ ! ଆପଣଙ୍କର ମାୟା ଅତି ଗହନ । ସେ ମାୟାରୁ ଉଦ୍ଧରିଲେ ବିନା ମାୟାପତିଙ୍କ ନିକଟକୁ ପହଞ୍ଚିବ ? ସମସ୍ତେ କୌଣସି ନା କୌଣସି ମାୟାରେ ବନ୍ଧ ହୋଇ ରହିଛନ୍ତି । ହେ ପ୍ରଭୁ, ଆପଣ ଯାହା ଉପରେ କୃପା କରିବେ ସେଇ ହିଁ କେବଳ ଆପଣଙ୍କର ଦୁରନ୍ତ ମାୟାରୁ ମୁକ୍ତିଲାଭ କରି ପାରିବ । ଜୀବ ତୁମକୁ ଚାହେଁ ନାହିଁ, ତୁମ ନାମକୁ ରକ୍ଷାକାରୀ ଅସ୍ତ୍ର ବୋଲି ସେ ଭାବୁନାହିଁ । ସେମାନେ ତ ପାପକୁ ଭଲ ପାଆନ୍ତି ।

ସୂତ କହୁଛନ୍ତି—"ତେଣୁ ହେ ମୁନିଗଣ, ପରମାର୍ଥ ପଥରେ ଏଇ ଦୁଇଟିମାତ୍ର ବାଧା ରହିଛି, କାମ ଏବଂ ଲୋଭ । ଯେଉଁମାନେ ଏମାନଙ୍କ ଉପରେ ବିଜୟ ହାସଲ କରିଛନ୍ତି ସେମାନେ ସିଦ୍ଧ । ଶିବଶର୍ମାଙ୍କର ପାଞ୍ଚୋଟିଯାକ ପୁତ୍ର ଏମାନଙ୍କ ଉପରେ ବିଜୟ ଲାଭ କରିଥିଲେ । ତେଣୁ ସେମାନେ ଆପଣାର ସଂକଳ୍ପ ସିଦ୍ଧ କରିବାକୁ ସର୍ବଥା ସମର୍ଥ ଥିଲେ । ଶିବଶର୍ମା ସ୍ୱୟଂ ଯୋଗୀ ଥିଲେ । ଯୋଗର ସିଦ୍ଧି ମାଧ୍ୟମରେ ସେମାନେ ଯେତେବେଳେ ଯାହା ଇଚ୍ଛା କରୁଥିଲେ ସେପରି ରୂପ ଧାରଣ କରି ପାରୁଥିଲେ ।

ଥରେ ଶିବଶର୍ମା ଆପଣାର ପାଞ୍ଚ ପୁଅ ତାଙ୍କର ପ୍ରକୃତ ଭକ୍ତ ଅଟନ୍ତି ବା ନୁହନ୍ତି ପରୀକ୍ଷା କରିବାକୁ ସ୍ଥିରକଲେ । ସେହି ଉଦ୍ଦେଶ୍ୟରେ ସେ ଆପଣାର ପତିବ୍ରତା ପତ୍ନୀକୁ ମାୟାରେ ରୋଗିଣୀ କଲେ ଏବଂ କିଛିକାଳ ଭିତରେ ତାଙ୍କୁ ମୃତଦେହରେ ରୂପାନ୍ତରିତ କରି ଜ୍ୟେଷ୍ଠପୁତ୍ର ଯଜ୍ଞଶର୍ମାଙ୍କୁ ଡାକି କହିଲେ—"ପୁତ୍ର, ଦେଖ, ମୋର ମାତା ପରଲୋକଗମନ କରିଛନ୍ତି । ବର୍ତ୍ତମାନ ତାଙ୍କଠାରେ ଆପଣା ଲୋକର କି ପ୍ରୟୋଜନ ? ତାଙ୍କ ଦେହକୁ ନେଇଯାଅ ଏବଂ କାଟି ଟୁକୁରା ଟୁକୁରା କରି ଫିଙ୍ଗି ଦେଇ ଆସ । ଏହା ଶୁଣି ଯଜ୍ଞଶର୍ମା କୌଣସି ଆପତ୍ତି କଲେ ନାହିଁ । ପିତାଙ୍କର ଆଜ୍ଞା ଶିରୋଧାର୍ଯ୍ୟ କରି ସେ ମାତାଙ୍କର ମୃତ ଦେହ ବଣକୁ ନେଇ ଫିଙ୍ଗି ଦେଇ ଆସିଲେ । ଫେରି ଆସି ପିତାଙ୍କୁ କହିଲେ, "ବାପା, ମୁଁ ଆପଣଙ୍କର ଆଜ୍ଞା ଅକ୍ଷରେ ଅକ୍ଷରେ ପାଳନ କରିଛି । ମୋର ଆଉ କଣ କରିବା କଥା ଆଜ୍ଞା କରନ୍ତୁ ।"

ପୁତ୍ରର ଏଭଳି ପିତୃଭକ୍ତି ଦେଖି ଯୋଗସିଦ୍ଧ ଶିବଶର୍ମା ଅତ୍ୟନ୍ତ ପ୍ରସନ୍ନ ହେଲେ । ଯଦିଓ ସେ ଜାଣିଥିଲେ ଯେ ମୋର ପାଞ୍ଚୋଟିଯାକ ପୁତ୍ର ପିତୃଭକ୍ତ ଏବଂ ସିଦ୍ଧ, ତଥାପି ମଧ୍ୟ ଲୋକଙ୍କରେ ସେମାନଙ୍କର ପ୍ରସିଦ୍ଧି ନିମନ୍ତେ ସେ ମାୟା ରଚନା କରିଥିଲେ । ଯେତେବେଳେ

Digitized by srujanika@gmail.com

ପ୍ରଥମ ପୁତ୍ରର ପରୀକ୍ଷା ହୋଇଗଲା, ସେତେବେଳେ ସେ ଦ୍ୱିତୀୟ ପୁତ୍ର ଦେବଶର୍ମାଙ୍କୁ ପରୀକ୍ଷା କରିବାକୁ ଚାହିଁଲେ । ମାୟାରେ ସେ ଏକ ଅତ୍ୟନ୍ତ ରୂପବତୀ ସ୍ତ୍ରୀ ରଚନା କଲେ ଏବଂ ପୁତ୍ର ଦେବଶର୍ମାଙ୍କୁ କହିଲେ, "ପୁତ୍ର, ତୁମେମାନେ ଯଦ୍ୟପି ସମସ୍ତେ ମୋର ଅନେକ ସେବା କରୁଛ, ଅତ୍ୟନ୍ତ ପିତୃଭକ୍ତ ଅଛ, ତୁମେ ଜାଣ ଯେ ସ୍ତ୍ରୀ ଯେଉଁଭଳି ସେବା କରିପାରେ ତାହା ଅନ୍ୟ କେହି ପାରିବ ନାହିଁ । ସ୍ତ୍ରୀ, ମାତା, ସଖା, ମନ୍ତ୍ରୀ ପରିଚାରିକା ଭଳି ସବୁର କାର୍ଯ୍ୟ କରେ । ତାପରେ ସ୍ତ୍ରୀ ହାତର ଭୋଜନରେ ଯେଉଁ ସ୍ୱାଦ ଅଛି ତାହା ପୁରୁଷ ହାତର ରନ୍ଧା ଭୋଜନରେ କଦାଚିତ୍ ଆସିବ ନାହିଁ । ସ୍ତ୍ରୀ ମାନଙ୍କ ମଧ୍ୟରେ ଅନ୍ନପୂର୍ଣ୍ଣାଙ୍କର ଅଂଶ ବିଦ୍ୟମାନ । ପୁରୁଷ ନିମନ୍ତେ ସଂସାରରେ ସ୍ତ୍ରୀଠାରୁ ବଳି ସୁଖଦେବାକୁ କେହି ନାହାନ୍ତି । ମୋର ପତ୍ନୀ ବିୟୋଗ ଘଟିଛି, ମୁଁ ସ୍ତ୍ରୀ ବିନା ଚଳିପାରୁ ନାହିଁ । ତେଣୁ ସମୀପରେ ଥିବା ଏହି ସ୍ତ୍ରୀକୁ ମୁଁ ପୁନର୍ବିବାହ କରିବାକୁ ଚାହୁଁଛି । ଏ ସ୍ତ୍ରୀ ଯେଉଁପରି ସନ୍ତୁଷ୍ଟ ହେବ, ସେଭଳି ସନ୍ତୋଷ ଦେଇ ମୋ ପାଖକୁ ନେଇ ଆସ । ଯଦି ଏ ସ୍ତ୍ରୀ ମିଳିବ ନାହିଁ ତା'ହେଲେ ମୁଁ ବଞ୍ଚିବ ନାହିଁ ।"

ପିତାଙ୍କର କଥା ଶୁଣି ଦେବଶର୍ମା କହିଲେ, "ବାପା, ମୁଁ ଆପଣାର ପ୍ରାଣ ପର୍ଯ୍ୟନ୍ତ ବିନିମୟରେ ଆପଣଙ୍କର ଇଚ୍ଛା ପୂରଣ କରିବି ।" ଏହା କହି ସେ ସେହି ମାୟାନିର୍ମିତ ସ୍ତ୍ରୀ ନିକଟକୁ ଗଲେ । ସେଠାରେ ପହଞ୍ଚି କହିଲେ "ଦେବୀ ! ମୋର ପିତା ଆପଣଙ୍କ ସହିତ ବିବାହ କରିବାକୁ ଇଚ୍ଛା କରୁଛନ୍ତି; ଆପଣ ମୋ ଉପରେ ପ୍ରସନ୍ନ ହୁଅନ୍ତୁ ଏବଂ ସ୍ୱୀକାର କରନ୍ତୁ ।" ।

ଏହା ଶୁଣି ସେ ସ୍ତ୍ରୀ କହିଲା, "ହେ ତରୁଣ ବ୍ରାହ୍ମଣ, ଆପଣ ଯୁବକ ହୋଇ ସେଭଳି ଅଧର୍ମ କଥା କହୁଛନ୍ତି । ସେ ବୃଦ୍ଧଙ୍କ ସାଙ୍ଗରେ ବିବାହ କଲେ ମୋର କି ଲାଭ ହେବ ? ତାଙ୍କର ସମସ୍ତ ଇନ୍ଦ୍ରିୟ ଶିଥିଳ ହୋଇଯାଇଛି । ସାରାଦିନ କାଶୁଛନ୍ତି । କଫ ଥୁକି ପକାଇ ସବୁ ସ୍ଥାନ ଅପରିଷ୍କାର ଅପବିତ୍ର କରୁଛନ୍ତି । ବାଡ଼ି ଧରି ଚାଲୁଛନ୍ତି । ମୁଁ ସେଭଳି ବୃଦ୍ଧଙ୍କ ସାଙ୍ଗରେ ବିବାହ କରିବାକୁ ଚାହୁଁ ନାହିଁ ।"

ଦେବଶର୍ମା କହିଲେ, "ଦେବୀ, ମୋର ପିତା ସିଦ୍ଧ ପୁରୁଷ । ସେ ଯାହା ଇଚ୍ଛା ତାହା କରିପାରିବେ । ଆପଣ ମୋ ଉପରେ କୃପାକରି ତାଙ୍କୁ ସ୍ୱୀକାର କରନ୍ତୁ ।"

ସେ ସ୍ତ୍ରୀ କହିଲା. "ବ୍ରାହ୍ମଣ, ଆପଣ ସେହି ବୃଦ୍ଧର ଅକର୍ମ କଥାର ବୃଥା ସମର୍ଥନ କାହିଁକି କରୁଛନ୍ତି ? ତାଙ୍କର ଏଭଳି ବୃଦ୍ଧାବସ୍ଥାରେ ବିବାହ କରିବାର କି ପ୍ରୟୋଜନ ଅଛି ? ବର୍ତ୍ତମାନ ବିବାହ କରିବାର ସମୟ ଆପଣଙ୍କର । ମୋର ଚିତ୍ତ ମଧ୍ୟ ଆପଣଙ୍କ ପ୍ରତି ଆସକ୍ତ । ମୋ ପାଖରେ ଯଥେଷ୍ଟ ଧନ ଅଛି । ଆପଣ ମୋ ସହିତ ବିବାହ କରି ସଂସାର ସୁଖ ଭୋଗ

Digitized by srujanika@gmail.com

କରନ୍ତୁ । ବୃଦ୍ଧମାନଙ୍କର ବୁଦ୍ଧି ଭ୍ରଷ୍ଟ ହୋଇଥାଏ । ପ୍ରଥମେ ନିଜ ସୁଖ ଦେଖିବା କଥା । ସ୍ୱୟଂ ସୁଖୀ ହେଲେ ସବୁ ଧର୍ମ କର୍ମ କରି ହୁଏ ।"

ଦେବଶର୍ମା କହିଲେ, "ଦେଖ, ତୁମେ କେଉଁଭଳି ଅଧର୍ମ କଥା କହୁଛ ? ଯେତେବେଳେ ମୋର ପିତା ତୁମକୁ ବରଣ କରିଛନ୍ତି, ତୁମେ ମୋର ମାତା ହେଲ । ତେଣୁ ଏଭଳି କଥା ତୁମକୁ ଶୋଭା ପାଏ ନାହିଁ । ବର୍ତ୍ତମାନ ତୁମେ ସେକଥା କହ, ଯାହାକଲେ ପିତୃଇଚ୍ଛା ପୂରଣ ହେବ ।"

ଏହାଶୁଣି ସେ ସ୍ତ୍ରୀ କହିଲ, "ତୁମେ ପିତୃଭକ୍ତି ଦ୍ୱାରା କେଉଁ ସିଦ୍ଧି ପ୍ରାପ୍ତ ହୋଇଛ ମୋତେ ଦେଖାଅ । ମୁଁ ତା'ପରେ ତୁମ ପ୍ରଶ୍ନର ଉତ୍ତର ଦେବି ।" ଯଦି ତୁମର କୌଣସି ସିଦ୍ଧି ଅଛି ତା'ହେଲେ ମୋତେ ଦେବତାମାନଙ୍କର ଦର୍ଶନ କରାଅ ।"

ଏହା ଶୁଣିବା ମାତ୍ରକେ ଦେବଶର୍ମା ମନେମନେ ଦେବତାମାନଙ୍କର ଆବାହନ କଲେ । ସେଠାରେ ଯାଙ୍ଗେ ଯାଙ୍ଗେ ଇନ୍ଦ୍ର, ବରୁଣ, କୁବେର ଆଦି ଦେବତାମାନେ ସମୁପସ୍ଥିତ ହେଲେ ଏବଂ ଦେବଶର୍ମାଙ୍କୁ କହିଲେ, "ବ୍ରାହ୍ମଣ, ଆପଣଙ୍କର ପିତୃଭକ୍ତିରେ ସନ୍ତୁଷ୍ଟ ହୋଇଛୁ । ଆପଣ ଆମଠାରୁ ଯାହାଇଚ୍ଛା ବର ମାଗି ନଅନ୍ତୁ ।"

ଦେବଶର୍ମା କହିଲେ, "ମୋର ପିତାଙ୍କ ଚରଣରେ ନିରନ୍ତର ଅଚଳା ଭକ୍ତି ରହିଥାଉ । ଏହାଛଡ଼ା ମୁଁ ଅନ୍ୟ କୌଣସି କଥା ମାଗୁନାହିଁ ।" ଦେବତାମାନେ 'ତଥାସ୍ତୁ' କହି ଅନ୍ତର୍ଦ୍ଧାନ ହୋଇଗଲେ । ତା'ପରେ ସେହି ମାୟାନାରୀ କହିଲ, "ଦେବତାମାନଙ୍କୁ ଦେଖି ମୋର କି ପ୍ରୟୋଜନ ସିଦ୍ଧ ହେଲା । ଯଦି ତୁମେ ପ୍ରକୃତ ପିତୃ ଭକ୍ତ, ତା'ହେଲେ ତୁମେ ନିଜହାତରେ ନିଜର ମୁଣ୍ଡ କାଟି ମୋତେ ଦିଅ ।" ଏହା ଶୁଣି ଦେବଶର୍ମା ଆନନ୍ଦରେ ନାଚି ଉଠିଲେ । କହିଲେ, 'ଆହା, ମୋର ଜୀବନ ଧନ୍ୟ ! ଲୋକେ କହିଥାନ୍ତି ଏ ମନୁଷ୍ୟ ଶରୀରର କେଉଁ କାର୍ଯ୍ୟ ଅଛି, ଯଦି ସେ ଶରୀରଦ୍ୱାରା ପିତୃକାର୍ଯ୍ୟ ଓ ସେବା ସମ୍ପନ୍ନ ହେଉ ନାହିଁ । ଏହା ଫଳରେ ମୋର ଏ ଶରୀର ଧାରଣ ସାର୍ଥକ ହୋଇଯିବ । ଏହା କହି ସେ ଏକ ତୀକ୍ଷ୍ଣ ଖଡ଼୍‌ଗଦ୍ୱାରା ଆପଣାର ମୁଣ୍ଡ କାଟି ସେ ସ୍ତ୍ରୀଙ୍କୁ ଦେଇଦେଲେ ।

ସେହି ସ୍ତ୍ରୀ ସେ ଶରୀରକୁ ନେଇ ଦେବଶର୍ମାଙ୍କ ପିତାଙ୍କ ନିକଟରେ ପହଞ୍ଚିଲେ । ପୁତ୍ରର କଟାମୁଣ୍ଡ ସେ ସ୍ତ୍ରୀ ହାତରେ ଦେଖି ସେ ପୁତ୍ରର ପିତୃଭକ୍ତି ନିମନ୍ତେ ପ୍ରସନ୍ନ ହେବା ସହିତ ପୁତ୍ର ବିୟୋଗ ହେତୁ ଦୁଃଖିତ ହେଲେ । ବ୍ରାହ୍ମଣଙ୍କର ଅନ୍ୟାନ୍ୟ ପୁତ୍ରମାନେ ସେ ସ୍ତ୍ରୀର ସାହସ ଦେଖି ବିସ୍ମିତ ହେଲେ ଏବଂ ଦେବଶର୍ମାର ଭାଗ୍ୟର ଭୂୟସୀ ପ୍ରଶଂସା କଲେ ।

ପିତା ଶିବଶର୍ମା ଆପଣାର ତୃତୀୟ ପୁତ୍ର ଧର୍ମଶର୍ମାଙ୍କୁ ଡାକି କହିଲେ, "ପୁତ୍ର, ମୁଁ ତ ଏହି ସ୍ତ୍ରୀ ସହିତ ବିବାହ କରିବାକୁ ଇଚ୍ଛା କରୁଛି । ମାତ୍ର ଯେତେବେଳପର୍ଯ୍ୟନ୍ତ

Digitized by srujanika@gmail.com

ମୋର ଆକାଂକ୍ଷା ପୁତ୍ର ଦେବଶର୍ମା ଜୀବିତ ହୋଇନାହାଁନ୍ତି, ସେତେବେଳପର୍ଯ୍ୟନ୍ତ ମୋତେ ସୁଖଶାନ୍ତି ମିଳିବ ନାହିଁ । ତୁମେ ଏହି ମସ୍ତକ ନିଅ ଏବଂ ଯେଉଁପରି ଦେବଶର୍ମା ଜୀବିତ ହେବ ସେହି ଉଦ୍ୟମ କର । ଏହା ଶୁଣି ଧର୍ମଶର୍ମା କହିଲା, "ପ୍ରଭୁ, ମୋର ଭାଇ ଆପଣଙ୍କର ଧର୍ମର ପ୍ରଭାବରେ ଅବଶ୍ୟ ଜୀବିତ ହୋଇ ଆପଣଙ୍କୁ ସୁଖୀ କରିବ ।ଏହାକହି ସେ ମୃତ ଭାଇ ନିକଟକୁ ଗଲା ଏବଂ ତା'ର ଶରୀର ଯୋଡ଼ି ଦେଇ କହିଲା, "ମୁଁ ଯଦି ମନ ବଚନ ଏବଂ କର୍ମଦ୍ୱାରା ସର୍ବଦା ପିତୃଭକ୍ତ ହିଁ କରଥାଏ, ତା'ହେଲେ ଧର୍ମରାଜ ଆବିର୍ଭୂତ ହୋଇ ମୋର ମୃତ ଭାଇକୁ ଜୀବିତ କରନ୍ତୁ । ଏହା କହିବା ମାତ୍ରକେ ସେଠାରେ ଧର୍ମରାଜ ପ୍ରକଟିତ ହେଲେ ଏବଂ ଧର୍ମଶର୍ମାକୁ କହିଲେ, "ବତ୍ସ, ମୁଁ ତୁମର ଶୀଳ, ସଦାଚାର, ଶମ, ଦମ, ତ୍ୟାଗ ତଥା ତତକ୍ଷାଦି ଗୁଣ ହେତୁ ପରମ ସନ୍ତୁଷ୍ଟ ହୋଇଛି । ତୁମେ ଯାହା ଇଚ୍ଛା ସେ ବର ମାଗିନିଅ ।"

ଧର୍ମଶର୍ମା କହିଲେ, "ପ୍ରଭୁ, ଯଦି ଆପଣ ମୋତେ ବରଦାନ କରିବାକୁ ଚାହାନ୍ତି, ତା'ହେଲେ ସେଇ ବର ଦିଅନ୍ତୁ ଯେପରି ମୋର ଏ ଭାଇ ଜୀବିତ ହୋଇ ପିତାଙ୍କର ଆନନ୍ଦ ବର୍ଦ୍ଧନକାରୀ ହେବ ।"

ଧର୍ମରାଜ କହିଲେ, "ଏହା ତ ଅବଶ୍ୟ ହେବ । ଏହା ଛଡ଼ା ତୁମେ ଯେଉଁ ବର ମାଗୁଛ ମାଗିନିଅ ।"

ଧର୍ମଶର୍ମା ପୁନଶ୍ଚ କହିଲେ, "ମୁଁ ସେଇ ବର ମାଗୁଛି, ମୋର ପିତାଙ୍କ ପ୍ରତି ନିରନ୍ତର ଅତୁଟ ଭକ୍ତି ଥାଉ । ପରଶେଷରେ ମୋକ୍ଷ ମିଳୁ । ମୋତେ ସେହି ବର ପ୍ରଦାନ କରନ୍ତୁ ।" 'ତଥାସ୍ତୁ' କହି ଧର୍ମରାଜ ଚାଲିଗଲେ । ତୁରନ୍ତ ଦେବଶର୍ମା ଜୀବିତ ହୋଇ ଉଠିଲେ, ଉଭୟ ଭାଇ ପ୍ରସନ୍ନ ଚିତ୍ତରେ ପିତାଙ୍କ ନିକଟରେ ପହଞ୍ଚିଲେ । ଆପଣାର ପୁତ୍ରମାନଙ୍କୁ ଜୀବିତ ଦେଖି ପିତା ହର୍ଷଲାଭ କଲେ ଏବଂ ସେହି ମାଆ-ପ୍ରମଦା ସହିତ ଆନନ୍ଦରେ ବିହାର କଲେ ।

ତନୋଟି ପୁତ୍ରର ପରୀକ୍ଷା ସରିଥିଲା । ଶେଷରେ ଚତୁର୍ଥ ପୁତ୍ର ବିଷ୍ଣୁଶର୍ମାର ପରୀକ୍ଷା ନିମନ୍ତେ ପିତା କହିଲେ, " ପୁତ୍ର, ମୁଁ ଅନେକ ବୃଦ୍ଧ ହୋଇଗଲିଣି, ଯଦି ତୁ ସ୍ୱର୍ଗ ଯାଇ ମୋ ପାଇଁ ଅମୃତ ଆଣି ପାରିବୁ ତା'ହେଲେ ମୁଁ ଅଜର ଅମର ହୋଇଯିବି ।"

ବିଷ୍ଣୁଶର୍ମା କହିଲା, "ଭଲ କଥା ବାପା, ମୁଁ ବର୍ତ୍ତମାନ ଆପଣଙ୍କର ଆଦେଶରେ ସ୍ୱର୍ଗକୁ ଯିବି । ଏହାକହି ସେ ଆପଣାର ଯୋଗବଳରେ ସ୍ୱର୍ଗକୁ ଯାଇ ଇନ୍ଦ୍ରଙ୍କ ନିକଟରେ ଉପସ୍ଥିତ ହେଲା । ଇନ୍ଦ୍ର ତାହାର ଉଦ୍ଦେଶ୍ୟ ଜାଣିପାରି ତାକୁ ଭୁଲେଇବା ଉଦ୍ଦେଶ୍ୟରେ ସ୍ୱର୍ଗର ସର୍ବଶ୍ରେଷ୍ଠ ରୂପବତୀ ଅପ୍ସରା ଉର୍ବଶୀଙ୍କୁ ପଠେଇଲେ । କିନ୍ତୁ ପିତୃଭକ୍ତ ବିଷ୍ଣୁଶର୍ମା ତା' କଥାରେ ଭୁଲିଲେ ନାହିଁ । ଇନ୍ଦ୍ର ଦର୍ଶନ ଦେଲେ ନାହିଁ । ସେହି କାରଣରୁ ବ୍ରାହ୍ମଣ

Digitized by srujanika@gmail.com

କୁମାର କ୍ରୋଧକରି ଅନ୍ୟ ଇନ୍ଦ୍ରଙ୍କର ପ୍ରତିଷ୍ଠା କରିବାକୁ ସଂକଳ୍ପ ଯଜ୍ଞର ଅନୁଷ୍ଠାନ କଲେ । ସେତେବେଳେ ଇନ୍ଦ୍ର ଆସିଲେ ଏବଂ ଅମୃତ ଘଟ ଦେଇ ତାଙ୍କର ଆଦର ସତ୍କାର କରି ବିଦାକଲେ । ବିଷ୍ଣୁଶର୍ମା ଅମୃତ ଘଟ ଆଣି ପିତାଙ୍କୁ ସମର୍ପଣ କଲେ ।

ଆପଣାର ଗୁଣି ପୁତ୍ରଙ୍କର ଭକ୍ତି ଦେଖି ପିତା ଅତ୍ୟନ୍ତ ପ୍ରସନ୍ନ ହେଲେ ଏବଂ ସେମାନଙ୍କୁ କହିଲେ, "ମୁଁ ତୁମର ଭକ୍ତି ତଥା ଯୋଗଶକ୍ତି ଓ ନିଷ୍କାମ ବୃତ୍ତିଦ୍ୱାରା ଅତ୍ୟନ୍ତ ସନ୍ତୁଷ୍ଟ । ତୁମର ଯାହା ଇଚ୍ଛା ସେହିବର ମାଗିନିଅ ।"

ଏହାଶୁଣି ଗୁଣି ଭାଇ କହିଲେ, "ବାପା, ଆପଣ ସବୁ ସମର୍ଥ । ଆପଣ ଯାହା ଇଚ୍ଛା ତାହା କରିପାରିବେ । ତେଣୁ ଆମେ ବର ମାଗୁଛୁଁ ଯେ ମାତା ଆମର ଜୀବିତ ହୁଅନ୍ତୁ ।"

ମାତା ତ ମରିଯାଇ ନଥିଲେ । ଶିବଶର୍ମା ତାଙ୍କୁ ଆପଣାର ଯୋଗବଳ ଦ୍ୱାରା ଅନ୍ତର୍ହିତ କରିଦେଇଥିଲେ । ତେଣୁ ସେ କହିଲେ, "ଠିକ୍ କଥା, ତୁମର ମାତା ଜୀବିତ ହୋଇଯିବେ । ଏତିକ ମାତ୍ର କହିବା ମାତ୍ରେ ମାତା ପ୍ରକଟିତ ହେଲେ । ପାଞ୍ଚପୁତ୍ର ତାଙ୍କର ଚରଣରେ ପ୍ରଣାମ କଲେ । ସେ ସେମାନଙ୍କୁ ଆଶୀର୍ବାଦ ଦେଇ କହିଲେ, "ଏହି କାରଣରୁ ପୁତ୍ରର କାମନା କରାଯାଏ ଯେ ସେମାନେ ମାତାପିତାଙ୍କୁ ନର୍କରୁ ଉଦ୍ଧାର କରନ୍ତୁ । ତୁମେମାନେ ଆମକୁ ତୁମର ଭକ୍ତିଦ୍ୱାରା ସନ୍ତୁଷ୍ଟ କରିଛ, ତୁମମାନଙ୍କର ମଙ୍ଗଳ ହେଉ ।"

ଏପରି ଭାବରେ ତାଙ୍କର ଚାରିଜଣ ପୁତ୍ରଙ୍କର ପରୀକ୍ଷା ସରିଗଲା । ବାକି ରହିଲା ସବା ସାନ ପଞ୍ଚମ ପୁତ୍ର ସୋମଶର୍ମା । ତାଙ୍କୁ ପିତା ଅମୃତ ଘଟ ଦେଇ ତୀର୍ଥ ଯାତ୍ରା କଲେ । କହିଗଲେ, 'ଏହି ଘଟର ରକ୍ଷା କରିବୁ' ଏବଂ ସୋମଶର୍ମା ସେହି ଘଟର ରକ୍ଷା କରିବାକୁ ଲାଗିଲେ ।

ବାରବର୍ଷ ପରେ ପିତା ତୀର୍ଥଯାତ୍ରାରୁ ଫେରିଲେ । ପୁତ୍ରର ପରୀକ୍ଷା ଲାଗି ସେ ଯୋଗବଳରେ ଆପଣାର ସମଗ୍ର ଶରୀରରେ କୁଷ୍ଠ ଉତ୍ପନ୍ନ କରାଇ ନେଇଥିଲେ । ସେହିଭଳି ପତ୍ନୀଙ୍କ ଶରୀର କରି ଦୀନ ହୀନ ଦଶାରେ ସୋମଶର୍ମା ନିକଟରେ ଉପସ୍ଥିତ ହେଲେ । ମାତାପିତାଙ୍କୁ ସେଭଳି ଅବସ୍ଥାରେ ଦେଖି ମଧ୍ୟ ସୋମଶର୍ମାଙ୍କ ମନରେ ଟିକେ ମାତ୍ର ଅଶ୍ରଦ୍ଧାଭାବ ଆସିଲା ନାହିଁ । ଅତ୍ୟନ୍ତ ଭକ୍ତି ସହକାରେ ସେ ସେମାନଙ୍କର ଚରଣ ବନ୍ଦନା କଲେ । କହିଲେ, "ପିତା ଆପଣତ ପରମ ଧର୍ମାତ୍ମା ! ଆପଣଙ୍କ ଭଳି ଧର୍ମାତ୍ମା ବ୍ୟକ୍ତି ମୁଁ ଜୀବନରେ ଦେଖିନାହିଁ । ଆପଣଙ୍କର ଏ ଭୟଙ୍କର ବ୍ୟାଧି କେଉଁପରି ହେଲା ? ମୋର ମାତା ମଧ୍ୟ ସତୀ ସାଧ୍ୱୀ ଶିରୋମଣି ଅଟନ୍ତି । ତାଙ୍କୁ ମଧ୍ୟ ଏ ବ୍ୟାଧି କେଉଁ କାରଣରୁ ହେଲା ?"

Digitized by srujanika@gmail.com

ପିତା କହିଲେ, "କର୍ମର ଫଳ ତ ସମସ୍ତଙ୍କୁ ଭୋଗ କରିବାକୁ ପଡ଼େ । ତୁ ଆମମାନଙ୍କର ସେବା କର ।"

ଏହା ଶୁଣି ସୋମଶର୍ମା ତନୁ ମନ ଧନ ସବୁସମୟରେ ପିତାମାତାଙ୍କର ସେବା-ତତ୍ପର ହେଲେ । ସେ ତାଙ୍କର କ୍ଷତ ସ୍ୱୟଂ ସଫା କରନ୍ତି । ଔଷଧ ଆଦିର ବ୍ୟବସ୍ଥା କରନ୍ତି । ସ୍ୱୟଂ ସେମାନଙ୍କୁ ଦ୍ରବ୍ୟ ଭୋଜନ କରାନ୍ତି । ଚରଣ ସେବା କରନ୍ତି । ପିତା ଅନେକ ସମୟରେ ତାଙ୍କ ଉପରେ କୋପକରି ଲାଠିଦ୍ୱାରା ପ୍ରହାର ମଧ୍ୟ କରିଥାନ୍ତି, ମାତ୍ର ନା' ସେ ତାଙ୍କର ବିରୋଧ କରିଥାନ୍ତି କିମ୍ବା କୌଣସି ପ୍ରକାର ଉତ୍ତର ଦିଅନ୍ତି ? ତାଙ୍କର ସେ ପ୍ରହାର ସହି ନିଅନ୍ତି । ଦିନେ ପିତା କହିଲେ, "ପୁତ୍ର, ସେ ଯେଉଁ ଅମୃତ ଘଟ ଅଛି ତାକୁ ପାନକରି ମୁଁ ପୂର୍ଣ୍ଣ ନିରୋଗ ହୋଇଯିବି ।"

ଏହା ଶୁଣି ସୋମଶର୍ମା ସେ ସ୍ଥାନକୁ ଗଲେ ଯେଉଁଠାରେ କି ସେ ଅମୃତ ଘଟ ରହିଥିଲା । ମାତ୍ର ତାଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ ଘଟରେ ବିନ୍ଦୁଏ ସୁଦ୍ଧା ଅମୃତ ନଥିଲା । ପିତା ଯୋଗବଳରେ ପୁତ୍ରର ପରୀକ୍ଷା ନେବା ଉଦ୍ଦେଶ୍ୟରେ ସବୁ ଅପହରଣ କରି ନେଇଥିଲେ । ତାହା ଦେଖି ଆଞ୍ଜୁଳାରେ ଜଳନେଇ ସୋମଶର୍ମା ପ୍ରତିଜ୍ଞା କଲେ, "ମୁଁ ଯଦି ଧର୍ମ ପୂର୍ବକ କାୟମନବାକ୍ୟରେ ପିତାମାତାଙ୍କର ପୂଜା ଅର୍ଚ୍ଚନା କରିଥାଏ ତାହେଲେ ଏ ଘଟ ପୁଣି ପୂର୍ଣ୍ଣ ହୋଇଯାଉ । ଦେଖୁ ଦେଖୁ ଘଟ ଅମୃତପୂର୍ଣ୍ଣ ହୋଇଗଲା । ସୋମଶର୍ମା ତାହା ନେଇ ପିତାଙ୍କ ନିକଟରେ ପହଞ୍ଚିଲେ । ତାହା ଦେଖି ପିତା ଅତ୍ୟନ୍ତ ସନ୍ତୁଷ୍ଟ ହେଲେ । ତାଙ୍କୁ ବୈଷ୍ଣବ ମନ୍ତ୍ରର ଦୀକ୍ଷା ଦେଇ ବନଗମନ କଲେ ।

ସୂତ କହୁଛନ୍ତି, "ହେ ମୁନିଗଣ, ଏହି ସୋମଶର୍ମା ହିଁ ଶେଷରେ ହିରଣ୍ୟକଶିପୁର ପୁତ୍ର ପ୍ରହ୍ଲାଦ ରୂପରେ ଜନ୍ମଗ୍ରହଣ କଲେ ଏବଂ ଯୁଦ୍ଧରେ ଭଗବାନ ହାତରେ ନିହତ ହେଲେ ।

ଏହା ଶୁଣି ଶୌନକ ଚମକି ପଡ଼ିଲେ । କହିଲେ, "ହେ ସୂତ ! ଆପଣ ତ ବିସ୍ମୟକର କଥାମାନ କହୁଛନ୍ତି । ଏତେ ଧର୍ମାତ୍ମା ସୋମଶର୍ମା କେଉଁ କାରଣରୁ ଅସୁର ଯୋନିରେ ଜାତ ହେଲେ ଏବଂ ପ୍ରହ୍ଲାଦଙ୍କୁ ପୁଣି ସ୍ୱୟଂ ଭଗବାନ କାହିଁକି ଯୁଦ୍ଧରେ ସଂହାର କଲେ ? ପ୍ରହ୍ଲାଦ ତ ଜନ୍ମରୁ ବିଷ୍ଣୁଭକ୍ତ । ଆପଣ ଆମମାନଙ୍କର ଏ ଶଙ୍କାର ସମାଧାନ କରନ୍ତୁ ।

ଏହା ଶୁଣି ହସି ହସି ଶ୍ରୀ ସୂତ କହିଲେ, "ହେ ମୁନିଗଣ, ମୁଁ ଆପଣମାନଙ୍କର ଶଙ୍କାର ସମାଧାନ କରିବି । ଏଥିରେ ଏକ ବିରାଟ ରହସ୍ୟ ରହିଛି । ଏହା ଏକ ଅତ୍ୟନ୍ତ ଗୂଢ଼ କଥା । ଆପଣମାନେ ସାବଧାନ ହୋଇ ଶ୍ରବଣ କରନ୍ତୁ ।"

Digitized by srujanika@gmail.com

## ଛପ୍ପୟ

ମାତୁ ପିତା ବନ ଜାଇ ମୁନିନ କେ ସବ ବ୍ରତ ଧାରେ ।
ଅନ୍ତ ସମୟ ତନୁ ତ୍ୟାଗି ଧାମ ବୈକୁଣ୍ଠ ସିଧାରେ ॥
କରେଁ ଯୋଗ ବ୍ରତ ନିୟମ ସୋମଶର୍ମା ହୁ ସବ ବିଧି ।
ସୁଖ ଦୁଖ ମହଁ ସମ ରହେଁ,
ତ୍ୟାଗତେ ଭୟେ ତପୋନିଧି ॥
ଅନ୍ତ ସମୟ ଆୟୋ ଜବହିଁ, ଅସୁର ଶବ୍ଦ ସୁନି ଡରି ଗୟେ ।
ଦୈତ୍ୟ ଭାବ ହିୟ ମହଁ ଧସ୍ୟୋ,
ହିରଣ୍ୟକଶିପୁ କେ ସୁତ ଭୟେ ॥

— ❊ —

Digitized by srujanika@gmail.com

# ପ୍ରହ୍ଲାଦଙ୍କର ଦ୍ୱିତୀୟ ଜନ୍ମ

ଅଲମ୍ପଟଃ ଶୀଲଧରୋ ଗୁଣାକରୋ
ହୃଷ୍ଟଃ ପରର୍ଦ୍ଧ୍ୟା ବ୍ୟଥିତୋ ଦୁଃଖିତେଷୁ ।
ଅଭୂତ ଶତ୍ରୁର୍ଜଗତଃ ଶୋକ ହର୍ତ୍ତା
ନୈଦାଘିକଂ ତାପମିବୋଡୁରାଜଃ ॥
—ଶ୍ରୀ. ଭା. ୩ । ୧୪ । ୪୮

## ଛପ୍‌ପୟ

ନାମ ଧରୟୋ ପ୍ରହ୍ଲାଦ ମାତୁକେ ଅତ ଇ ପଯାରେ ।
ଦେବାସୁର ସଂଗ୍ରାମ ମାଁହି ଶ୍ରୀହରିଜନେ ମାରେ ॥
ରୁଦନ କରୈ ନିତ ଜନନି ତହାଁ ନାରଦ ମୁନି ଆୟେ ।
କମଲା ଦେଖୀ ଦୁଖିତ ଦୟା କରି ବଚନ ସୁନାୟେ ॥
ପ୍ରକଟୈ ତେରେ ଉଦର ତେଁ, ତଜୋ ସୋଚ ସୁତ ଜହୀ ତବ ।
ନାମ ହୋ ହି ପ୍ରହ୍ଲାଦ ହୀ, ବହୀ ରୂପ ଗୁନ ଶୀଲ ସବ ॥

ଭଗବାନ ନିତ୍ୟ, ତାଙ୍କର ଲୀଳା ନିତ୍ୟ, ଲୀଳାର ଉପକରଣ ମଧ୍ୟ ନିତ୍ୟ । ପାର୍ଷଦ ବି ନିତ୍ୟ ଓ ଅବତାର ନିତ୍ୟ । କିଛି ହେଲେ ଅନିତ୍ୟ ନୁହେଁ । ଯାହା ଅଛି ସବୁ କିଛି ନିତ୍ୟ । ସବୁ ଶାଶ୍ୱତ । ଗୁଣ ପ୍ରବାହ ଅନାଦି ଅଟେ ଏବଂ ସେଥିରେ ଶ୍ରୀହରି ଲୀଳା କରୁଛନ୍ତି । ବିହାର କରୁଛନ୍ତି । ରାସ ରଚନା କରୁଛନ୍ତି । ଏହି ରାସର କୌଣସି ଅନ୍ତ ନାହିଁ । ଅବସାନ ନାହିଁ । ନିତ୍ୟ ନୂତନ ଭଳି ପ୍ରତୀତ ହୁଏ । ଶ୍ରୀହରି କେତେବେଳେ ହେଲେ ବିରକ୍ତ ହୁଅନ୍ତି ନାହିଁ । ପୁନଃ ପୁନଃ କରି ସେ ଲୀଳା ରଚନା କରିଥାନ୍ତି । ଏଥିରେ କୌଣସି କଥା ଅସମ୍ଭବ ନୁହେଁ । ତାଙ୍କ ପାଖରେ 'ଅସମ୍ଭବ' ଶବ୍ଦ ହିଁ ନାହିଁ । ସବୁ ସମ୍ଭବ । ସେହି କଥାଗୁଡ଼ିକୁ

Digitized by srujanika@gmail.com

ଲୋକେ ଏହା କପରି ହେଲା ବୋଲି ସନ୍ଦେହ ପ୍ରକାଶ କରନ୍ତି, ସେମାନେ ଭୁଲ କରନ୍ତି, ଆରେ, ହେଲା କପରି ? ଯାହା ହେବାର ଥାଏ, ତାହା ଅବଶ୍ୟ ହେବ । ଯେଉଁ କଥା ହେବାକୁ ଥାଏ ତାହା ହେବ ଏବଂ ତାହା ହେବା ଉଚିତ ମଧ୍ୟ । ଏଥିରେ କପରିର ପ୍ରଶ୍ନ ଉଠେନା ।

-

ଶୌନକ ଯେତେବେଳେ ଶଙ୍କା ପ୍ରକାଶ କଲେ ଯେ ଶିବଶର୍ମାଙ୍କ ପଞ୍ଚମ ପୁତ୍ର ସୋମଶର୍ମା କାର୍ତ୍ତିକ ଅସୁର ଯୋନିରେ ପହ୍ଲାଦ ଘରରେ ଜନ୍ମଗ୍ରହଣ କଲେ, ଏବଂ ତାଙ୍କୁ ଦେବାସୁର ସଂଗ୍ରାମରେ ଶ୍ରୀହରି କାର୍ତ୍ତିକ ଓ କେଉଁପରି ସଂହାର କଲେ, ସେତେବେଳେ ଶ୍ରୀ ସୂତ ଉତ୍ତର ଦେଲେ, "ହେ ମୁନିଗଣ, ସଂସ୍କାର ହିଁ ପ୍ରଧାନ କଥା । ଯେଉଁଦିନ ସୋମଶର୍ମାଙ୍କ ପିତା ଅମୃତ ଘଟ ରଖିଦେଇ ତୀର୍ଥଯାତ୍ରାରେ ଚଳେ ସେହିଦିନଠାରୁ ସୋମଶର୍ମା ନିରନ୍ତର ଭାବୁଥିଲେ ଯେ ଏହି ଅମୃତ ନିମନ୍ତେ ଦେବତା ଏବଂ ଦୈତ୍ୟମାନଙ୍କ ମଧ୍ୟରେ କିଭଳି ଗୁରୁତର ସଂଗ୍ରାମ ହୋଇ ନଥିଲା ? ଭଗବାନ ଅସୁର ମାନଙ୍କ ପ୍ରତି କେଉଁଭଳି ଅନ୍ୟାୟ କଲେ । ମୋହିନୀ ରୂପ ଧାରଣ କରି ଦୈତ୍ୟମାନଙ୍କୁ ଅମୃତରୁ ବଞ୍ଚିତ କରିଦେଲେ । ଏ ମଧ୍ୟ କେତେ ସ୍ୱାର୍ଥୀ ନୁହନ୍ତି । ଯେତେବେଳେ ସେମାନଙ୍କର କୌଣସି ସ୍ୱାର୍ଥ ସାଧନ କରିବା ଥାଏ, ସେତେବେଳେ କେଉଁପରି ଚିକ୍କଣ କଥା କହନ୍ତି ନାହିଁ ? ଏବଂ ପ୍ରୟୋଜନ ସିଦ୍ଧ ହୋଇଗଲେ ଆଉ କଥା ନାହିଁ । ମୋର ନିଜଭାଇ ଯେତେବେଳେ ସ୍ୱର୍ଗକୁ ଅମୃତ ଆଣିବା ପାଇଁ ଗଲା, ସେତେବେଳେ ବ ତ ଇନ୍ଦ୍ର ଉର୍ବଶୀକୁ ପଠେଇ ତା'ର କାର୍ଯ୍ୟରେ ବାଧା ଉପସ୍ଥିତ କରିଥିଲେ । ସେଭଳି କଥା ସେ ବାରମ୍ବାର ଅମୃତ ବିଷୟରେ ଭାବୁଥିଲେ । ମନୁଷ୍ୟର ଶକ୍ତିର ହିଁ ତାର ପ୍ରାର୍ଥନା । ଯେ ଯେଉଁପରି ନିରନ୍ତର ଭାବିବ ସେହିଭଳି ହେବ । ଏହି ଲୋକରେ ସେ ମାନସ ସ୍ତରରେ ଯେଉଁ ସ୍ଥିତି ପ୍ରାପ୍ତ ହେବ ପରଲୋକରେ ସେହି ଅବସ୍ଥା ପ୍ରାପ୍ତ ହେବ । ଯେ ନିରନ୍ତର ପାପଚିନ୍ତା କରୁଥିବ ସେ ପାପ ଲୋକକୁ ହିଁ ଯିବ । ପୁଣ୍ୟ କଥା ଚିନ୍ତା କରୁଥିଲେ ସ୍ୱର୍ଗାଦି ପୁଣ୍ୟଲୋକକୁ ଗମନ କରିବ । ଯେ ନିରନ୍ତର ଭଗବାନଙ୍କ ପୂଜା ଅର୍ଚ୍ଚନା କଥା ଏବଂ ବୈକୁଣ୍ଠ ବିଷୟରେ ଭାବୁଥିବ, ତାଙ୍କର ସୁମଧୁର ନାମ-କୀର୍ତ୍ତନ କରୁଥିବ, ସେ ଅବଶ୍ୟ ବୈକୁଣ୍ଠ ଲୋକ ପ୍ରାପ୍ତ ହେବ । ଭାବ ହିଁ ଭବର କାରଣ ଏବଂ ଭାବାନୁସାରେ ହିଁ ସ୍ଥିତି ହୋଇଥାଏ ।

ଯେତେବେଳେ ଶିବଶର୍ମା ଇହଲୋକ ତ୍ୟାଗକରି ବୈକୁଣ୍ଠବାସୀ ହେଲେ ସେତେବେଳେ ତାଙ୍କର ପଞ୍ଚମ ପୁତ୍ର ସୋମଶର୍ମା ପୁଣ୍ୟ ଶାଳଗ୍ରାମ କ୍ଷେତ୍ରରେ ଘୋର ତପସ୍ୟା କଲେ । ତପସ୍ୟାରେ ସେ ଅନେକ ବର୍ଷ ବିତେଇଲେ । ତା'ପରେ ତାଙ୍କର ମରଣକାଳ ଉପସ୍ଥିତ ହେଲା । ଦୈବଯୋଗରେ ସେତେବେଳେ ସେଠାରେ ଦୈତ୍ୟ ସେନା ଉପସ୍ଥିତ ହେଲା । ସେମାନେ ବାରମ୍ବାର ଦେବତାମାନଙ୍କୁ ହାଣ, କାଟ, ମାର, ଧର ଆଦି ଭୟଙ୍କର କ୍ରୋଧଯୁକ୍ତ ଶବ୍ଦ କହି ଚିତ୍କାର କରୁଥିଲେ । ଏପରି ଭାଷା ଶୁଣି ଶୁଣି ତାଙ୍କର ଜୀବନ

Digitized by srujanika@gmail.com

ଧ୍ୟାନ ସବୁ କିଛି ଭୁଲି ହୋଇଗଲା । କଥାରେ ଅଛି, 'ଅନ୍ତେ ଯା ମତିଃ ସା ଗତିଃ ।' ଅନ୍ତ ସମୟରେ ଯେ ଯା'ର ସ୍ମରଣ ହୋଇ ଜୀବ ଶରୀର ତ୍ୟାଗ କରେ, ସେ ତାହା ପ୍ରାପ୍ତ ହୋଇଥାଏ । ଦୈତ୍ୟ ଭୟର କାରଣରୁ ତାଙ୍କର ପ୍ରାଣ ଦୈତ୍ୟ ଭାବ ପ୍ରାପ୍ତ ହେଲା, ଏବଂ ସେହି ଅବସ୍ଥାରେ ତାଙ୍କର ମୃତ୍ୟୁ ହେଲା । ତେଣୁ ସେ ହିରଣ୍ୟକଶିପୁର ପତ୍ନୀଙ୍କର ଉଦରରୁ ଜାତ ହେଲେ । ପୂର୍ବ ଜନ୍ମର ତ ସଂସ୍କାର କଦାପି ଯାଏ ନାହିଁ । ସେହି କାରଣରୁ ମଧ୍ୟ ସେ ଅତ୍ୟନ୍ତ ମାତୃ ପିତୃ ଭକ୍ତ ହେଲେ । ପିତାମାତା ତାଙ୍କର ଶୀଳ ସ୍ୱଭାବ ସଦାଚାର ନିମନ୍ତେ ସଦା ସନ୍ତୁଷ୍ଟ ରହୁଥିଲେ । କାଳାନ୍ତରରେ ସେ ବଡ଼ ହେଲେ । ସେତେବେଳେ ପୁନଶ୍ଚ ଦେବାସୁର ସଂଗ୍ରାମ ହେଲା । ସେ ଅସୁରମାନଙ୍କ ପକ୍ଷରୁ ଦେବତାମାନଙ୍କ ସହିତ ଯୁଦ୍ଧକଲେ । ସେ ଆପଣାର ବଳ ଓ ପୌରୁଷ ଦ୍ୱାରା ଦେବତାମାନଙ୍କୁ ପରାଜିତ କଲେ । ଶେଷରେ ବିଷ୍ଣୁ ଚକ୍ରଦ୍ୱାରା ତାଙ୍କୁ ମୃତ୍ୟୁର ବଶୀଭୂତ କଲେ ।

ଏହା ଶୁଣି ଶୌନକ ପଚାରିଲେ—"ହେ ସୂତ, ଆପଣ ପୂର୍ବରୁ କହିଛନ୍ତି ଯେ ପ୍ରହ୍ଲାଦ ଭଗବାନ ବିଷ୍ଣୁଙ୍କର ଅନନ୍ୟ ଭକ୍ତ ଥିଲେ ଏବଂ ସେ କଲ୍ପ ପର୍ଯ୍ୟନ୍ତ ଦେବଦାନବଙ୍କ ଉପରେ ଆଧିପତ୍ୟ ବିସ୍ତାର କରି ରହିବା କଥା, ମାତ୍ର ବର୍ତ୍ତମାନ କହୁଛନ୍ତି ଭଗବାନ ଚକ୍ର ପେଷି ସଂହାର କଲେ । ଏହା କିପରି କଥା । ଉଭୟ କଥାର କୌଣସି ସଙ୍ଗତି ରହିଲା ନାହିଁ ।

ଏହା ଶୁଣି ଶ୍ରୀ ସୂତ ଉତ୍ତର ଦେଲେ, "ଶୁଣନ୍ତୁ, ମୁଁ ଏହାର କାରଣ ମଧ୍ୟ କହୁଛି, ଯେତେବେଳେ ଭଗବାନ ପ୍ରହ୍ଲାଦଙ୍କୁ ସଂହାର କଲେ, ସେତେବେଳେ ତାଙ୍କର ମାତା ହିରଣ୍ୟକଶିପୁଙ୍କର ପତ୍ନୀ କମଳା ଅତ୍ୟନ୍ତ ଦୁଃଖିତ ହେଲେ । ସେ କାରଣର ସୁନ୍ଦର ଗୁଣ, ସୁନ୍ଦର ସ୍ୱଭାବ ଓ ସ୍ୱରୂପ ସ୍ମରଣ କରି କାନ୍ଦିବାକୁ ଲାଗିଲେ । ସେ ପ୍ରହ୍ଲାଦଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ । ଦିନେ ଭ୍ରମଣ କରୁ କରୁ ନାରଦ ହିରଣ୍ୟକଶିପୁର ଅନ୍ତଃପୁରରେ ପହଞ୍ଚିଲେ । ପୁତ୍ରଶୋକବିହ୍ୱଳା କମଳାଙ୍କୁ ଦେଖି ନାରଦଙ୍କ ମନରେ ଦୟା ହେଲା । ସେ ତାଙ୍କୁ ଆଶ୍ୱାସନା ଦେଇ କହିଲେ, "ଭଦ୍ରେ, ତୁମେ ତୁମର ପୁତ୍ର ନିମନ୍ତେ ଶୋକ କରନାହିଁ । ସେହି ପୁତ୍ର ତୁମର ଗର୍ଭରୁ ଜନ୍ମଗ୍ରହଣ କରିବ । ତାର ରୂପ ରଙ୍ଗ ସ୍ୱଭାବ ସବୁ କିଛି ପୂର୍ବବତ ହେବ ଏବଂ ତାର ନାମ ମଧ୍ୟ ପ୍ରହ୍ଲାଦ ରହିବ । କେବଳ ତାଙ୍କ ମନରେ ଆଉ ଆସୁରୀଭାବ ଆଦୌ ରହିବ ନାହିଁ । ସେ ହେବେ ପରମ ବୈଷ୍ଣବ, ସାଧୁ ସ୍ୱଭାବଯୁକ୍ତ, ଦେବତା ବ୍ରାହ୍ମଣଙ୍କର ଭକ୍ତ, ଭଗବାନଙ୍କର ପରମ ଉପାସକ ତଥା ପରମ ଯଶସ୍ୱୀ । ତାଙ୍କଦ୍ୱାରା ତୁମେ ମଧ୍ୟ ଅଶେଷ ଖ୍ୟାତି ପ୍ରାପ୍ତ ହେବ । ଏପରି ବୁଝେଇ ସୁଝେଇ ଦେବର୍ଷି ନାରଦ ବ୍ରହ୍ମଲୋକକୁ ଚାଲିଗଲେ । କାଳାନ୍ତରରେ ପ୍ରହ୍ଲାଦ ପୁନଃ କମଳାଙ୍କର ଗର୍ଭରୁ ଭୂମିଷ୍ଠ ହେଲେ । ଏଥର ସେ ପରମ ଶାନ୍ତ ଏବଂ ଦେବତାଙ୍କଠୁଁ ବଳି ସାତ୍ତ୍ୱିକ ସ୍ୱଭାବର ଥିଲେ । ତାଙ୍କର ସେହି ସମସ୍ତ ଗୁଣ ବିଦ୍ୟମାନ ଥିଲା ଯାହା ନାରଦ ଉଲ୍ଲେଖ କରିଥିଲେ । ଏହି ପ୍ରହ୍ଲାଦ ପରେ ଇନ୍ଦ୍ର ହେଲେ ।

Digitized by srujanika@gmail.com

ଶୌନକ ଏହା ଶୁଣି କହିଲେ—"ହେ ସୂତ, ଆପଣଙ୍କ କଥାରେ ପରସ୍ପର ବିରୋଧୀ ଅନେକ କଥା ଆସୁଛି । ପ୍ରଥମେ ଆପଣ ହିରଣ୍ୟକଶିପୁଙ୍କର ସ୍ତ୍ରୀଙ୍କ ନାମ କୟାଧୁ କହିଲେ ଏବଂ ବର୍ତ୍ତମାନ କମଳା କହୁଛନ୍ତି । ପ୍ରଥମେ କହିଥିଲେ ବ୍ରହ୍ମାଦି ଦେବଗଣ ତଥା ଶୁକ୍ରାଗୃଷି ଆଦି ମୁନିଗଣ ମିଳିତ ଭାବରେ ପ୍ରହ୍ଲାଦଙ୍କୁ ଦୈତ୍ୟମାନଙ୍କର ସିଂହାସନରେ ଅଭିଷିକ୍ତ କରିଥିଲେ । ପୁଣି କହୁଛନ୍ତି ସେ ଇନ୍ଦ୍ର ହେଲେ । ଏସବୁ ପରସ୍ପର ବିରୋଧୀ କଥାର ସହିତ ଅଣିବା ସହଜ ନୁହେଁ ।

ଏହା ଶୁଣି ଶ୍ରୀ ସୂତ ଗମ୍ଭୀର ହୋଇ କହିଲେ, "ହେ ଶୌନକ, ସଂସାରର ଗୁଣ ପ୍ରବାହ ଅନାଦି । ଏହାର ନା ଆଦି ଅଛି ନା ଅନ୍ତ ଅଛି । ଏହା ନିତ୍ୟ ନିରନ୍ତର ଚାଲିଛି । ଅନେକ କୀଟ ଏଭଳି ଅଛନ୍ତି ଯେଉଁମାନଙ୍କର ଆମର ଗୋଟିଏ ଦିନ ମଧ୍ୟରେ ବହୁବାର ଜନ୍ମ ଏବଂ ମୃତ୍ୟୁ ହୋଇଯାଏ । ଆମେ ଆଠ ପ୍ରହରକୁ ଏକ ଗୋଟିଏ ଦିନ ବୋଲି ଭାବୁଛୁ, ସେମାନଙ୍କ ନିମନ୍ତେ ତାହା ମହାପ୍ରଳୟ ଭଳି ସମୟଟିଏ । ଆମେ ତିନିଶତ ପଞ୍ଚଷଠି ଦିନର ସମୟକୁ ଗୋଟିଏ ବର୍ଷ ବୋଲି କହିଥାଉ, ଯାହା ପିତୃମାନଙ୍କର ଦୁଇଟି ପକ୍ଷ ମାତ୍ର ଏବଂ ଦେବତାମାନଙ୍କ ନିମନ୍ତେ କେବଳ ମାତ୍ର ଗୋଟିଏ ଦିନ । ସତ୍ୟଯୁଗ ତ୍ରେତୟା, ଦ୍ୱାପର ତଥା କଳିଯୁଗ ସହସ୍ରବାର ବିତିଯାଏ ଏବଂ ଏହି ସମୟ ମଧ୍ୟରେ ଚଉଦ ଜଣ ଇନ୍ଦ୍ର, ଚଉଦ ଜଣ ମନୁ ବଦଳି ଯାଆନ୍ତି । କିନ୍ତୁ ଏହି ସମୟ ବ୍ରହ୍ମାଙ୍କ ପାଇଁ ଗୋଟିଏ ଦିନ ମାତ୍ର । ଏହିଭଳି ତିନିଶତ ଷାଠିଏ ଦିନ ବିତିଗଲେ ବ୍ରହ୍ମାଙ୍କର ଗୋଟିଏ ମାତ୍ର ବର୍ଷ ବିତେ । ଏହିଭଳି ସେ ଏକ ଶତ ବର୍ଷ ଭୋଗ କରିଥାନ୍ତି । ତା'ପରେ ଦ୍ୱିତୀୟ ବ୍ରହ୍ମାଣ୍ଡର ସର୍ଜନା ହୋଇଥାଏ । ଏହି ବ୍ରହ୍ମାଣ୍ଡ ବିଲୀନ ହୋଇଯାଏ ।

କ୍ଷୀରଶାୟୀ ଭଗବାନଙ୍କର ଗୋଟିଏ ନିଃଶ୍ୱାସରେ ବ୍ରହ୍ମାଣ୍ଡର ସୃଷ୍ଟି ହୁଏ ଏବଂ ପ୍ରଶ୍ୱାସରେ ବିଲୀନ ହୋଇଯାଏ । ବ୍ରହ୍ମାଙ୍କର ଆୟୁର ଏକଶତ ବର୍ଷ ଭଗବାନଙ୍କର ଏକମାତ୍ର ନିଃଶ୍ୱାସର ସମୟ ଅଟେ । ଅସଂଖ୍ୟ ବାର ସୃଷ୍ଟି ହୋଇଛି ଏବଂ ହେବ ମଧ୍ୟ । ଏହାର ସଂଖ୍ୟା ନାହିଁ କିମ୍ବା ଗଣନା ମଧ୍ୟ ନାହିଁ । କେତେଥର ପ୍ରହ୍ଲାଦ ଜନ୍ମ ହୋଇଛନ୍ତି, କେତେଥର ଭଗବାନ ନୃସିଂହ ଅବତାର ଗ୍ରହଣ କରିଛନ୍ତି, କେତେକାର ସୃଷ୍ଟି ହୋଇଛି, ପ୍ରଳୟ ମଧ୍ୟ ହୋଇଛି । ଏ ସଂଖ୍ୟା ଅଗଣିତ । ଏହା ବୁଝିବା ଉଚିତ । ତେଣୁ ଏସବୁ ଭଗବାନଙ୍କର ମାୟା । ଏବଂ ତାଙ୍କ ପାଇଁ ଅସମ୍ଭବ କିଛି ନାହିଁ । ହେ ଶୌନକ, ଏହି ସବୁ ଚରିତ୍ରର ତାତ୍ପର୍ଯ୍ୟ ହେଲା, ସଦା ସର୍ବଦା ଶ୍ରୀହରିଙ୍କର ଚିନ୍ତନ କରିବା ଉଚିତ । ନିଜକୁ ଭଗବାନଙ୍କର ଯନ୍ତ୍ର ବୋଲି ବିବେଚନା କରିବା ଉଚିତ । ଭଗବାନ ଆମକୁ ତାଙ୍କ କ୍ରୀଡ଼ାର ଯେ କୌଣସି ଉପକରଣ କରନ୍ତୁ ନା କାହିଁକି ଆମ ପକ୍ଷରେ ତାଙ୍କର ଇଚ୍ଛାଉପରେ ନିର୍ଭର କରି ରହିବା ଉଚିତ । ସଂସାରରେ ଅସତ୍ୟ ବୋଲି କିଛି ନାହିଁ । ଯାହା କିଛି ବି ସଂଘଟିତ ହେଉଛି ସବୁ ସତ୍ୟ, କାରଣ ଶ୍ରୀହରି ସତ୍ୟ । ତାଙ୍କର ସାଧନ ସର୍ବଦା ସତ୍ୟ ହିଁ ହେବ । ତାଙ୍କର କ୍ରୀଡ଼ା ମଧ୍ୟ ସତ୍ୟ-ଶିବଙ୍କର କାର୍ଯ୍ୟ ହେବ ? ମଙ୍ଗଳମୟଙ୍କର ବିଧାନ

Digitized by srujanika@gmail.com

ଅମଙ୍ଗଳ କପରି ହେବ ? ତେଣୁ ହେ ମୁନିଗଣ, ଭଗବାନ ଏବଂ ଭଗବତ୍ ଚରିତ୍ରମାନଙ୍କୁ ନିତାଂ ମନେକରି ତାହା ଶ୍ରବଣ କରିବା ଉଚିତ । ସେଥିରେ କେତେବେଳେ ପରସ୍ପର ବିରୋଧୀ କଥା ଆସିଲେ ତାହାକୁ କଳ୍ପ-ଭେଦ ବୋଲି ମନେ କରିବା କଥା ।''

ସୂତ କହୁଛନ୍ତି, ''ହେ ମୁନିଗଣ, ଏହା ମୁଁ ଅତ୍ୟନ୍ତ ସଂକ୍ଷେପରେ ନୃସିଂହ ଚରିତ ଏବଂ ପରମଭକ୍ତ ପ୍ରହ୍ଲାଦଙ୍କର ବୃତ୍ତାନ୍ତ ଶୁଣାଇଲି । ଆପଣମାନେ ଆଉ କ'ଣ ଶୁଣିବାକୁ ଇଚ୍ଛା କରନ୍ତି ?

## ଛପ୍ପୟ

ହୋ ହିଁ ଭାଗବତ ପରମ ଆସୁରୀ ଭାବ ନ ଉନମେ ।
ହୋବେ ପ୍ରେମ ଅନନ୍ୟ ସଦା ଶ୍ରୀହରି ଚରନନି ମେଁ ॥
ସ୍ୟୋଁ । କହି ନାରଦ ଗୟେ ଜନମ ପ୍ରହ୍ଲାଦ ଲୟୋ ପୁନି ।
ଉଦର ମାହିଁ ଶୁଭଜ୍ଞାନ ଦୟୋ ତନି ଶ୍ରୀନାରଦ ମୁନି ॥
ଶ୍ରୀନରହରି କୋ ଚରିତ ଅତି ପାବନ ସୂହ ମୈନେ କହ୍ୟୋ ।
ଐସେ ଶ୍ରୀ ପ୍ରହ୍ଲାଦ କେ, ଜନମ ଅସୁର କୁଲ ମହିଁ ଲୟୋ ॥

—※—

Digitized by srujanika@gmail.com

# ନୃସିଂହ ଚରିତ୍ରର ସମାପ୍ତି

ଏତଦ୍ ଯ ଆଦ୍ୟ ପୁରୁଷସ୍ୟ ମୃଗେନ୍ଦ୍ରଲୀଲାମ୍
ଦୈତ୍ୟେନ୍ଦ୍ରଯୂଥପବଧଂ ପ୍ରୟତଃ ପଠେତ ।
ଦୈତ୍ୟାତ୍ମଜସ୍ୟ ସତାଂ ପ୍ରବରସ୍ୟ ପୁଣ୍ୟମ୍
ଶ୍ରୁତ୍ୱାନୁଭାବକୁତୋଭୟମେତି ଲୋକମ ॥

ଶ୍ରୀ. ଭା. ୭ । ୧୦ । ୪୭

## ଛପ୍‌ପୟ

ଜାମେ ଭଗବତ ଭକ୍ତ ଚରିତ ଅତି ମଧୁର ମନୋହର ।
ଜ୍ଞାନ ଭକ୍ତି ବୈରାଗ୍ୟ ଲଳିତ ଲୀଳା ଅତି ସୁନ୍ଦର ॥
ନାରଦ ବୋଲେ ଧର୍ମରାଜ, ତୁମ ଅତି ବଡଭାଗୀ ।
ସେବେଁ ଜିନକୁଁ ସଦା ଭକ୍ତ ଜ୍ଞାନୀ ବୈରାଗୀ ॥
ରହେଁ ସଦା ସେବକ ସରସ, ତେ ହରି ତୁମ୍ହରେ ପାସ ନିତ ।
ସମ୍ବନ୍ଧୀ ପ୍ରିୟ ସୁହୃଦ ବନି, ରହେଁ ନିତ୍ୟ ହିତ ମହଁ ନିରତ ॥

ଜୀବନର ମୁଖ୍ୟଫଳ ହେଉଛି ଭଗବାନଙ୍କ ପ୍ରତି ଅନୁରାଗ । ଭଗବାନଙ୍କ ପ୍ରତି ଅନୁରାଗ ରଖି ଭକ୍ତମାନେ ଭଗବାନଙ୍କଠାରୁ ମଧ୍ୟ ଉଚ୍ଚ ପଦବୀ ପ୍ରାପ୍ତ ହୋଇଛନ୍ତି । ଏଣୁ ଭଗବାନ କହୁଛନ୍ତି, 'ମୁଁ ଭକ୍ତଙ୍କର ଅଧୀନ ।' ଭଗବାନ ତାଙ୍କର ନିଜ ସେବାରେ ଯେତେ ସନ୍ତୁଷ୍ଟ ହୁଅନ୍ତି ନାହିଁ, ତାଙ୍କର ଭକ୍ତର ସେବାରେ ସେତେ ସନ୍ତୁଷ୍ଟ ହୋଇଥାନ୍ତି । ଭଗବାନଙ୍କୁ ପ୍ରସନ୍ନ କରିବା ନିମନ୍ତେ ଭଗବତ୍ ଚରିତ୍ର ଯେତେ ଉପଯୋଗୀ, ତା'ଠାରୁ ଅଧିକ ଭାଗବତ ଚରିତ୍ର । ଭକ୍ତଙ୍କର ଚରିତ୍ର ବର୍ଣ୍ଣନାରେ ସେହି ଭଗବାନଙ୍କର ହିଁ କୃପାଳୁତା ଓ ଭକ୍ତ-ବତ୍ସଳତା ବର୍ଣ୍ଣିତ ହୋଇଥାଏ । ତେଣୁ ଦୁଇଟି ଶ୍ରବଣଯୋଗ୍ୟ ଚରିତ୍ର ହେଲା, ହରି କଥା ଅଥବା ହରିଦାସଙ୍କର କଥା । ଏ ଉଭୟର ପାରସ୍ପରିକ ଅନନ୍ୟ ସମ୍ବନ୍ଧ ରହିଛି ।

Digitized by srujanika@gmail.com

ଭକ୍ତବିନା ଯେଉଁଭଳି ଭଗବାନଙ୍କର ଚରିତ ନାହିଁ ସେଉଁଭଳି ଭଗବାନଙ୍କ ବିନା ଭକ୍ତର ନାହିଁ । ଅବତାର ଚରିତରେ ସେହିଭଳି ଭକ୍ତ ଏବଂ ଭଗବାନଙ୍କର କଥା ଗୁନ୍ଥି ହୋଇ ରହିଛି ।'

ନାରଦ ଧର୍ମରାଜ ଯୁଧିଷ୍ଠିରଙ୍କୁ କହୁଛନ୍ତି, "ରାଜନ୍, ମୁଁ ଆପଣଙ୍କୁ ପ୍ରହ୍ଲାଦଙ୍କର ଚରିତ ଶୁଣେଇଲି ! ଏଥିରେ ଭକ୍ତ ପ୍ରଧାନ ଏବଂ ମହତ୍ତ୍ୱପୂର୍ଣ୍ଣ । ତାହା ସହିତ ଆପଣାର କୁଟୁମ୍ବ ସ୍ୱଜନଙ୍କୁ ହିରଣ୍ୟକଶିପୁ ଯେଉଁ ଉପଦେଶ ଦେଇଛି ତାହା ମଧ୍ୟ ବର୍ଣ୍ଣିତ । ତା'ର ଘୋରତମ ତପସ୍ୟା ମଧ୍ୟ ବର୍ଣ୍ଣିତ ହୋଇଛି, ଯେଉଁ ତପସ୍ୟାରୁ ସେ ପ୍ରାପ୍ତ ହୋଇଥିଲା ବିଚିତ୍ର ବର । ତା'ର ଦିଗ୍‌ବିଜୟ ଏବଂ ତ୍ରିଲୋକରେ ଏକମାତ୍ର ଅଧୀଶ୍ୱର ହେବାର କଥା ମଧ୍ୟ ବର୍ଣ୍ଣିତ । ତଦନନ୍ତର ପରମ ଭାଗବତ ପ୍ରହ୍ଲାଦଙ୍କର ଶୀଳ ସ୍ୱଭାବର, ତାଙ୍କର ଭଗବତ୍ ଭକ୍ତିର, ଗୁରୁଗୃହରେ ଅଧ୍ୟୟନର ବିଷୟ, ପିତାଙ୍କୁ ଭଗବତ୍ ଗୁଣ କଥନ, ସେଥିରେ କ୍ରୁଦ୍ଧ ହୋଇ ହିରଣ୍ୟକଶିପୁ ତାଙ୍କୁ ନାନା ଯାତନା ଦେବାର ପ୍ରସଙ୍ଗ ବର୍ଣ୍ଣିତ ହୋଇଛି । ପୁନଶ୍ଚ ଗୁରୁପୁତ୍ରମାନଙ୍କର କଥନ ଅନୁସାରେ ଗୁରୁଗୃହକୁ ଯାଇ ପଢିବାର ଏବଂ ଦୈତ୍ୟ ବାଳକମାନଙ୍କୁ ଭଗବତ୍ ଭକ୍ତିର ଉପଦେଶ ଦେବା କଥା ମଧ୍ୟ କୁହାଯାଇଛି । ଏଥିରେ ପୁଣି ହିରଣ୍ୟକଶିପୁ କ୍ରୋଧକରି ତାଙ୍କୁ ତକେଲିବା ବୃତ୍ତାନ୍ତ ମଧ୍ୟ ରହିଛି ।

ପ୍ରହ୍ଲାଦଙ୍କ ଭକ୍ତି ହେତୁ ଭଗବାନଙ୍କର ସ୍ତମ୍ଭ ଚିରି ପ୍ରକଟିତ ହେବା, ଦୈତ୍ୟ ପ୍ରାପ୍ତ ହୋଇଥିବା ବରପ୍ରାପ୍ତିକର ରକ୍ଷାକରି ତା'ର ପେଟଚିରି ସଂହାର କରିଥିବା, ଦେବତାମାନଙ୍କର ସ୍ତୁତି, ପ୍ରହ୍ଲାଦଙ୍କ ପ୍ରତି ନୃସିଂହ ଭଗବାନଙ୍କର ଅନୁକମ୍ପା, ତାଙ୍କର ସ୍ତୁତିରେ ସନ୍ତୁଷ୍ଟ ହୋଇ ଭଗବାନ ବରଦାନ କରିବାକୁ ଆଗ୍ରହ ଏବଂ ଆପଣାର ଦ୍ୱେଷୀ ପିତାଙ୍କର ମୁକ୍ତି ପ୍ରାର୍ଥନା କରି ପ୍ରହ୍ଲାଦଙ୍କର ବରଭିକ୍ଷା ଆଦି ପ୍ରସଙ୍ଗର ମୁଁ ବର୍ଣ୍ଣନା କରି ସାରିଛି । ରାଜନ୍, ପ୍ରହ୍ଲାଦଙ୍କର ଭକ୍ତି ଏକ ପରମ ଦୁର୍ଲଭ ବସ୍ତୁ । ଦେଖନ୍ତୁ, ଭଗବାନ ତାଙ୍କ ଉପରେ କେତେ କୃପା କଲେ ।

ଏହା ଶୁଣି ଧର୍ମରାଜ ଯୁଧିଷ୍ଠିର କହିଲେ, "ପ୍ରଭୁ, ମହାଭାଗବତ ପ୍ରହ୍ଲାଦ ଅତ୍ୟନ୍ତ ଭାଗ୍ୟଶାଳୀ । ତାଙ୍କ ପ୍ରତି ଭଗବାନଙ୍କର ଅସୀମ କୃପା । ସେ ତାଙ୍କୁ କୋଳାଗ୍ରତ ପର୍ଯ୍ୟନ୍ତ କରି ସ୍ନେହ ଦେଇଚନ୍ତି ।

ଏହାଶୁଣି ନାରଦ ମୁରୁକି ହସିଲେ । କହିଲେ, "ରାଜନ୍, ଆପଣ ତ ପ୍ରହ୍ଲାଦଙ୍କର ଭାଗ୍ୟର ପ୍ରଶଂସା କରୁଛନ୍ତି ମାତ୍ର ନିଜ ବିଷୟରେ କିଛି କହୁନାହାନ୍ତି ?"

ଧର୍ମରାଜ ବେଦନାର୍ତ୍ତ କଣ୍ଠରେ କହିଲେ, "ପ୍ରଭୁ, ମୁଁ ମୋ କଥା କଣ କହିବି ? ମୋର ତ ଭଗବାନଙ୍କର ଚରଣରେ ଚିତ୍ତ ପର୍ଯ୍ୟନ୍ତ ସ୍ଥିର ରହି ନାହିଁ । ଏହି ରାଜକାର୍ଯ୍ୟ ଗୃହ, କୋଷ, ସେନା ଆଦିର ଚିନ୍ତାରେ ବୁଡ଼ି ରହିଛି ।"

Digitized by srujanika@gmail.com

ନାରଦ ଏହା ଶୁଣି ହସି ହସି କହିଲେ, "ରାଜନ୍, ଆପଣଙ୍କଠାରୁ ବଳି ଭାଗ୍ୟଶାଳୀ ଏ ସଂସାରରେ କିଏ ଅଛି ? ପ୍ରହ୍ଲାଦଙ୍କୁ ତ ଭଗବାନ ଅଧା ନର ଅଧା ସିଂହରୂପରେ ଅତ୍ୟନ୍ତ ଭୟଙ୍କର ଆକୃତିରେ ଦର୍ଶନ ଦେଲେ । ମାତ୍ର ଆପଣଙ୍କର ପକ୍ଷେ ପକ୍ଷେ ମନୋହର ନଟବର ବେଶରେ, ସମସ୍ତ ମାଧୁର୍ଯ୍ୟ ଓ ସୌନ୍ଦର୍ଯ୍ୟ ସହିତ ସାକାର ସ୍ୱରୂପରେ ସେ ଅଛନ୍ତି । ପ୍ରହ୍ଲାଦଙ୍କୁ ତ କ୍ଷଣମାତ୍ର ଦର୍ଶନ ଦେଇ ଚାଲିଗଲେ ମାତ୍ର ସେ ଆପଣଙ୍କ ଗୃହରେ ନିବାସ କରି ରହିଛନ୍ତି । ସେ ପ୍ରହ୍ଲାଦଙ୍କର ସ୍ୱାମୀ ଭାବରେ ପ୍ରକଟିତ ହୋଇଥିଲେ, ମାତ୍ର ଆପଣଙ୍କ ନିମନ୍ତେ ଶ୍ରୀକୃଷ୍ଣ ସୁହୃଦ୍, ସମ୍ବନ୍ଧୀ, ମନ୍ତ୍ରୀ, ସଖା, ସାରଥୀ, ଦୂତ, ସେବକ, ଭୃତ୍ୟ, ସ୍ୱାମୀ ଓ ସର୍ବସ୍ୱ ଅଟନ୍ତି । ଆପଣଙ୍କର ଶ୍ରେଷ୍ଠରୁ ଶ୍ରେଷ୍ଠ, ବଡ଼ରୁ ବଡ଼ କୌଣସି କାର୍ଯ୍ୟ କରିଦେବାକୁ ସେ କଦାପି ସଙ୍କୋଚ ବୋଧ କରନ୍ତି ନାହିଁ । ଆପଣ କହୁଛନ୍ତି ଆପଣଙ୍କର ନିରନ୍ତର ଗୃହଚିନ୍ତା ରହିଛି । ମାତ୍ର ଆପଣଙ୍କର ଘର ଏବେ ଘର ହୋଇ ରହିନାହିଁ । ହେ ପୃଥ୍ୱୀପତି, ତାହା ପ୍ରଭୁଙ୍କର ପାବନ ପାଦଚିହ୍ନ ପବିତ୍ର ତୀର୍ଥ ଭୂମି ହୋଇଯାଇଛି । ତାହା ହୋଇ ନଥିଲେ ଏତେ ବଡ଼ ବଡ଼ ଋଷି ମୁନି, ତ୍ୟାଗୀ ତପସ୍ୱୀ, ବୈରାଗୀ ଭଗବତ ଭକ୍ତ ଆପଣଙ୍କର ଗୃହରେ ସଦା ସର୍ବଦା ରହି ନ ଥାନ୍ତେ । କାହିଁକି ଏମାନେ ଆପଣଙ୍କ ଦ୍ୱାର ଦେଶରେ ଧୂନି ଜାଳି ବସି ରହନ୍ତେ ? ଏହା ପ୍ରଭୁ ପାଦପଦ୍ମର ପ୍ରଭାବ । ଯେଉଁ ମୁନିମାନଙ୍କର ଦର୍ଶନ ମାତ୍ରକେ ମନୁଷ୍ୟ କୃତାର୍ଥ ହୋଇଯାଏ, ସେହି ଋଷି ମୁନିମାନେ ଚତୁର୍ଦ୍ଦିଗରୁ ଆସି ଆପଣଙ୍କର ଗୃହରେ ଏକତ୍ରିତ ହେଉଛନ୍ତି, ଯେଉଁଭଳି ଚତୁର୍ଦ୍ଦିଗରୁ ନଦୀମାନେ ଆସି ସମୁଦ୍ରରେ ମିଳିତ ହୁଅନ୍ତି । ଆପଣଙ୍କର ଗୃହ ମୁକ୍ତିର କେନ୍ଦ୍ର । ଆପଣଙ୍କଠାରୁ ବଳି ଭାଗ୍ୟଶାଳୀ କିଏ ଏ ଜଗତରେ ଯେ ସର୍ବଦା ସାକାର ବ୍ରହ୍ମର ସାକ୍ଷାତକାର କରୁଛି ।

ଯୁଧିଷ୍ଠିର ପଚାରିଲେ, "ପ୍ରଭୁ, ବ୍ରହ୍ମର ତ କୌଣସି ଆକାର ନାହିଁ । ତାହା ନିର୍ଗୁଣ, ନିରାକାର, ନିର୍ଲେପ ଓ ନିରୀହ ।"

ନାରଦ କହିଲେ, "ରାଜନ୍, ଏହା ସତ୍ୟ । ବ୍ରହ୍ମ ନିର୍ଗୁଣ, ନିରାକାର, ନିର୍ଲେପ ଓ ନିରୀହ । ତଥାପି ମଧ୍ୟ ସେ ଭକ୍ତ ପ୍ରତି କୃପା କରି କରିଥାନ୍ତି । ନିର୍ଲେପରୁ ଭକ୍ତ କାର୍ଯ୍ୟରେ ଲିପ୍ତ ହୋଇ ପଡ଼ନ୍ତି, ନିରୀହରୁ ନାନାପ୍ରକାର ଚେଷ୍ଟାରତ ହେଉଥିବା ପ୍ରତୀତ ହୁଏ । ହେ ପୃଥ୍ୱୀପତି, ଏହିଁ ଯେ ଆପଣଙ୍କ ପାର୍ଶ୍ୱରେ ସାଙ୍ଗ ମାଙ୍ଗ ହୋଇ ବସିଛନ୍ତି, ସେହି ତ ସାକ୍ଷାତ ସାକାର ବ୍ରହ୍ମ । ଲକ୍ଷ ଲକ୍ଷ ବର୍ଷ ସମାଧିସ୍ଥ ହୋଇ ଯୋଗୀମାନେ ଏହାଙ୍କୁ ଖୋଜୁଥାନ୍ତି । ଏ ପରମାନନ୍ଦ ସ୍ୱରୂପ ଅଟନ୍ତି, ଉପାଧି ରହିତ, ସ୍ୱୟଂ ସାକ୍ଷାତ୍ ପରଂବ୍ରହ୍ମ ରୂପ । ଆପଣ ତାଙ୍କୁ ଆପଣଙ୍କର ମାତୁଳ ବସୁଦେବଙ୍କ ପୁତ୍ର ବୋଲି ଭାବୁଛନ୍ତି । ଆପଣ ଯାହାଙ୍କୁ ସର୍ବଶ୍ରେଷ୍ଠ ମନେକରି ସର୍ବପ୍ରଥମେ ପୂଜାକଲେ ସେହି ଜଗଦ୍‌ଗୁରୁ, ସବୁରି ଆତ୍ମା ପରଂବ୍ରହ୍ମ ଅଟନ୍ତି । ବର୍ତ୍ତମାନ କହନ୍ତୁ ଆପଣଙ୍କଠାରୁ ଅଧିକ ଭାଗ୍ୟଶାଳୀ କିଏ ଅଛି ?"

Digitized by srujanika@gmail.com

ଭଗବାନଙ୍କୁ ଅଶ୍ରୁ ସଜଳ ନେତ୍ରରେ ଅନାଇ ଗଦ୍‌ଗଦ୍‌ କଣ୍ଠରେ ପ୍ରେମପୂରିତ ସ୍ୱରରେ ଧର୍ମରାଜ କହିଲେ, "ଭଗବାନ, ମୁଁ ପ୍ରଭୁଙ୍କର ଯଥାର୍ଥ ରୂପ କ'ଣ ଜାଣେନାହିଁ । ଅଜ୍ଞାନତାବଶତଃ ମୁଁ ତାଙ୍କୁ ମୋର ସୁହୃଦ, ସମ୍ବନ୍ଧୀ, ପୂଜ୍ୟତମ ଗୁରୁ ମନେ କରୁଛି ।

ଏହା ଶୁଣି ଭକ୍ତ ଭାବରେ ନାରଦ କହିଲେ, "ରାଜନ୍‌, ଆପଣ ଯାହା ଭାବୁଚନ୍ତି ସେ ତାହା ହିଁ ଅଟନ୍ତି । ତା'ଠାରୁ ଅଧିକ ମଧ୍ୟ । ତା'ଠାରୁ କେତେ ଅଧିକ ତାହା ମୁଁ ସ୍ୱୟଂ ଜାଣେ ନାହିଁ । ମୁଁ କାହିଁକି, ସ୍ୱୟଂ ସାକ୍ଷାତ୍‌ ତ୍ରିପୁରାରି ଶଙ୍କର ମଧ୍ୟ ଜାଣନ୍ତି ନାହିଁ । ମୋର ପିତା ପଦ୍ମଯୋନି ବ୍ରହ୍ମାଙ୍କୁ ମଧ୍ୟ ତାହା ଅଗୋଚର । ରାଜନ୍‌, ଆମର ତ ଏଇ ବିଶ୍ୱେଶ୍ୱରଙ୍କର ଚରଣ-କମଳରେ ଏକମାତ୍ର ପ୍ରାର୍ଥନା ଯେ ଆମେ ଯାହା କିଛି ବି ଇନ୍ଦ୍ରିୟ ଦମନ, ମୌନ, ସ୍ୱାଧ୍ୟାୟ, ଜପ ତପ କରୁଛୁ ତାର ଫଳ କେବଳମାତ୍ର ଏହାହିଁ ହେଉ ଯେ ଭକ୍ତ ପ୍ରତିପାଳକ ପ୍ରଭୁ ଆମ ଉପରେ ପ୍ରସନ୍ନ ହୁଅନ୍ତୁ । ସେ ଯାହାଉପରେ ପ୍ରସନ୍ନ ହେବେ ତାର ସମସ୍ତ ଦୁଃଖ ଦୂର ହୋଇଯିବ । ମୟାସୁର ହେତୁ ସଂସାରର ସମସ୍ତ ପ୍ରାଣୀ ତଥା ଭଗବାନ ଶଙ୍କର ଚିନ୍ତିତ ଥିଲେ । ସେ ଏଭଳି ମୂର୍ତ୍ତି ଦେଲେ ଯେ ଭଗବାନ ରୁଦ୍ର ଦେବଙ୍କର ଖ୍ୟାତି ସର୍ବତ୍ର ବ୍ୟାପ୍ତ ହେଲା ଏବଂ ସେ ତ୍ରିପୁରାରି, ତ୍ରିପୁରାନ୍ତକ ଭାବରେ ପ୍ରସିଦ୍ଧ ହେଲେ ।

ଧର୍ମରାଜ କହିଲେ, "ଭଗବାନ, ଭଗବାନ ଶଙ୍କର ପ୍ରଭୁଙ୍କ କୃପାରୁ କେଉଁପରି ତ୍ରିପୁରାରି ନାମରେ ପ୍ରସିଦ୍ଧ ହେଲେ ? ମୁଁ ସେ କଥା ଶୁଣିବାକୁ ଚାହୁଁଛି, କୃପାକରି କହନ୍ତୁ ।"

ନାରଦ କହିଲେ, "ସାଧୁ ରାଜନ ସାଧୁ, ଶୁଣନ୍ତୁ ମୁଁ ବର୍ଣ୍ଣନା କରୁଛି ।"

## ଛପ୍‌ପୟ

ଅଜ, ଶିବ, ଋଷି, ମୁନି, ଇନ୍ଦ୍ରଭେଦ ଜିନକୋ ନହିଁ ପାବେଁ ।
ନେତି ନେତି କହି ଜିନ୍ହେ ବେଦ ମ୍ରିଦେଁ ତଉ ଗାବେଁ ॥
ଜପ ତପ ଜୋଗ ବିରାଗ କରେଁ ଜିନ ହିତ ମୁନି ସବ ତଜି ।
ହୋବେଁ ଖଲ ଅତି ବିମଲ ନାମ ଜସ ତସ ଜିନ କୋ ଭଜି ॥
ନିଜ କୈଙ୍କର୍ଯ କରାଇ କେଁ, କୃପାକରେଁ କରୁନାୟତନ ।
ଦୂର କରେଁ ଦୁଖ ଦରସ ଦେଁ, ସଫଲ କରେଁ ନିଜ ଜନ ନୟନ ॥

—*—

Digitized by srujanika@gmail.com

# ତ୍ରିପୁର ବିଜୟ ବୃତ୍ତାନ୍ତ

ଏବଂବିଧାନ୍ୟସ୍ୟ ହରେଃ ସ୍ୱମାୟୟା
ବିଡମ୍ବମାନସ୍ୟ ନୃଲୋକମାତ୍ମନଃ ।
ବୀର୍ଯ୍ୟାଣି ଗୀତାନ୍ୟୃଷିଭିର୍ଜଗଦ୍‌ଗୁରୋ-
ର୍ଲୋକାନ୍‌ପୁନାନାନ୍ୟପରଂ ବଦାମି କିମ୍ ॥

—ଶ୍ରୀ. ଭା. ୭ । ୧୦ । ୭୧

## ଛପ୍‌ପୟ

ରାଜନ ! ଜୀନ କର ତ୍ରିପୁର ନାଶ ଶିବ ଯଶ ବିସ୍ତାରୟୋ ।
ତ୍ରିପୁରାରୀ ଶିବ ଭୟୋ ଅସୁର ମାୟାସୁର ହାର୍‌ୟୋ ॥
କନକ ରଜତ ପୁର ଲୋହ ମୟାସୁର ତୀନ ବନାୟେ ।
ନଭ ମହଁ ଘୂମୈଁ ଗୁପ୍ତ ଦୈତ୍ୟ ଲଖି ଅତି ହରଷାୟେ ॥
ତବରେ ଦେବ ଶିବ ଢିଂଗ ଗୟେ, ପଶୁପତି ତାନ୍ୟୋ ନିଜ ଧନୁଷ ।
ହର ସର ତେଁ ମର ମର ଅସୁର, ଗିରତ ତୁରତ ପୁରତେଁ ନିକସ ॥

ଭଗବାନଙ୍କର ତିନୋଟି ରୂପ ଅଛି । ଯେତେବେଳେ ସେ ସୃଷ୍ଟି କରନ୍ତି ସେତେବେଳେ ବ୍ରହ୍ମା ବୋଲାନ୍ତି । ପାଳନ ସମୟରେ ବିଷ୍ଣୁ ଏବଂ ସଂହାର କାଳରେ ଶିବ । ତିନି ରୂପ ମଧ୍ୟରେ କୌଣସି ପ୍ରଭେଦ ନାହିଁ, କୌଣସି ଅନ୍ତର ନାହିଁ, ଶ୍ରେଷ୍ଠବଡ ନାହିଁ, ତଥାପି ମଧ୍ୟ ପ୍ରଭୁ ଲୀଳା ନିମନ୍ତେ ପୃଥକ ପୃଥକ ଅନେକ ରୂପରେ ବିଚିତ୍ର ବିଚିତ୍ର କ୍ରୀଡ଼ା କରିଥାନ୍ତି । କେତେବେଳେ ସ୍ୱୟଂ ଶିବଙ୍କୁ ଇଷ୍ଟ ମନେକରି ପୂଜା କରିଥାନ୍ତି । କେତେବେଳେ ଆପେ ଇଷ୍ଟ ହୋଇ ତାଙ୍କର ପୂଜା ଗ୍ରହଣ କରିଥାନ୍ତି । କେତେବେଳେ ଛଳ ନ କରିବାକୁ ଉପଦେଶ ଦିଅନ୍ତି । କେତେବେଳେ ସ୍ୱୟଂ ଛଳନାର ଆଶ୍ରୟନେଇ ଶତ୍ରୁ ସଂହାର କରନ୍ତି । ସେ ମାୟାବୀଙ୍କର

Digitized by srujanika@gmail.com

ବିଚିତ୍ର ମାୟା କିଏ ବୁଝିପାରିବ ? କିଏ ତା'ର କଳନା କରି ପାରିବ ? ତିନୋଟି ଯାକ ଯଦ୍ୟପି ତାଙ୍କର ହିଁ ରୂପ, କିନ୍ତୁ ବ୍ରହ୍ମା ରୂପ ସର୍ବଦା କାର୍ଯ୍ୟବ୍ୟସ୍ତ । ସୃଷ୍ଟି କରିବା ତାଙ୍କର କାମ । ଏ ସୃଷ୍ଟି ଯେପରି ହେଉ ବୃଦ୍ଧି ପ୍ରାପ୍ତ ହେଉ ଏହା ତାଙ୍କର ଅହୋରାତ୍ର ଚିନ୍ତା । ତ୍ରିପୁରାରି ତ ଭୋଳା ମଣିଷ । ତାଙ୍କୁ ଯେଉଁ ବର ମାଗ ସେ ଦେଇଦେବେ । ସେ ବି ହେଉ ବିନୟ ସହକାରେ ଯାଚଜ୍ଞା କଲେ 'ତୁ ଇଚ୍ଛା ମତେ ବର ମାଗ' ବୋଲି କହିଦେବେ । ଆଗପଛ କିଛି ବିଚାରିବେ ନାହିଁ । ତାହାର କେଉଁ ପରିଣାମ ହେବ ତାହା ମଧ୍ୟ ଭାବିବେ ନାହିଁ । ଅଦ୍ଭୁତ ଦାନୀ ସେ । ମାତ୍ର ଚତୁର୍ଭୁଜ ଭଗବାନ ନା ନା ବିଚିତ୍ର ମାୟାଧର । ତାଙ୍କର ମାୟା ଅପାର । ତାଙ୍କର ମତ୍ସ୍ୟ, କଚ୍ଛପ, ବରାହ, ନୃସିଂହ ରୂପ ଧାରଣ କରିବାରେ ସଂକୋଚ ଅଛି ନା ଅଳଙ୍କାର ଧାରଣକରି ଦିବ୍ୟ ନାରୀ ବେଶ ଧାରଣ କରିବାରେ ଲାଜ ଅଛି ? ସେ ଯେତେବେଳେ ଯେଉଁ ଅବସ୍ଥା ଦେଖନ୍ତି, ସେଭଳି ବ୍ୟବସ୍ଥା କରନ୍ତି । କେଉଁଠାରେ ଧର୍ମ ପାଇଁ ଷଣ୍ଢ ପାଲଟି ଯାଆନ୍ତି ତ କେଉଁଠାରେ ଗାଈ । ବହୁରୂପୀ କୃଷ୍ଣ ଯାହା ଉପରେ କୃପା କଲେ ତା'ର ମାୟା ବନ୍ଧନ ଆଉ କେଉଁପରି ରହିବ ? ଯେତେବେଳେ ମାୟାପତିଙ୍କର ଆଶ୍ରୟ ନେଇ ନେଲି, ସେତେବେଳେ ମାୟା ଯେତେ ସାଜ ମାଜ ହେଲେ ବି ଭକ୍ତଙ୍କର କ'ଣ କରି ପାରିବ ?"

ଧର୍ମରାଜ ଯୁଧିଷ୍ଠିର ପଚାରିଲେ, "ମୟାସୁର କେଉଁ କାରଣରୁ ଭଗବାନ ବିଶ୍ୱନାଥଙ୍କର କମନୀୟ କୀର୍ତ୍ତି ଦିଗଦିଗନ୍ତରେ ବ୍ୟାପ୍ତ କଲେ । ଏହା ଶୁଣି ନାରଦ କହିଲେ, "ରାଜନ୍, ଶୁଣନ୍ତୁ, ମୁଁ ଆପଣଙ୍କୁ ସେହି ମନୋହର କଥା ଶୁଣାଉଛି । ଆପଣ ତାହା ଦୃଢ଼ ଚିତ୍ତ ହୋଇ ଶ୍ରବଣ କରନ୍ତୁ ।"

"ମହାରାଜ, ଆପଣ ଜାଣନ୍ତି ଯେ ଏହି ଦେବତା ଏବଂ ଅସୁରମାନଙ୍କ ମଧ୍ୟରେ ସ୍ୱାଭାବିକ ବୈରଭାବ ରହିଛି । ବୃହସ୍ପତିଙ୍କ ଭଳି ବିଜ୍ଞାନୀ, ଜ୍ଞାନୀ, ଧ୍ୟାନୀ ଯାହାଙ୍କର ଗୁରୁ ସେହି ଦେବତାମାନେ ମଧ୍ୟ ଯେତେବେଳେ ବୈର ଭାବ ପରିତ୍ୟାଗ କରି ପାରିଲେ ନାହିଁ, ସେତେବେଳେ ମନେ କରିନେବାକୁ ହେବ ଯେ ସେମାନଙ୍କର ଏ ସ୍ୱଭାବ ଦୁସ୍ତ୍ୟଜ୍ୟ । ଭଗବାନ ମଧ୍ୟ ଅନେକ ବୁଝେଇଛନ୍ତି ଯେ ଏ ଲଢ଼େଇ ଝଗଡ଼ା ଭଲ ନୁହଁ । କିନ୍ତୁ କ'ଣ କରାଯିବ ? ସେଇ ଭଗବାନ ତ କେତେବେଳେ ସମସ୍ତଙ୍କୁ ଲଢାଉଛନ୍ତି, କେତେବେଳେ ଦେବତାମାନଙ୍କର ପକ୍ଷ ନେଇ ତାଙ୍କୁ ଜିଣେଇ ଦେଲେଣି ତ କେତେବେଳେ ଅସୁରମାନଙ୍କୁ ବଳ ପ୍ରଦାନକରି ଦେବତାମାନଙ୍କୁ ପରାସ୍ତ କଲେଣି । ଉଭୟଙ୍କୁ ସେଇ ମାୟାପତି ହିଁ ବଳ ପ୍ରଦାନ କରନ୍ତି । ହଁ, ଥରେ ଦେବତାମାନଙ୍କର ଓ ଅସୁରମାନଙ୍କ ମଧ୍ୟରେ ଭୀଷଣ ଯୁଦ୍ଧ ହେଲା । ଦୈତ୍ୟମାନେ ଅତ୍ୟନ୍ତ ଉତ୍ସାହ ସହକାରେ ଦେବତାମାନଙ୍କ ସାଙ୍ଗରେ ଯୁଦ୍ଧ କଲେ । ମାତ୍ର କାଳ ସେମାନଙ୍କର ଅନୁକୂଳ ନଥିଲା । ସେମାନେ ଦେବତାମାନଙ୍କ ଦ୍ୱାରା ପରାସ୍ତ ହେଲେ । ଯୁଦ୍ଧରେ ହାରିଯାଇ ସେମାନେ ପଳାୟନ କଲେ । ବିଜୟଶ୍ରୀ ଦେବତା-

Digitized by srujanika@gmail.com

ମାନଙ୍କୁ ବରଣ କଲା । ଯୁଦ୍ଧରେ ପରାସ୍ତ ହୋଇଥିବା ଦୈତ୍ୟମାନେ ଅତ୍ୟନ୍ତ ଦୁଃଖିତ ହେଲେ । ସେମାନେ ଦେବତାମାନଙ୍କୁ ମାରିବାକୁ ନାନା ଉପାୟ ଚିନ୍ତାକଲେ । ସେ ସମୟରେ ମୟ ନାମକ ଏକ ରାକ୍ଷସ ଈଶ୍ୱରଙ୍କର ଆରାଧନା କରି ଅନେକ ପ୍ରକାର ମାୟା ରଚନା କରିବାକୁ ସାମର୍ଥ୍ୟର ବରପ୍ରାପ୍ତ ହୋଇଥିଲା । ସେ ମାୟା ରଚନା କରିବାରେ ଅତ୍ୟନ୍ତ ପ୍ରବୀଣ ଥିଲା । ସମସ୍ତ ମୁଖ୍ୟ ମୁଖ୍ୟ ରାକ୍ଷସମାନେ ଏକାସାଙ୍ଗରେ ମୟାସୁର ନିକଟକୁ ଗଲେ ।

ପ୍ରଧାନ ପ୍ରଧାନ ଅସୁରମାନଙ୍କୁ ନିଜ ସମୀପରେ ଉପସ୍ଥିତ ହୋଇଥିବା ଦେଖି ମୟାସୁର ସେମାନଙ୍କର ସ୍ୱାଗତ ସତ୍କାର କଲା । ନମ୍ରତା ସହକାରେ କହିଲା, "ସମ୍ମାନୀୟ ଅସୁରମାନେ, ଆପଣମାନେ ଧନ ପଦ ଓ ପ୍ରତିଷ୍ଠା ଆଦିରେ ଜ୍ୟେଷ୍ଠ ଓ ଶ୍ରେଷ୍ଠ । ଆପଣମାନେ ଏ ଦୀନ ପ୍ରତି କୃପା କଲେ । ମୋର ଯୋଗ୍ୟ ଆପଣଙ୍କର କ'ଣ ସେବା ଅଛି କହନ୍ତୁ ।"

ଅସୁରମାନେ କହିଲେ, "ଆପଣ ଶିଳ୍ପ ବିଦ୍ୟାରେ ବିଶ୍ୱକର୍ମାଙ୍କ ଠାରୁ ମଧ୍ୟ ବଡ଼ । ମାୟା ରଚନାରେ ନ ଆପଣଙ୍କ ସଦୃଶ ଆଉ କେହି ନାହିଁ । ମାତ୍ର ଆପଣଙ୍କର ମାୟା ହେତୁ ଆମର କଣ ଲାଭ ହେଉଛି ? ଯେଉଁ ବିଦ୍ୟା ଦ୍ୱାରା କୁଳ, ପରିବାର, ଜ୍ଞାତି ବନ୍ଧୁମାନଙ୍କର ଉତ୍କର୍ଷ ସାଧିତ ହେବ ନାହିଁ, ସେ ବିଦ୍ୟାଦ୍ୱାରା କି ଲାଭ ମିଳିବ ?"

ମୟାସୁର କହିଲା, "ହେ ଅସୁରଗଣ, ଆପଣମାନେ ଆଜ୍ଞା ଦିଅନ୍ତୁ । କହନ୍ତୁ ଆପଣମାନଙ୍କର କ'ଣ ଅସୁବିଧା ହେଉଛି ମୁଁ ଜାଣିବାକୁ ଚାହୁଁଛି ।"

ଏହାଶୁଣି ଅସୁରମାନେ କହିଲେ, "ଦେଖନ୍ତୁ, ଏ ଦେବତାମାନେ ସର୍ବଦା ଆମକୁ ପରାସ୍ତ କରୁଛନ୍ତି । ସେଭଳି କୌଣସି ଏକ ଉପାୟ ଚିନ୍ତା କରନ୍ତୁ, ଯେଭଳି ଆମେ ସେମାନଙ୍କୁ ପ୍ରହାର କରିବୁ, ମାତ୍ର ସେମାନେ ଆମକୁ ପ୍ରହାର କରିପାରିବେ ନାହିଁ ।"

ଏହା ଶୁଣି ମୟାସୁର କହିଲା, "ଆପଣମାନେ ନିଶ୍ଚିନ୍ତ ହୁଅନ୍ତୁ । ମୋର ଆଉଁ ଆଉଁ ଆପଣମାନଙ୍କୁ କେହିହେଲେ ପ୍ରହାର କରି ପାରିବ ନାହିଁ କିମ୍ବା ଆପଣମାନଙ୍କୁ ପରାସ୍ତ କରିପାରିବ ନାହିଁ ।"

ନାରଦ କହୁଛନ୍ତି, "ରାଜନ୍, ଏହାଶୁଣି ମାୟାବୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ମୟାସୁର ତିନୋଟି ଅଦ୍ଭୁତ ପୁର ନିର୍ମାଣ କଲା, ସେମାନଙ୍କ ମଧ୍ୟରେ ଗୋଟିଏ ସୁବର୍ଣ୍ଣ ପୁର ମଧ୍ୟ ଥିଲା । ଅନ୍ୟଟି ରୌପ୍ୟ ଏବଂ ଗୋଟିଏ ଲୌହପୁର । ତିନୋଟି ଯାକ ସୁଦୃଢ଼ ଏବଂ ସୁନ୍ଦର ଢଙ୍ଗରେ ନିର୍ମିତ ହୋଇଥିଲେ । ତିନୋଟି ଯାକ ପୁର ମଧ୍ୟରେ ଯୁଦ୍ଧ ଉପଯୋଗୀ ସମସ୍ତ ପ୍ରକାର ଅସ୍ତ୍ର ଶସ୍ତ୍ର ସାଇତା ହୋଇ ରହିଥିଲା । ସେହି ପୁରମାନେ ଆକାଶରେ ଉଡ଼ି ରହିଥିଲେ ।

Digitized by srujanika@gmail.com

ଏବଂ କାହାକୁ ହେଲେ ଦୃଶ୍ୟ ହେଉ ନଥିଲେ । ସେମାନଙ୍କର ଗମନାଗମନ ମଧ୍ୟ ଗୁପ୍ତ ଥିଲା । ତା'ର ମଧ୍ୟରେ ଲୁଚି ରହିଥିବା ଅସୁର ସେନାପତିମାନେ ଇନ୍ଦ୍ର, ବରୁଣ, ଯମ, କୁବେର ଆଦି ଲୋକପାଳ ମାନଙ୍କର ପୁରମାନଙ୍କୁ ଯାଇ ଅସ୍ତ୍ର ବର୍ଷାକରି ପଳେଇ ଯାଉଥିଲେ । ଦେବତାମାନଙ୍କୁ ଦେଖାଗଲେ ଯିନା ସେମାନେ ପ୍ରତିରୋଧ କରିବେ । ମଯ଼ର ଏହି ଗୁପ୍ତ ଲଢ଼େଇ ହେତୁ ଦେବତାମାନେ ଅତ୍ୟନ୍ତ ଦୁଃଖୀ ହେଲେ ।

ସମସ୍ତେ ମିଶି ସଭା କଲେ । ସେହି ସଭାରେ ଅନେକ କାଳ ପର୍ଯ୍ୟନ୍ତ ଏହି ବିଷୟ ଉପରେ ଆଲୋଚନା ପ୍ରତି-ଆଲୋଚନା ହେଲା । ଏଭଳି ପରିସ୍ଥିତିରେ କଣ କରାଯାଇ ପାରିବ । କେହି ପରାମର୍ଶ ଦେଲେ, ବ୍ରହ୍ମାଙ୍କ ନିକଟକୁ ଯିବା ଉଚିତ ହେବ । ଏହାଶୁଣି କୁବେର କହିଲେ,"ଦେଖ ଭାଇ, ବ୍ରହ୍ମାଙ୍କ ନିମନ୍ତେ ଯେଭଳି ଦେବତାମାନେ ସେହିପରି ଅସୁରମାନେ । ଉଭୟ ତାଙ୍କର ପୌତ୍ର । ସେ ଯୁଦ୍ଧ ମଧ୍ୟ କରନ୍ତି ନାହିଁ । ମୁଁ କହିବି, ଆମେମାନେ ଦେବାଧିଦେବ ମହାଦେବଙ୍କ ନିକଟକୁ ଯିବା ଉଚିତ । ସେ ଦେବତାମାନଙ୍କର ପକ୍ଷ ଗ୍ରହଣ କରିବେ । ମୋ ଉପରେ ତାଙ୍କର ଅନେକ କୃପା । ମୁଁ ଅଯୋଗ୍ୟ ହୋଇଥିଲେ ହେଁ ସେ ମୋତେ ତାଙ୍କର ମିତ୍ର ବୋଲି ମନେ କରନ୍ତି ।"

ଏ କଥା ସମସ୍ତେ ସହର୍ଷ ସ୍ୱୀକାର କଲେ । ସମସ୍ତ ଦେବଗଣ କୈଳାସପତି ଭଗବାନ ଭବାନୀନାଥଙ୍କ ଦର୍ଶନନିମନ୍ତେ କୈଳାସରେ ପହଞ୍ଚିଲେ । ଭଗବାନ ଶମ୍ଭୁ ବଟବୃକ୍ଷ ତଳେ ସନକାଦି ସିଦ୍ଧମାନଙ୍କୁ ବ୍ରହ୍ମଜ୍ଞାନର ଉପଦେଶ ଦେଉଥିଲେ । ଦେବତାମାନେ ପହଞ୍ଚି ମହାଦେବଙ୍କର ବିଧିବତ୍ ପୂଜା ଅର୍ଚ୍ଚନା କରି ତାଙ୍କର ସ୍ତୁତି କଲେ । ଶଙ୍କର ପ୍ରସନ୍ନ ହୋଇ ପଚାରିଲେ, "ଦେବଗଣ, ତୁମେମାନେ ଆଜି କେଉଁ କାରଣରୁ ମୋ ନିକଟକୁ ଆସିଛ ? ତୁମେମାନେ ଏତେ ଭୟଭୀତ ହେଉଛ କାହିଁକି ? କେଉଁ ଅଭିପ୍ରାୟରେ ତୁମେମାନେ ମୋର ଏଭଳି ସ୍ତୁତିପାଠ କରୁଛ ? ତୁମେମାନେ ମୋତେ ତୁମର ଦୁଃଖର କାରଣ କୁହ । ମୋ ନିକଟରେ ଉପସ୍ଥିତ ହେବାକ୍ଷଣି ତୁମର ଦୁଃଖର ଅନ୍ତ ହେଲା ବୋଲି ମନେକର ।"

ଶିବଙ୍କର ଏଭଳି ଆଶ୍ୱାସନା ପୂର୍ଣ୍ଣ କଥା ଶୁଣି ଦେବତାମାନେ ଅତ୍ୟନ୍ତ ପ୍ରସନ୍ନ ହେଲେ । କହିଲେ, "ପ୍ରଭୁ, ଆପଣ ଆମମାନଙ୍କର ସ୍ୱାମୀ, ରକ୍ଷକ ଏବଂ ଭୟତ୍ରାତା । ଆପଣଙ୍କର ଆଶ୍ରୟ ଲାଭ କରି ଆମ୍ଭେମାନେ ସର୍ବଦା ରାକ୍ଷସମାନଙ୍କୁ ପରାସ୍ତ କରି ଆସିଛୁ । ମାତ୍ର ଦୀନନାଥ, ଏଇନେ ଅସୁରମାନେ ବିଚିତ୍ର ମାୟା ରଚନା କରୁଛନ୍ତି । ଏବେ କେଜାଣି ଆକାଶମାର୍ଗରେ କେଉଁଠାରେ ଲୁଚିରହି ଅସ୍ତ୍ର ବର୍ଷା କରୁଛି । ସେମାନଙ୍କର ଅସ୍ତ୍ରଶସ୍ତ୍ର ଆମର ପ୍ରଭୂତ କ୍ଷତି ସାଧନ କରୁଛି । ମାତ୍ର ଆମେମାନେ ସେମାନଙ୍କୁ ଦେଖି ପାରୁ ନଥିବା ହେତୁ ପ୍ରହାର କରି ପାରୁନାହୁଁ ଏବଂ ଆମର ଅନେକ ହାନି ହେଉଛି । ସେହି ସଙ୍କଟରୁ ଆମମାନଙ୍କୁ ରକ୍ଷାକରନ୍ତୁ ।"

Digitized by srujanika@gmail.com

ଦେବତାମାନଙ୍କର ଏ ଦୀନହୀନତା ପରିପୂର୍ଣ୍ଣ କଥା ଶୁଣି ଦୀନଦୟାଳୁ ଶ୍ରୀସଦାଶିବ ସେମାନଙ୍କୁ ପ୍ରବୋଧନା ଦେଇ ନିର୍ଭୟ ବାକ୍ୟ କହିଲେ, "ଦେବଗଣ, ଡରିବାର କୌଣସି କାରଣନାହିଁ । ମୁଁ ମୟାସୁରର ତ୍ରିପୁର ବିନାଶ କରିବି । ତୁମେମାନେ କୌଣସି ପ୍ରକାର ଚିନ୍ତା କରନାହିଁ ।"

ଏହା କହି କାମାରି କୈଳାସନାଥ ଦିବ୍ୟ ଧନୁ ଉଠେଇ ପାଶୁପତାସ୍ତ୍ର ଅଭିମନ୍ତ୍ରିତ କରି ତ୍ରିପୁର ବିନାଶ କରିବା ଉଦ୍ଦେଶ୍ୟରେ ଆକାଶରେ ସନ୍ଧାନ କଲାମାତ୍ରକେ ତାହା ଅନେକରେ ରୂପାନ୍ତରିତ ହେଲା, ଯେପରି ସୂର୍ଯ୍ୟଙ୍କର ଅନେକ କିରଣ ବିଚ୍ଛୁରିତ ହୋଇଯାଏ । ସେହି ବାଣମାନେ ଅସୁରମାନଙ୍କର ଅଙ୍ଗ ସ୍ପର୍ଶ କରନ୍ତେ ସେମାନେ ପକ୍ୱ-ଫଳ ସଦୃଶ ନିଷ୍ପ୍ରାଣ ହୋଇ ଭୂପତିତ ହେଲେ ।

ମୟାସୁର ଦେଖିଲା, ଶିବ ତ ତା'ର ସବୁ ମାୟା ବ୍ୟର୍ଥ କରିଦେଲେ । ତେବେ ସେ ପ୍ରଥମରୁ ବୁଦ୍ଧିମାନ୍ । ସେ ପ୍ରଥମରୁ ଗୋଟିଏ ପୁରରେ ଅମୃତ କୂପର ରଚନା କରିଥିଲା । ଯେଉଁ ଦୈତ୍ୟ ମରୁଥିଲା ତାକୁ ଉଠେଇ ଅମୃତ କୂପରେ ପକେଇ ଦେଉଥିଲା । ଅମୃତର ସ୍ପର୍ଶ ଲାଭ କରନ୍ତେ ସେ ତତ୍କ୍ଷଣାତ୍ ଜୀବନ୍ତ ହୋଇ ଉଠୁଥିଲା । ଏହିଭଳି ଭାବରେ ଅସୁରମାନଙ୍କର ଶେଷ ହିଁ ହେଉନାହିଁ । ଶିବ ଥରେ ଦେଖିଲେ, ଦିଥର ଦେଖିଲେ । ଭାରି ଦ୍ୱନ୍ଦରେ ପଡ଼ିଲେ । ଏବେନେ ତ ଏଇ ରାକ୍ଷସମାନେ ମରି ପଡ଼ିଥିଲେ । ହଠାତ୍ ପୁଣି କିପରି ଜୀବନ୍ତ ହୋଇ ଉଠିଲେ । ପୁଣି ଭାବିଲେ ହୋଇପାରେ ଗୋଟାଏ ପ୍ରକାର ଆକୃତି ସମ୍ପନ୍ନ ହୋଇଥିବା ହେତୁ ମୋର ଭ୍ରମ ହେଉଛି । ତା'ପରେ ସେ ପୁଣି ସହସ୍ର ସହସ୍ର ରାକ୍ଷସ ସଂହାର କଲେ । ପରକ୍ଷଣରେ ସେମାନେ ପୁଣି ସେହି ସିଦ୍ଧ ଅମୃତର ସ୍ପର୍ଶରେ ବଜ୍ରବତ୍ ସୁଦୃଢ଼ ଶରୀରବନ୍ତ ହୋଇ ତାଙ୍କର ସମ୍ମୁଖରେ ଉଭାହେଲେ । ସେମାନେ ଆକାଶରେ ଏହିଭଳି ଚମକୁଥିଲେ ଯେଉଁଭଳି ମେଘମାଳା ମଧ୍ୟରେ ବିଦ୍ୟୁତ୍‌ପୁଞ୍ଜ । ଶିବ ଭାବିନେଲେ କିଛି ନା କିଛି ଏଥିରେ ରହସ୍ୟ ଅଛି ଏବଂ ସେ ଧ୍ୟାନସ୍ଥ ହୋଇ ଚିନ୍ତା କଲାରୁ ଜାଣିଗଲେ, ଏହା ସେହି ଅମୃତ କୂପର ଫଳ । ତା'ପରେ ଭଗବାନ ଶିବ ଆଉ କରିବେ ବା କ'ଣ ? ସେ ଅତ୍ୟନ୍ତ ଚିନ୍ତିତ ହୋଇପଡ଼ିଲେ । ଦେବତାମାନେ ମଧ୍ୟ ପରସ୍ପର ମଧ୍ୟରେ କୁହାକୁହି ହେଲେ । ବିଚାର ବିମର୍ଶ କଲେ । କିଏ କହିଲା ଶିବ ତ କେବେ ହେଲେ ପରାଜିତ ହୋଇ ନଥିଲେ । ଏ ଅସୁରଙ୍କ ମାୟା ହେତୁ ସେ ମଧ୍ୟ ଭଗ୍ନ ସଂକଳ୍ପ ମନେ ହେଉଛନ୍ତି । ଶିବ ମଧ୍ୟ ସଂକୋଚରେ କୌଣସି କଥା କହିଲେ ନାହିଁ । ନିରନ୍ତର ଶର ବର୍ଷା କରି ଚାଲିଥିଲେ । ମାତ୍ର ତାଙ୍କର ତୀର ଗୁଡ଼ିକ ଲକ୍ଷ ଭେଦ କରୁଥିଲେ ହେଁ ନିରର୍ଥକ ହେଉଥିଲେ । ତାପରେ ମହାଦେବ ମନେମନେ ମାୟା ମହେଶ୍ୱର ଭଗବାନ୍ ବାସୁଦେବଙ୍କର ସ୍ମରଣ କରିବାକୁ ଲାଗିଲେ । ହରିସ୍ମୃତି ସର୍ବଦା ସର୍ବ-ବିପଦ-ବିମୋକ୍ଷଣୀ ହୋଇଥାଏ । ବିଷ୍ଣୁ ତୁରନ୍ତ ବ୍ରହ୍ମାଙ୍କୁ ଡାକି କହିଲେ, "ବ୍ରହ୍ମା ! ମୁଁ ଗାଈ ହେବି ।"

Digitized by srujanika@gmail.com

ବ୍ରହ୍ମା କହିଲେ, "ଭଗବାନ ଗାଈ କାହିଁକି ହେବେ ? ଏହା ଆପଣଙ୍କର ଅନୁରୂପ ନୁହେଁ । ଗୋବେଶ ତ ଅଚଳା ପୃଥ୍ୱୀ ଧାରଣ କରେ । ଯଦି ରୂପ ଧାରଣ କରିବାକୁ ଇଚ୍ଛା କରନ୍ତି ତା'ହେଲେ ଷଣ୍ଢ ହୁଅନ୍ତୁ ।"

ଭଗବାନ କହିଲେ, "ନା' ସବୁଏଁ ତ ମୋର ଅନୁରୂପ । ଯେଉଁ ରୂପ ଆମେ ଧାରଣ କରିଥାଉଁ, ତାହାହିଁ ଉଚିତ । ସ୍ତ୍ରୀ ପୁରୁଷ, ପଶୁପକ୍ଷୀ ସବୁ ମୋର ରୂପ !"

ବ୍ରହ୍ମା ଦହିଲେ, "ଯାହା ଆପଣଙ୍କର ଇଚ୍ଛା । ତା'ପରେ ମୋତେ କଣ ଆଜ୍ଞା କରୁଛନ୍ତି ?"

ଭଗବାନ କହିଲେ, "ତୁମେ ବାଛୁରୀ ହେବ !" ବ୍ରହ୍ମା ହସି ହସି କହିଲେ, "ଭଗବାନ, ମୁଁ ତ ଆପଣଙ୍କର ବାଛୁରୀ । ଆପଣଙ୍କର ଯା' ଇଚ୍ଛା ତାହା କରନ୍ତୁ ମୋର କ'ଣ ଆପତ୍ତି ଅଛି ?"

ଭଗବାନ କହିଲେ, "ଠିକ୍ ଅଛି । ଚଞ୍ଚଳ କର । ଶିବ ଅନେକ ବିବ୍ରତ ହେଲେଣି । ତାଙ୍କର ଚିତ୍ତ ଉଦ୍‌ବିଗ୍ନ ହେଉଛି । ଏହାକହି ଭଗବାନ ଶୀଘ୍ର ଏକ ସୁନ୍ଦର ଗାଈ ପାଲଟି ଗଲେ । ବ୍ରହ୍ମାଙ୍କ ବାଛୁରୀ ହେବାକୁ ପଡ଼ିଲା । ତାପରେ ସେମାନେ ଆପଣାର ମାୟା ବଳରେ ମୟାସୁରର ସେହି ପୁରରେ ଉପସ୍ଥିତ ହେଲେ, ଯେଉଁଠାରେ ଅମୃତର ସର ସଦୃଶ ବିଶାଳ କୂପ ରହିଥିଲା । ଦୈତ୍ୟମାନେ ଦେଖିଲେ ଏଡ଼େ ସୁନ୍ଦର ଗାଈଟିଏ କୁଆଡୁ ଆସିଲା । ଗାଈ ତୃଷାର୍ତ୍ତ ମନେ ହେଉଥିଲା । ସେ ତା'ର ମନ୍ଦମନ୍ଦ ମନ୍ଥର ଗତିରେ ଅମୃତ କୁଣ୍ଡ ଆଡ଼କୁ ଆଗେଇ ଯାଉଥିଲା । ତା'ର ବାଛୁରୀଟି ମଧ୍ୟ ନାଚ ନାଚ ତା' ପଛେ ପଛେ ଯାଉଥିଲା । ଗାଈଟି ଯାଇ ଅମୃତ କୁଣ୍ଡରେ ମୁହଁ ପୂରେଇଲା । ଲୁଚ ରହି ନୁହେଁ । ସବୁର ଆଖି ସାମନାରେ ସେ ଦୁହେଁ ଅମୃତ ପାନ କରିବାକୁ ଲାଗିଲେ । ପାଣି ପିଉଥିବା ଗାଈକୁ ବାରଣ କରିବା ମହାପାପ । ଭଗବାନଙ୍କର ମାୟାହେତୁ ଅସୁରମାନେ ଶ୍ରୀହରିଙ୍କର ଯଥାର୍ଥ ରୂପ ବୁଝି ପାରିଲେ ନାହିଁ । ସମସ୍ତେ କହିଲେ, "ପିଉ ପିଉ । ଶୋଷ ହେଉଥିବ ଗାଈକୁ । ହେଲେ ସେମାନଙ୍କୁ ଜଣା ନଥିଲା ଯେ ଏ ଗାଈ ସାଧାରଣ ଗାଈଟିଏ ନୁହେଁ । ମୁହଁ ପୁରେଇ ପାନ କରିବା ମାତ୍ରକେ ସେ ସବୁକିଛି ଉଦରସ୍ଥ କରିଦେଲା । ବିନ୍ଦୁଏ ମାତ୍ର ଅମୃତ ସେ କୁଣ୍ଡରେ ରହିଲା ନାହିଁ । ହେତେବେଳେ ମୟାସୁର ଆସି ଉପସ୍ଥିତ ହୋଇ ପାଟି କଲା, "ଆରେ, କ'ଣ କଲ ତୁମେମାନେ ?"

ରକ୍ଷକ ଅସୁରମାନେ ହାତ ଯୋଡ଼ି କହିଲେ, "ପ୍ରଭୁ, ଗାଈ ତୃଷାର୍ତ୍ତ ଥିଲା । ଆମେ ଭାବିଲୁ ତାକୁ ବାରଣ କରିବା ଉଚିତ ହେବ ନାହିଁ । ସେ ପିଇ ପିଇ ବା କେତେ ପିଇ ଦେବ ?"

Digitized by srujanika@gmail.com

ହସି ହସି ମୟାସୁର କହିଲା, "ଆରେ, ଏ ସାଧାରଣ ଗାଈ ନୁହେଁ । ଏ ଅମୃତ କୁଣ୍ଡର କଥା ଗୁଡ଼ । ଏ ସମ୍ପୂର୍ଣ୍ଣ ବିଶ୍ୱ ବ୍ରହ୍ମାଣ୍ଡକୁ ପିଇ ଯିବ । ସମସ୍ତଙ୍କୁ ଆପଣା ଉଦରରେ ରଖିନେଇ ପାରିବ ।"

ଅତ୍ୟନ୍ତ ଦୁଃଖିତ ହୋଇ ରାକ୍ଷସମାନେ ରହିଲେ, "ବର୍ତ୍ତମାନ କ'ଣ କରାଯିବ ?"

ସୁଖ ଦୁଃଖରେ ସମଦର୍ଶୀ ମହାଯୋଗୀ ମୟ କହିଲା, "ଏଥିରେ ଦୁଃଖ କରି ଲାଭ ନାହିଁ । ଭଗବାନଙ୍କର ବିଧାନ ଅନ୍ୟଥା କରିବାର ସାମର୍ଥ୍ୟ କା'ର ଅଛି ? ସେ ପ୍ରଭୁ ଯାହା କରିବାକୁ ଇଚ୍ଛା କରଥାନ୍ତି ତାହା ହିଁ ହୋଇଥାଏ । ଜୀବ ଆପଣାକୁ ସୁରକ୍ଷିତ ଓ ଅଜର କରିବାକୁ ପ୍ରୟାସ କରେ ମାତ୍ର ଜୀବର ବିଧାନ ସଫଳ ହୁଏ ନାହିଁ । ଭଗବାନ ଯାହା କରିବାକୁ ଇଚ୍ଛା କରନ୍ତି ତାହାହିଁ ହୋଇଥାଏ । ତାଙ୍କର ବିଧାନ ଅନ୍ୟଥା କରିବାର ଶକ୍ତି କାହା ପାଖରେ ଅଛି? "

ଏହା ଶୁଣି ଦୈତ୍ୟମାନେ କହିଲେ, "ଆପଣ ତ ଅତ୍ୟନ୍ତ ମାୟାବୀ, ଆପଣଙ୍କର ମାୟାରେ ଆପଣ ଏଭଳି ଅନେକ ଅମୃତ କୂପ ନିର୍ମାଣ କରି ପାରିବେ । ଆହୁରି କୌଣସି ଉତ୍ତମ ଉପାୟ କରି ପାରିବେ ।"

ମୟ କହିଲା, "ହେ ରାକ୍ଷସଗଣ, ତୁମେମାନେ ଯାହା କହୁଛ ତାହା ସତ୍ୟ । ମାତ୍ର ହରି ମୋଠାରୁ ମଧ୍ୟ ମାୟାରେ ଶ୍ରେଷ୍ଠ । ସେତ ମାୟାର ସ୍ୱାମୀ । ମୁଁ ତ 'ମାୟା-ସମୁଦ୍ରର ବିନ୍ଦୁଏ ମାତ୍ର ଜାଣିଛି । ଯେପରି ଏକାର୍ଣ୍ଣବ ସମୁଦ୍ରରେ ବିନ୍ଦୁଟିଏ । ମୋ ଲାଗି, ଅନ୍ୟପାଇଁ, କିମ୍ବା ଉଭୟଙ୍କ ନିମନ୍ତେ ସେ ବିଧାନ ଯେପରି କରିବେ ତାକୁ ବ୍ୟର୍ଥ କରିବାର ସାମର୍ଥ୍ୟ ମୋର ନାହିଁ । କୌଣସି ଅନ୍ୟ ଅସୁରର ମଧ୍ୟ ନାହିଁ । ଦେବତାମାନଙ୍କର, ଏଭଳିକି ସ୍ୱୟଂ ବ୍ରହ୍ମାଙ୍କର ମଧ୍ୟ ନାହିଁ । ତାହାହେଲେ ଯକ୍ଷ, ଗନ୍ଧର୍ବ, ମନୁଷ୍ୟ ପଶୁପକ୍ଷୀ ଆଦି ଜୀବମାନଙ୍କ ବିଷୟରେ କାହିଁକି ଭାବିବା ?"

ଶ୍ରୀ ନାରଦ କହୁଛନ୍ତି "ରାଜନ୍, ଏଭଳି କହି ଦୈବଗତିକୁ ହିଁ ପ୍ରଧାନ ମନେକରି ମୟାସୁର ଶୋକ କଲା ନାହିଁ । ସେ ଭଗବାନଙ୍କ ବିଧାନ ବୁଝି ଉଦାସୀନ ହୋଇଗଲା । ତାପରେ ଅସୁରମାନେ ନିରୁପାୟ ହୋଇଗଲେ । ତଥାପି ମଧ୍ୟ ପଳାୟନ କଲେ ନାହିଁ । ସେମାନେ ସମସ୍ତେ ଶିବଙ୍କ ସହିତ ଯୁଦ୍ଧ କରିବାକୁ ପ୍ରସ୍ତୁତ ହେବାକୁ ଲାଗିଲେ ।

Digitized by srujanika@gmail.com

## ଛପ୍‌ପୟ

ମରେଁ ଅସୁର ଜେ ତନ୍ତ୍ରେ ବେଗି ମୟାସୁର ଲବୈ ।
ଅମୃତ କୁଣ୍ଡ ମହଁ ତାର ସବନ୍ନ କୁଁ ତୁରତ ଜିବାବେ ॥
ତ୍ରିପୁରାରୀ ମୟ ସିଦ୍ଧି ନିରଖି ଅତିଶୟ ଘବରାୟେ ।
ମାୟାପତି କି ଶରନ ଶମ୍ଭୁ ମନହି ମନ ଆୟେ ॥
କାମଧେନୁ ଶ୍ରୀହରି ବନେ, ବିଧି ବନାଇ ବଛରା ଲୟେ ।
ଅମୃତ କୁଣ୍ଡକେ ଜାଇ ଡିଁଙ୍ଗ, ପାନ ଅମୃତ ସବ କରି ଗୟେ ॥



# ଶିବଙ୍କଦ୍ୱାରା ତ୍ରିପୁର ଦାହ

ଧର୍ମଜ୍ଞାନବିରକ୍ତ୍ୟଦ୍ଧିତପୋବିଦ୍ୟାକ୍ରିୟାଦିଭିଃ ।
ରଥଂ ସୂତଂ ଧ୍ୱଜଂ ବାହ୍ନ ଧନୁର୍ବର୍ମ ଶରାଦିଯତ୍ ॥
ସନ୍ନଦ୍ଧୋ ରଥମାସ୍ଥାୟ ଶରଂ ଧନୁରୁପାଦଦେ ।
ଶରଂଧନୁଷି ସଂଧାୟ ମୁହୂର୍ତ୍ତେଽଭିଜିତୀଶ୍ୱରଃ ॥
(ଶ୍ରୀ ଭା. ୭।୧୦।୬୬,୬୭)

## ଛପ୍ପୟ

ଫିରି ହରି ହର ଢିଁଗ ଆଇ ଧରମ ରଥ ଦିବ୍ୟ ବନାୟୋ ।
ଜ୍ଞାନ ସାରଥୀ କରୌ ଧନୁଷ ତପ ତୀବ୍ର ସୁହାୟୋ ॥
ଧ୍ୱଜା ବିରକ୍ତି ବନାୟ ଅଶ୍ୱ ଐଶ୍ୱର୍ଯ୍ୟ ଲଗାୟୋ ।
ଧାରୟୋ ବିଦ୍ୟା କବଚ କ୍ରିୟା କେ ବାଣ ଚଢାୟୋ ॥
ଅସ ରଥ ପର ଚଢି ସଦାଶିବ, ପ୍ରଭୁ ସୁମିରତ ଆଗେ ବଢ଼େ ।
ବାଣ ଧନୁଷ ଦୌଁ ଧାରିକେଁ ତ୍ରିପୁର ନିବାସିନ ତେଁ ଭିଡ଼େ ॥

ମନହିଁ ମୟାସୁର । ସତ୍ତ୍ୱ, ରଜ, ତମ ହିଁ ତ୍ରିପୁର, ତ୍ରିଗୁଣ ହିଁ ଦୈତ୍ୟ, ସଦ୍‌ଗୁଣ ହିଁ ସୁର । ଯେତେବେଳେ ତ୍ରିଗୁଣ ଉନୋଟିଯାକ ଗୁଣର ପ୍ରଭାବରେ, ବିଶେଷ କରି ରଜ ଏବଂ ତମର ଆବେଶରେ ସଦ୍‌ଗୁଣ ମାନଙ୍କୁ ଦବେଇ ଦିଅନ୍ତି ସେତେବେଳେ ବିବେକରୂପୀ ଶିବଙ୍କର ଶରଣାପନ୍ନ ହୋଇଥାନ୍ତି, ଯାହାହେତୁ ସେ ବୈରାଗ୍ୟରୂପୀ ଧନୁର୍ଧର ବିଜୟଲାଭ କରିବା ଇଚ୍ଛା କରନ୍ତି । ମାତ୍ର ତ୍ୟାଗରୂପୀ ହରି ବିନା ଏକାକୀ ବୈରାଗ୍ୟ କଣ କରି ପାରିବ ? ତ୍ୟାଗଦ୍ୱାରା ତୃଷ୍ଣାରୂପୀ ସୁଧା ସରିଲୁ ଶୋଷି ନିଆଯାଇ ପାରିବ । ତୃଷ୍ଣା ହିଁ ସେଭଳି ଯାହା ବାସନାକୁ ପୁନଃ ପୁନଃ ଜୀବିତ କରୁଥାଏ । ବାସନା କ୍ଷୟ ହେବାପରେ, ତୃଷ୍ଣାର ବିନାଶ

Digitized by srujanika@gmail.com

ସାଧନ ହେବା ପରେ, ବୈରାଗ୍ୟରୂପୀ ଧନୁରେ ଜ୍ଞାନ ରୂପୀ ବାଣ ସଂଯୋଗ କରି ଲକ୍ଷ୍ୟଭେଦ କଲେ ସେହି ତ୍ରିପୁରର ଦହନ ହୋଇଥାଏ । ଜୀବ ତ୍ରିଗୁଣାତୀତ ହୋଇ ଶିବ ସ୍ୱରୂପ ହୋଇ ଯାଏ । ଏହା ତ୍ରିପୁର ଦାହର ଆଧ୍ୟାତ୍ମିକ ଅର୍ଥ । ଯଥାର୍ଥ ଅମୃତତ୍ୱର ପ୍ରାପ୍ତି ତ୍ୟାଗଦ୍ୱାରାହିଁ ସମ୍ଭବ ହୋଇଥାଏ ।

ଧର୍ମରାଜ ଯୁଧିଷ୍ଠିରଙ୍କୁ ନାରଦ କହୁଛନ୍ତି—'ରାଜନ୍, ଯେତେବେଳେ ମୟାସୁର ରଚିତ ଅମୃତକୁଣ୍ଡର ସବୁକିଛି ଶ୍ରୀହରି ପାନ କରିନେଲେ ସେ ଶିବଙ୍କ ନିକଟକୁ ଆସିଲେ । ତାଙ୍କୁ କହିଲେ—'ହେ ଦେବାଧିଦେବ ମହାଦେବ, ବର୍ତ୍ତମାନ ଆପଣ ଦିବ୍ୟରଥ ନିର୍ମାଣ କରି ଅସୁରମାନଙ୍କୁ ପରାସ୍ତ କରନ୍ତୁ । ବର୍ତ୍ତମାନ ଆପଣଙ୍କର ବିଜୟ ସୁନିଶ୍ଚିତ ।'

ଭଗବାନଙ୍କର ଏଭଳି ବାକ୍ୟ ଶୁଣି ମହାଦେବ ତାଙ୍କର ଅଭିନନ୍ଦନ କଲେ ଏବଂ ଧର୍ମର ଏକ ରଥ ନିର୍ମାଣ କଲେ । ସେଥିରେ ଜ୍ଞାନକୁ ସାରଥୀରୂପେ ବସାଇଲେ । ବୈରାଗ୍ୟର ସୁନ୍ଦର ମନୋହାରୀ ଧ୍ୱଜା ଲଗାଇଲେ । ଐଶ୍ୱର୍ଯ୍ୟର ଅଶ୍ୱ ଯୋଚି ନେଲେ । ତପକୁ ଧନୁରେ ପରିଣତ କଲେ ଏବଂ ବିଦ୍ୟାରୂପୀ କବଚ ଧାରଣ କରି, କ୍ରିୟା ରୂପକ ବାଣ ସେ ଧନୁରେ ଯୋଚିଲେ । ଏଭଳିଭାବରେ ସେ ଯୁଦ୍ଧର ସାମଗ୍ରୀରେ ସୁସଜ୍ଜିତ ହୋଇ ତ୍ରିପୁର ବିନାଶ ନିମନ୍ତେ ଗମନ କଲେ । ଏହା ଶିବଙ୍କର ଆଧ୍ୟାତ୍ମିକ ରଥର ବର୍ଣ୍ଣନା । କେଉଁ କେଉଁଠାରେ ଏଭଳି ମଧ୍ୟ ବର୍ଣ୍ଣନା ଅଛି ଯେ ମହାଦେବ ଏହି ସସାଗରା ସମସ୍ତ ବସୁନ୍ଧରାକୁ ହିଁ ରଥ କଲେ । ନାଗରାଜ ଭଗବାନ ଶେଷଦେବଙ୍କୁ ସେ ରଥର ଅକ୍ଷ କଲେ । ଇଲାପତ୍ର ଏବଂ ପୁଷ୍ପଦନ୍ତ ନାଗଦ୍ୱୟଙ୍କୁ ଯୁଆଳିର ଉଭୟ ପ୍ରାନ୍ତରେ ବନ୍ଧନ ଏବଂ ମଳୟାଚଳକୁ ହିଁ ରଥର ଯୁଆଳି କଲେ । ତକ୍ଷକଙ୍କୁ ଚିହ୍ନ କାଟି ଯୁଆଳି ବାନ୍ଧିବାକୁ ଦଉଡ଼ି କଲେ । ଗନ୍ଧମାର୍ଦ୍ଦନ ଏବଂ ବିନ୍ଧ୍ୟାଚଳକୁ ରଥର ଉଭୟ ପାର୍ଶ୍ୱର ଧ୍ୱଜାକଲେ । ସମସ୍ତ ପ୍ରାଣୀମାନଙ୍କୁ ରଥପାଇଁ ତୋରଣ କଲେ । ଋକ୍, ଯଜୁ, ସାମ ଏବଂ ଅଥର୍ବ, ଏହି ଚାରି ବେଦ ସେହି ରଥର ଅଶ୍ୱ ହେଲେ । ଉପନିଷଦ ସେଇ ଅଶ୍ୱମାନଙ୍କର ଲଗାମ ହେଲେ । ଓଁକାରକୁ ଚାବୁକ କଲେ ଏବଂ ଗାୟତ୍ରୀ ସାବିତ୍ରୀଙ୍କୁ ଡୋରି କଲେ । ବ୍ରହ୍ମାଙ୍କୁ କହିଲେ, 'ଆପଣ ଏ ରଥ ଚାଳନା କରନ୍ତୁ ।' ସରଳ ବ୍ରହ୍ମା ସେହି ସସାଗରା ବସୁଧାରୂପୀ ଦିବ୍ୟରଥକୁ ସାରଥୀ ଆସନରେ ବସି ଚାଳନା କଲେ । ମହାଦେବ ସେହି ରଥରେ ବିରାଜିତ ହେଲେ । ମନ୍ଦରାଚଳକୁ ଗାଣ୍ଡୀବ ଧନୁ କଲେ ବାସୁକୀଙ୍କୁ ସେହି ଧନୁର ଡୋରି କରି ସ୍ୱୟଂ ବିଷ୍ଣୁଙ୍କୁ ସେଥିରେ ବାଣରୂପେ ବସାଇଲେ । ଅଗ୍ନି ସେହି ବାଣର ଫଳକ ତଥା ବାୟୁ ତାର ପକ୍ଷ ହେଲେ । ଯମଙ୍କୁ ସେ ବାଣର ପୁଚ୍ଛ, ବିଦ୍ୟୁତକୁ ତା'ର ଧାର ଏବଂ ମେରୁକୁ ରଥର ଧ୍ୱଜା ସ୍ଥାନରେ ଲଗେଇଲେ । ଏଭଳି ଦିବ୍ୟ ଏବଂ ଅସାଧାରଣ ରଥାରୂଢ଼ ହୋଇ ଶିବ ତ୍ରିପୁର ବିନାଶନିମନ୍ତେ ଆଗଭର ହେଲେ ।

Digitized by srujanika@gmail.com

ସେହି ତ୍ରିପୁର ପୃଥକ୍ ପୃଥକ ବିନଷ୍ଟ ହେବେନାହିଁ ବୋଲି ବ୍ରହ୍ମାଙ୍କର ବରପ୍ରାପ୍ତ ହୋଇଥିଲେ । ସେମାନେ ଆକାଶର ପୃଥକ ପୃଥକ ରହୁଥିଲେ । ହଜାରେ ବର୍ଷରେ ଥରେ ସେମାନେ ଏକତ୍ରିତ ହେଉଥିଲେ । ତାପରେ ପୃଥକ ହେଉଥିଲେ । ସଦାଶିବ ଆପଣାର ଦିବ୍ୟରଥରେ ବସି ହଜାରେ ବର୍ଷ ପର୍ଯ୍ୟନ୍ତ ତପସ୍ୟା କଲେ । ଯେତେବେଳେ ସେମାନେ ଏକତ୍ରିତ ହେଲେ, ଠିକ ସେଇ ମୁହୂର୍ତ୍ତରେ ସେ ଆପଣାର ଦିବ୍ୟାସ୍ତ୍ରମାନଙ୍କଦ୍ୱାରା ସେହି ତିନି ପୁରମାନଙ୍କୁ ଜାଳି ଭସ୍ମ କରିଦେଲେ, ଯେଉଁମାନେ ସେତେକାଳ ପର୍ଯ୍ୟନ୍ତ ଅଜେୟ ହୋଇ ରହିଥିଲେ, ସେମାନଙ୍କୁ ଜୟ କରିନେଲେ । ଯାହା ଦୁର୍ଭେଦ୍ୟ ବୋଲି ଖ୍ୟାତ ଥିଲା ତାକୁ ଭେଦ କଲେ । ଯେଉଁମାନେ ଦୁର୍ଧର୍ଷ ବୋଲି କଥିତ ହେଉଥିଲେ ସେ ସେମାନଙ୍କର ଧର୍ଷଣ କଲେ ।

ନାରଦ କହୁଛନ୍ତି—"ରାଜନ୍, ସେଇ ତିନି ଦୁର୍ଦ୍ଧର୍ଷ ପୁରମାନଙ୍କୁ ଜିଣିବା ହେତୁ ଶିବଙ୍କର ତ୍ରିପୁରାନ୍ତକ, ତ୍ରିପୁରାରି, ତ୍ରିପୁର ବିନାଶକ, ଆଦି ନାମ ହେଲା । ତାଙ୍କର ସେହି ଅଦ୍ଭୁତ କର୍ମ ଦେଖି ସମସ୍ତ ଦେବତା, ପିତର, ଋଷି, ମୁନି, ଯକ୍ଷ, ଗନ୍ଧର୍ବ, ଗୁହ୍ୟ, କିନ୍ନର, କିଂପୁରୁଷ ତଥା ସିଦ୍ଧଗଣ ଅତ୍ୟନ୍ତ ପ୍ରସନ୍ନ ହେଲେ । ହର୍ଷାତିରେକତା ହେତୁ ସମସ୍ତେ ଜୟଜୟକାର କଲେ । ନମୋନମଃ, ସାଧୁସାଧୁ ଆଦି ପ୍ରଶସ୍ତି ବାକ୍ୟ ଉଚ୍ଚାରଣ କଲେ । ଦେବାଙ୍ଗନାମାନେ ନନ୍ଦନ ବନରୁ କମନୀୟ ପୁଷ୍ପ ବର୍ଷା କଲେ । ଅପସରାମାନେ ନୃତ୍ୟକରିବାକୁ ଓ ଗନ୍ଧର୍ବମାନେ ଗାଇବାକୁ ଲାଗିଲେ । ଏଭଳି ଭାବରେ ଭଗବାନଙ୍କ କୃପାରୁ ଶିବଙ୍କର କୀର୍ତ୍ତି ଜଗତରେ ଅକ୍ଷୟ ହୋଇଗଲା । ସେହି ଭଗବାନ ଆପଣାର ଭକ୍ତ ପ୍ରହ୍ଲାଦଙ୍କୁ ଦୁଃଖୀ ହେଉଥିବା ଦେଖି ତା'ର ବରକୁ ସତ୍ୟ ପ୍ରମାଣିତ କରିଦେବା ଉଦ୍ଦେଶ୍ୟରେ ସ୍ତମ୍ଭର ମଧ୍ୟରୁ ଅବତାର ଗ୍ରହଣ କରିଥିଲେ । ଭକ୍ତର ଦୁଃଖ ଦୂର କରିଥିଲେ ଏବଂ ଦେବତାମାନଙ୍କୁ ଦିବ୍ୟ ଦର୍ଶନ ଦେଇ କୃତାର୍ଥ କରିଥିଲେ ।

ସୂତ କହୁଛନ୍ତି, "ହେ ମୁନିଗଣ, ନାରଦ ଏବଂ ଧର୍ମରାଜଙ୍କର ସମ୍ବାଦ ଶୁଣି ମହାରାଜ ପରୀକ୍ଷିତ ଅତ୍ୟନ୍ତ ହର୍ଷିତ ହେଲେ ।"

ଏହାଶୁଣି ଶୌନକ କହିଲେ, "ହେ ସୂତ, ଆମେ ଧର୍ମରାଜ-ନାରଦ ସମ୍ବାଦ ଶୁଣି ଅତ୍ୟନ୍ତ ଆନନ୍ଦିତ ହୋଇଛୁ । ମହାଭାଗ, ଯେଉଁଠାରେ ସାକ୍ଷାତ ଧର୍ମମୂର୍ତ୍ତି ଯୁଧିଷ୍ଠିର ପ୍ରଶ୍ନକର୍ତ୍ତା ଏବଂ ଭଗବାନଙ୍କର ଅବତାର ସ୍ୱରୂପ ଭୂତ ଭବିଷ୍ୟତ ବର୍ତ୍ତମାନର ସର୍ବଜ୍ଞ ନାରଦ ହେଉଛନ୍ତି ଉତ୍ତରଦାତା, ସେହି ସମ୍ବାଦ ପ୍ରସଙ୍ଗରେ କିଛି କହିବା ଉଚିତ ନୁହେଁ । ଆମେ ବର୍ତ୍ତମାନ ଜାଣିବାକୁ ଚାହୁଁଛୁ ଯେ ଧର୍ମରାଜ ଯୁଧିଷ୍ଠିର ପ୍ରହ୍ଲାଦଙ୍କର ପାବନ ଚରିତ୍ର ଶ୍ରବଣ କରିବା ପରେ ଦେବର୍ଷି ଭଗବାନ ନାରଦଙ୍କୁ ଆଉ କେଉଁ କେଉଁ ପ୍ରଶ୍ନ କଲେ ଏବଂ

Digitized by srujanika@gmail.com

ତା'ର ଉତ୍ତରରେ ଦେବର୍ଷି ନାରଦ କଣ କଣ କହିଲେ । ସେକଥା ଆମକୁ କହନ୍ତୁ । ଏହା ଯେତେଯେତେ ଶୁଣିଲେ ମଧ୍ୟ ଆମର ତୃପ୍ତି ଆସୁନାହିଁ ।"

ଏହା ଶୁଣି ସୂତ କହିଲେ, "ହେ ମୁନିଗଣ, ଆପଣମାନେ ଧନ୍ୟ । ଯେହେତୁ କଥା ଶ୍ରବଣରେ ଆପଣମାନଙ୍କର ବିରକ୍ତି ଆସୁନାହିଁ । ଆପଣମାନେ ପ୍ରତିକ୍ଷଣ ନବୀନ ଉତ୍ସାହରେ କଥା ଶ୍ରବଣ କରିବାକୁ ବ୍ୟଗ୍ର ହେଉଛନ୍ତି । ନାରଦ ଧର୍ମରାଜଙ୍କର ପ୍ରଶ୍ନ ଶୁଣି ଯେଉଁ ଉତ୍ତର ଦେଇଥିଲେ ଓ ଉପଦେଶ ଦେଲେ, ତାହା ଅତ୍ୟନ୍ତ ସଂକ୍ଷେପରେ ମୁଁ ଆପଣମାନଙ୍କୁ ଜଣାଇବି ଦିଗ୍‌ଦର୍ଶନ ଦେବି, ତାହା ଆପଣମାନେ ସାବଧାନ ହୋଇ ଶ୍ରବଣ କରନ୍ତୁ ।"

## ଛପ୍‌ପୟ

କୀନ୍ହୌ ତ୍ରିପୁର ବିନାଶ ଭୟେ ତ୍ରିପୁରାରୀ ଶଙ୍କର ।
ଋଷି, ମୁନି, ସୁର, ଗନ୍ଧର୍ବ କହୈଁ ଜୟ ଶଙ୍କର ଶିବ ହର ॥
ସବକୋ ଯଶ ବିସ୍ତାର କରୈଁ ଧ୍ୟେ ହୀ ଶ୍ରୀ ନରହରି ।
କରେ ପୂଜ୍ୟ ପ୍ରହ୍ଲାଦ ହିରନକଶିପୂ କୋ ବଧ କରି ॥
ନାରଦ ଜୀ କେ ବଚନ ସୁନି, ଧର୍ମରାଜ ପ୍ରମୁଦିତ ଭୟେ ।
ପୁନି ବର୍ଣ୍ଣାଶ୍ରମ ଧର୍ମ କୂଁ, ମୁନିବର ତେଁ ପୁଛତ ହୟେ ॥

—※—

Digitized by srujanika@gmail.com

# ଧର୍ମରାଜ-ନାରଦ ସମ୍ବାଦ ସମାପ୍ତି

ଇତି ଦେବର୍ଷିଣା ପ୍ରୋକ୍ତଂ ନିଶମ୍ୟ ଭରତର୍ଷଭଃ ।
ପୂଜୟାମାସ ସୁପ୍ରୀତଃ କୃଷ୍ଣଂ ଚ ପ୍ରେମ ବିହ୍ୱଳଃ ॥
କୃଷ୍ଣପାର୍ଥାବୁପାମନ୍ତ୍ର୍ୟ ପୂଜିତଃ ପ୍ରୟୟୌ ମୁନିଃ ।
ଶ୍ରୁତ୍ୱା କୃଷ୍ଣଂ ପରଂବ୍ରହ୍ମ ପାର୍ଥଃ ପରମ ବିସ୍ମିତଃ ॥
—ଶ୍ରୀ. ଭା. ୭ । ୧୫ । ୭୮-୭୯

ଛପ୍‌ପୟ

ଗୃହ ବରନ କେ ଧର୍ମ ଦେବ ଋଷି ପୃଥକ ବତାୟେ ।
କୌନ କୌନ କସ କର୍ମ କରେ କହି ସବ ସମୁଝାୟେ ॥
ପୁନି ନାରଜ କେ ଧର୍ମ କହେ ସୁନି ସଦ୍ଧର୍ମୀ ଶାରଦ ।
ବ୍ରହ୍ମଚର୍ଯ୍ୟ ବ୍ରତ ଗୃହୀ ଧର୍ମ ଭାଷେ ସବ ନାରଦ ॥
ବାନପ୍ରସ୍ଥ ସନ୍ନ୍ୟାସ କେ, ପୃଥକ ପୃଥକ କହେ ।
ଧର୍ମରାଜ ନାରଦ ନିକଟ, ଯଦୁନନ୍ଦନ ବୈଠେ ରହେ ॥

ସନାତନ ବୈଦିକ ଧର୍ମକୁ ବର୍ଣ୍ଣାଶ୍ରମ ମଧ୍ୟ କହନ୍ତି, କାରଣ ବୈଦିକ ଧର୍ମର ଭିତ୍ତି ବର୍ଣ୍ଣାଶ୍ରମ ଧର୍ମ ଉପରେ ଅବଲମ୍ବିତ । ଯେଉଁଠାରେ ବର୍ଣ୍ଣାଶ୍ରମ ବ୍ୟବସ୍ଥା ନାହିଁ, ସେଠାରେ ଆର୍ଯ୍ୟଧର୍ମ ନାହିଁ । ଯଦ୍ୟପି ଗୁଣକର୍ମ ସ୍ୱଭାବ ଅନୁସାରେ ଚତୁର୍ବର୍ଣ୍ଣର ସୃଷ୍ଟି ସ୍ୱୟଂ ଭଗବାନ ଶ୍ରୀହରି କରିଛନ୍ତି, ଏହି ସୃଷ୍ଟି କରିଥିବା ହେତୁ ତାହା ଅନାଦି । ତଥାପି ମଧ୍ୟ ଆଦି ସତ୍ୟଯୁଗ ଘୋର ସତ୍ୟରେ, କଳିଯୁଗାନ୍ତ ଗହନତମ ତମରେ, ବର୍ଣ୍ଣାଶ୍ରମ ପ୍ରାୟ ରହିନଥାଏ । ଘୋର ସତ୍ୟରେ ଧର୍ମପରାୟଣ ଲୋକେ ସତ୍ୟବାଦୀ ଏବଂ ଦମ୍ଭ ଈର୍ଷା ରହିତ ହୁଅନ୍ତି ଏବଂ ଘୋର କଳିକାଳ ଉପସ୍ଥିତ ହେଲେ ସମସ୍ତଙ୍କର ବୁଦ୍ଧି ତମୋଗୁଣାଚ୍ଛନ୍ନ ହୋଇଯାଏ । ସେ ସମୟରେ ସେହି ତମୋଗୁଣକୁ ପ୍ରାଧାନ୍ୟ ଦେଉଥିବା ମୂଢ଼ମାନେ ଅଧର୍ମକୁ ହିଁ ଧର୍ମ ବୋଲି

Digitized by srujanika@gmail.com

ମନେ କରିଥାନ୍ତି । ବର୍ଣ୍ଣାଶ୍ରମ ଧର୍ମକୁ ହିଁ ଉନ୍ନତିର ବାଧକ ବୋଲି ମନେ କରନ୍ତି । ବର୍ଣ୍ଣଭେଦକୁ ହିଁ ଅବନତିର ମୂଳ କାରଣ ଭାବି ତାକୁ ବିନାଶ କରିବାର ଚେଷ୍ଟା କରନ୍ତି । ସତ୍ତ୍ୱଗୁଣର ପ୍ରକାଶ ଅଭାବରୁ ସବୁର ବୁଦ୍ଧି ତମୋଗୁଣ ଦ୍ୱାରା ଆବୃତ୍ତ ହୋଇ ରହିଥାଏ । ତେଣୁ ବର୍ଣ୍ଣାଶ୍ରମ ଧର୍ମ ଛିନ୍ନ ଭିନ୍ନ ହୋଇଯାଏ । ଅନ୍ୟ ସବୁ ଯୁଗରେ ବର୍ଣ୍ଣାଶ୍ରମ ଧର୍ମର ଅନନ୍ତ ମାହାତ୍ମ୍ୟ ରହିଛି । ନିତ୍ୟ ବର୍ଣ୍ଣାଶ୍ରମ ଧର୍ମ ବିଷୟରେ ଶ୍ରବଣ କରିବା ଉଚିତ । ଆମ ଦେଶରେ ଏପରି କୌଣସି କଥା, ବାର୍ତ୍ତା, ଶାସ୍ତ୍ର, ପୁରାଣ ନାହିଁ ଯହିଁରେ ବର୍ଣ୍ଣାଶ୍ରମ ଧର୍ମର ବର୍ଣ୍ଣନା ନାହିଁ । ଯେ କୌଣସି କଥା , ଯେ କୌଣସି ବାର୍ତ୍ତା ସେତେବେଳ ପର୍ଯ୍ୟନ୍ତ ପୂର୍ଣ୍ଣ ମନେ ହୁଏ ନାହିଁ, ଯେତେବେଳ ଯାଏ ତହିଁରେ ବର୍ଣ୍ଣାଶ୍ରମର ଚର୍ଚ୍ଚା ହୋଇନାହିଁ ।''

ମହାରାଜ ପରୀକ୍ଷିତ ଶ୍ରୀ ଶୁକଦେବଙ୍କୁ ପଚାରୁଛନ୍ତି, ''ଭଗବାନ୍, ଧର୍ମରାଜ ଯୁଧିଷ୍ଠିର ପ୍ରହ୍ଲାଦଙ୍କର ଚରିତ୍ର ଶ୍ରବଣ କଲା ପରେ, ଆପଣଙ୍କର ପିତା ଭଗବାନ ବ୍ୟାସଦେବଙ୍କର ଗୁରୁ ଶ୍ରୀ ନାରଦଙ୍କୁ କେଉଁ କେଉଁ ପ୍ରଶ୍ନ କଲେ କୃପାକରି ଆପଣ ମୋତେ କହନ୍ତୁ ।''

ଏହା ଶୁଣି ଶ୍ରୀ ଶୁକଦେବ କହିଲେ, ''ରାଜନ, ଯେତେବେଳେ ନୃସିଂହ ମହାପ୍ରଭୁଙ୍କ ଚରିତ୍ର ସମାପ୍ତ ହେଲା, ''ସେତେବେଳେ ଧର୍ମରାଜ ନାରଦଙ୍କୁ ପଚାରିଲେ, ''ପ୍ରଭୋ, ମୁଁ ବୈଦିକ ବର୍ଣ୍ଣାଶ୍ରମ ଧର୍ମର ବ୍ୟାଖ୍ୟା ଶୁଣିବାକୁ ଚାହୁଁଛି । କେଉଁ ବର୍ଣ୍ଣର କେଉଁ ଆଶ୍ରମର କି ପ୍ରକରଣ ଆପଣ ମୋତେ ଦୟାକରି କହନ୍ତୁ ।''

ନାରଦ କହିଲେ, ''ରାଜନ, ଆପଣ ମୋତେ ହିଁ କାହିଁକି ଏ ସବୁ ପଚାରୁଛନ୍ତି ?''

ଏହାଶୁଣି ଧର୍ମରାଜ କହିଲେ, ''ମହାରାଜ, ଆଉ କିଏ ଅଛି ଯେ ମୋତେ ଏ ସବୁ ପ୍ରଶ୍ନର ଠିକ ଉତ୍ତର ଦେବାକୁ ସମର୍ଥ ହେବ । ସମସ୍ତ ଧର୍ମର ପ୍ରବର୍ତ୍ତକ ହେଉଛନ୍ତି ଲୋକ ପିତାମହ ବ୍ରହ୍ମା ଏବଂ ଆପଣ ତାଙ୍କର ମାନସ ପୁତ୍ର । ସାଧାରଣ ପୁତ୍ର ନୁହନ୍ତି । ତପସ୍ୟା ଯୋଗ ତଥା ସମାଧିର ଉତ୍ତମତା ହେତୁ ଆପଣ ତାଙ୍କର ସର୍ବଶ୍ରେଷ୍ଠ ପୁତ୍ର । ସବୁ ଶ୍ରେଣୀର ଲୋକେ ଆପଣଙ୍କର ଆଦର ସତ୍କାର କରିଥାନ୍ତି । ଆପଣ ଭଗବତ୍ ଭକ୍ତ, ପ୍ରଭୁ ପରାୟଣ, ଦୟାଳୁ, ସଦାଚାରୀ, ବାଳ ବ୍ରହ୍ମଚାରୀ, ଶାନ୍ତ ସ୍ୱଭାବ ଏବଂ ଗୁହ୍ୟଜ୍ଞାନର ଜ୍ଞାତା ଅଟନ୍ତି । ବର୍ଣ୍ଣାଶ୍ରମ ଧର୍ମ ଆପଣଙ୍କୁ ଯେତେ ଜଣା ସେତେ ଆଉ କେହି ଜାଣି ପାରିବ ନାହିଁ । ଏହା ଶୁଣି ନାରଦ କହିଲେ, ''ଉତ୍ତମ କଥା ରାଜନ୍, ମୁଁ ଆପଣଙ୍କୁ ସ୍ୱୟଂ ଭଗବାନଙ୍କର ଶ୍ରୀମୁଖରୁ ଶ୍ରବଣ କରିଥିବା ବର୍ଣ୍ଣାଶ୍ରମ ଧର୍ମର ରହସ୍ୟ କହୁଛି ।''

ଏହା ଶୁଣି ଧର୍ମରାଜ କହିଲେ, ''ମହାରାଜ, ଆପଣ ଭଗବାନଙ୍କ ଠାରୁ ଏ ଧର୍ମ କେଉଁଠାରେ ଶୁଣିଥିଲେ ?''

Digitized by srujanika@gmail.com

ଧର୍ମରାଜଙ୍କର ଏହି ପ୍ରଶ୍ନର ଉତ୍ତର ଦେଇ ନାରଦ କହିଲେ, "ରାଜନ୍, ଧର୍ମଙ୍କର ତେରଜଣ ପତ୍ନୀଙ୍କ ମଧ୍ୟରେ ମୂର୍ତ୍ତି ଦେବୀ ଜଣେ । ତାଙ୍କଠାରୁ ଭଗବାନ ନର-ନାରାୟଣ ଅବତାର ଗ୍ରହଣ କଲେ । ସେ ଦୁହେଁ ବଦରିକାଶ୍ରମରେ ଯାଇ ଘୋର ତପସ୍ୟା କରନ୍ତି । ସେ କାଳରେ ମୁଁ ତାଙ୍କର ଚରଣରେ ବସି ବର୍ଣ୍ଣାଶ୍ରମ ଧର୍ମ ବିଷୟରେ ଶୁଣିଛି । ତାହା ସେହି ନର-ନାରାୟଣଙ୍କୁ ଶୁଣାଉଛି ।"

ଶ୍ରୀ ସୂତ କହିଲେ, "ହେ ମୁନିଗଣ, ଏହା କହି ଭଗବାନ ନାରଦ ସର୍ବପ୍ରଥମେ ପ୍ରତ୍ୟେକ ମଣିଷର ଧର୍ମ ସମ୍ବନ୍ଧରେ କହିଲେ । ବର୍ଣ୍ଣ, ଜାତି, ଦେଶ, ଧର୍ମ, ସମ୍ପ୍ରଦାୟ ନିର୍ବିଶେଷରେ ମନୁଷ୍ୟମାନଙ୍କେ ଏହି ତିରିଶ ଗୋଟି ଧାର୍ମିକ ନିୟମ ଅବଶ୍ୟ ପାଳନୀୟ । ଏଗୁଡ଼ିକ ହେଲା, ୧-ସତ କହିବା, ୨-ପ୍ରାଣୀ ମାନଙ୍କ ପ୍ରତି ଦୟାଭାବ ରଖିବା, ୩-ଯଥାଶକ୍ତି ତପ କରିବା, ୪-ପବିତ୍ରତା ସହିତ ବ୍ୟବହାର କରିବା, ୫-ସହନଶୀଳ ହେବା, ୬-ଯୁକ୍ତାଯୁକ୍ତର ବିଚାର କରିବା, ୭-ମାନସିକ ଶାନ୍ତି ରଖିବା, ୮-ଇନ୍ଦ୍ରିୟମାନଙ୍କୁ ଦମନ କରିବା, ୯-କୌଣସି ପ୍ରାଣୀ ପ୍ରତି ହିଂସାଭାବ ନ ରଖିବା ୧୦-ଯଥାସ୍ଥିତିରେ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିବା, ୧୧-ତ୍ୟାଗର ଭାବନା ରଖିବା, ୧୨-ସମସ୍ତଙ୍କ ସାଙ୍ଗରେ ସରଳ ବ୍ୟବହାର କରିବା, ୧୩-ଶାସ୍ତ୍ରମାନଙ୍କର ଉଚିତ ଅଧ୍ୟୟନ କରିବା, ୧୪- ସନ୍ତୋଷ ରହିବା, ୧୫ ସମଦର୍ଶୀ ଭଗବନ୍ତ ଭକ୍ତ ମହାତ୍ମାମାନଙ୍କର ଯଥାଶକ୍ତି ସେବା କରିବା, ୧୬-ଅଭ୍ୟାସ-ଦ୍ୱାରା ସାଂସାରିକ ଭୋଗର ପ୍ରୟାସରୁ ନିବୃତ୍ତି ରହିବା, ୧୭-ମନୁଷ୍ୟକୃତ ପ୍ରଯତ୍ନର ପ୍ରାୟ ବିପରୀତ ଫଳ ହୋଇଥାଏ—ଏ କଥାର ବିଚାର କରିବା, ୧୮-ଆପଣାର ବାକ୍ ସଂଯମ କରିବା, ୧୯-ଆତ୍ମଚିନ୍ତନ କରିବା, ଯଥାଶକ୍ତି ପ୍ରାଣୀମାନଙ୍କୁ ଅନ୍ନ ବିଭାଜନ କ୍ରମେ ଭୋଜନ କରାଇବା ୨୧-ସମସ୍ତ ପ୍ରାଣୀଙ୍କ ମଧ୍ୟରେ ପ୍ରଭୁଙ୍କ ବିଦ୍ୟମାନ ରହିଥିବା ମନେ କରିବା, ଓ ମନୁଷ୍ୟମାନଙ୍କୁ ସେହି ଈଶ୍ୱରଙ୍କର ପୁନି ଜ୍ଞାନ କରି ଭକ୍ତିଭାବ ପୋଷଣ କରିବା, ୨୨-ଭଗବାନଙ୍କର ଗୁଣ ଶ୍ରବଣ କରିବା, ୨୩-ତାଙ୍କର ନାମ ଏବଂ ଯଶ କୀର୍ତ୍ତନ କରିବା, ୨୪-ଭଗବାନଙ୍କର ରୂପ ସ୍ମରଣ କରିବା, ୨୫-ଭଗବନ୍ତ ସେବାରେ ସଦା ତତ୍ପର ରହିବା, ୨୬- ପ୍ରଭୁଙ୍କର ପୂଜା ଅର୍ଚ୍ଚନାରେ ପ୍ରେମଭାବ ରଖିବା, ୨୭-ଭଗବାନ ଏବଂ ଭଗବନ୍ତ ଭକ୍ତଙ୍କୁ ପ୍ରୀତି ପୂର୍ବକ ନମ୍ର ଭାବରେ ନମସ୍କାର କରିବା, ୨୮-ଆପଣାକୁ ଭଗବାନଙ୍କର ଦାସ ମନେ କରିବା, ୨୯-ଭଗବାନଙ୍କୁ ଆପଣାର ସଖା ସୁହୃଦ ମନେ କରିବା, ଏବଂ ୩୦-ନିଜକୁ ଭଗବାନଙ୍କ ନିକଟରେ ସମର୍ପଣ କରିଦେବା । ଏହିପରି ତିରିଶ ପ୍ରକାର ନିୟମର ଆଚରଣ ମନୁଷ୍ୟମାନଙ୍କ ପାଇଁ କଲ୍ୟାଣପ୍ରଦ ଅଟେ । ଏହାର ପାଳନ କଲେ ସର୍ବାତ୍ମା ଶ୍ରୀହରି ପ୍ରସନ୍ନ ହୋଇଥାନ୍ତି ।

ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଏବଂ ଶୂଦ୍ର ଏପରି ଚାରି ବର୍ଣ୍ଣ । ବ୍ରହ୍ମଚର୍ଯ୍ୟ, ଗୃହସ୍ଥ, ବାନପ୍ରସ୍ଥ ଓ ସନ୍ନ୍ୟାସ ଏ ଚାରୋଟି ଆଶ୍ରମ । ଅଧ୍ୟୟନ, ଅଧ୍ୟାପନ, ଦାନଦେବା, ଗ୍ରହଣ କରିବା, ଯଜ୍ଞ କରିବା ଏବଂ କରାଇବା ଏଭଳି ଷଟ୍‌କର୍ମ ବ୍ରାହ୍ମଣମାନଙ୍କର । କ୍ଷତ୍ରିୟମାନଙ୍କର

Digitized by srujanika@gmail.com

ଅଧ୍ୟୟନ, ଦାନ, ଯଜ୍ଞ କରିବା, ପ୍ରଜାଙ୍କୁ ପୁତ୍ରବତ୍ ପାଳନ କରିବା, ଏବଂ କର ଆଦି ନେଇ ବୃତ୍ତି ଚଳାଇବା ଧର୍ମ ବୋଲି କଥିତ ହୋଇଛି । ବୈଶ୍ୟମାନଙ୍କ ନିମନ୍ତେ ଅଧ୍ୟୟନ ଦାନ, ଯଜ୍ଞକାର୍ଯ୍ୟ, ଗୋରକ୍ଷା, ବ୍ରାହ୍ମଣ କ୍ଷତ୍ରିୟମାନଙ୍କ ପ୍ରତି ଅନୁକୂଳ ଆଚରଣ, କୃଷି, ଏବଂ ବାଣିଜ୍ୟ କରି ଲବ୍ଧ ଅର୍ଥରେ ବୃତ୍ତି ଚଳାଇବା, ଧର୍ମଅଟେ । ଶୂଦ୍ରମାନଙ୍କ ନିମନ୍ତେ ଦ୍ୱିଜସେବାହିଁ ପରମ ଧର୍ମ । ସେମାନଙ୍କୁ ତାଙ୍କର ସ୍ୱାମୀଠାରୁ ଆଜୀବିକା ପ୍ରାପ୍ତ ହେବା ଉଚିତ ।

ଶମ, ଦମ, ତପ, ଶୌଚ, କ୍ଷମା, ସରଳତା, ଜ୍ଞାନ, ଦୟା, ଭଗବତ୍ ପରାୟଣତା, ଏବଂ ସତ୍ୟାଚରଣ ଏସବୁ ବ୍ରାହ୍ମଣମାନଙ୍କର ଲକ୍ଷଣ । ବ୍ରାହ୍ମଣମାନଙ୍କର ଏ ଗୁଣ ସ୍ୱଭାବତଃ ଆସିଥାଏ । ଶୂରବୀରତା, ପୁରୁଷାର୍ଥ, ଧୈର୍ଯ୍ୟ, ତେଜସ୍ୱିତା, ତ୍ୟାଗ, ମନୋଜୟ, କ୍ଷମା, ବ୍ରାହ୍ମଣଙ୍କ ପ୍ରତି ଭକ୍ତିଭାବ, ଅନୁଗ୍ରହ, ଏମାନ କ୍ଷତ୍ରିୟର ଲକ୍ଷଣ । ଦେବତା, ଗୁରୁ ତଥା ବ୍ରାହ୍ମଣଙ୍କୁ ଭକ୍ତି କରିବା, ଧର୍ମ ଅର୍ଥ ଏବଂ କାମର ପୁଷ୍ଟି ସାଧନ କରିବା, ଆସ୍ତିକତା, ବାଣିଜ୍ୟ ଆଦି ଉଦ୍ୟୋଗ କରିବା, ବ୍ୟବହାର କୁଶଳତା ଆଦି ବୈଶ୍ୟମାନଙ୍କର ଧର୍ମ । ଉଚ୍ଚ ବର୍ଣ୍ଣମାନଙ୍କ ପ୍ରତି ବିନମ୍ର ଭାବ, ପବିତ୍ରତା, ନିଷ୍କପଟ ଭାବରେ ସ୍ୱାମୀ ସେବା, ପୌରାଣିକ ମନ୍ତ୍ରାଦି ଦ୍ୱାରା ଯଜ୍ଞ କରାଇବା, ସତ୍ୟ କହିବା, ଚୋରି ନ କରିବା, ଆପଣାର ପୁରୁଷାର୍ଥ ଦ୍ୱାରା ଗୋ ବ୍ରାହ୍ମଣଙ୍କର ରକ୍ଷା କରିବା ଶୂଦ୍ରମାନଙ୍କ ନିମନ୍ତେ ଧର୍ମ ଅଟେ । ପତି ସେବାରେ ନିରନ୍ତର ତତ୍ପର ରହିବା, ପତିଙ୍କ ପ୍ରତି ସର୍ବଦା ଆଦରଭାବ ପୋଷଣକରି ପ୍ରେମ ପୂର୍ଣ୍ଣ ବ୍ୟବହାର କରିବା, କାହା ସହିତ ଦ୍ୱେଷଭାବ, ଦ୍ୱନ୍ଦ୍ୱ ଆଦି ନ କରିବା ସ୍ତ୍ରୀ ମାନଙ୍କର ଧର୍ମ । ସେମାନଙ୍କ ନିମନ୍ତେ ପତିପ୍ରାଣା ସେବା ହିଁ ମୁଖ୍ୟ ଧର୍ମ । ଶୂଦ୍ରେତର ଲୋକଙ୍କର ତାହା ହିଁ ଧର୍ମ ଯାହା ବଂଶ ପରମ୍ପରାନୁକ୍ରମରେ ଚାଲି ଆସିଛି—ଚୋରି ଏବଂ ହିଂସା ଛଡ଼ା । ଏହା ନୁହେଁ ଯେ ଆମର ପିତା ଚୋରି କରନ୍ତି, ଆମର ପିତା ହତ୍ୟା କରୁଥିଲେ, ତେଣୁ ଆମେ ମଧ୍ୟ କରିବୁ । ଏହା ଯଦି ପୈତୃକ କାର୍ଯ୍ୟ ହୋଇଥାଏ, ତେବେ ତ୍ୟାଗ କରିବା ଉଚିତ୍ । ପିତା ଯଦି ନାଟକରେ ସ୍ତ୍ରୀ ଭୂମିକା କରି ଚଳୁଥିଲେ, ତେବେ ସେଭଳି ପୈତୃକ ବ୍ୟବସାୟ ତ୍ୟାଗ କରିବାରେ କୌଣସି ଦୋଷ ନାହିଁ । ଏହା ବ୍ୟତୀତ ଯାହା ପୈତୃକ କାର୍ଯ୍ୟ ଅଟେ, ତାହା କରିବା ହିଁ ପରମ ଧର୍ମ ।

ସଂକ୍ଷେପରେ ବର୍ଣ୍ଣ ଧର୍ମ ସମ୍ବନ୍ଧରେ କହିଲି । ବର୍ତ୍ତମାନ ଆଶ୍ରମ ଧର୍ମ ବିଷୟରେ ଶ୍ରବଣ କରନ୍ତୁ । ବ୍ରହ୍ମଚାରୀର ମୁଖ୍ୟଧର୍ମ ହେଲା ବ୍ରହ୍ମଚର୍ଯ୍ୟ ପାଳନ କରିବା, ଅଗ୍ନି ଦେବତା ଓ ଗୁରୁଙ୍କର ସେବା କରିବା ଏବଂ ନିରନ୍ତର ଅଧ୍ୟୟନ କରିବା । ଗୃହସ୍ଥର ଧର୍ମ ହେଲା ବାଣ୍ଟି ଖାଇବା, ଦେବଋଣ, ଋଷିଋଣ ଓ ପିତୃଋଣରୁ ମୁକ୍ତ ହେବା, ସନ୍ଧ୍ୟା ତର୍ପଣ, ଅଗ୍ନି ହୋମ ଏବଂ ପଞ୍ଚ ମହାଯଜ୍ଞ କରିବା, ଯାଚକକୁ ଯଥାଶକ୍ତି ଅନ୍ନ ଦେବା, ଯଥାଶକ୍ତି ଦେବତା-ପିତରଙ୍କ ପାଇଁ ଯଜ୍ଞ କରିବା । ବାନପ୍ରସ୍ଥର ମୁଖ୍ୟ ଧର୍ମ ହୋଇ

Digitized by srujanika@gmail.com

ତପସ୍ୟାରେ ରତ ହେବା, ବନରେ ରହି କନ୍ଦମୂଳ ଫଳାଦିରେ ଜୀବନ ନିର୍ବାହ କରିବା, ଶରୀରକୁ ଶୁଖେଇଦବା, ଶୀତକାଳରେ ଆର୍ଦ୍ରବସ୍ତ୍ର ପିନ୍ଧି, ଗ୍ରୀଷ୍ମରେ ପଞ୍ଚାଗ୍ନି ଥାପି, ବର୍ଷାକାଳରେ ସମ୍ପୂର୍ଣ୍ଣ ବର୍ଷା ସହି ଘୋର ତପସ୍ୟାରେ ରତ ହେବା, ଅଗ୍ନିହୋତ୍ର ତ୍ୟାଗ ନ କରିବା । ଯେତେବେଳେ ବୃଦ୍ଧାବସ୍ଥାରେ ଉପନୀତ ହେବେ ସେତେବେଳେ ଜ୍ଞାନପ୍ରାପ୍ତି ମଧ୍ୟ ହୋଇଥିବେ ଏବଂ ସନ୍ନ୍ୟାସ ଗ୍ରହଣ କରିନେବେ । ଏହି ଧର୍ମର ଅଙ୍ଗ ଭାବରେ ପ୍ରାଣୀମାନଙ୍କୁ ନିଜ ପକ୍ଷରୁ ଅଭୟ ଦେବା, କୌଣସି ବସ୍ତୁ ସଂଗ୍ରହ ନ କରିବା ଏବଂ ନିରନ୍ତର ଧ୍ୟାନରତ ରହିବା ସଙ୍ଗେ ସଙ୍ଗେ ଜଗତର ସମସ୍ତ ସୃଷ୍ଟିକୁ ମିଥ୍ୟା ଜ୍ଞାନ କରିବା ବିଧେୟ । କାହାରି ସହିତ ବିବାଦ ନ କରିବା, କାହାର ପକ୍ଷହୋଇ ନିଜକୁ ବିତଣ୍ଡା ମଧ୍ୟକୁ ନ ନେବା ସନ୍ନ୍ୟାସୀର ପ୍ରଧାନ ଲକ୍ଷଣ । ଅବଧୂତର ନା ଦୁଃଖ ଅଛି ନା ଶୋକ ଅଛି ? ସେ ନିର୍ଦ୍ୱନ୍ଦ୍ୱ, ନିର୍ମଳ ହୋଇ ଜଗତରେ ବାଳକବତ୍ ବିଚରଣ କରନ୍ତି ।

ଶ୍ରୀ ସୂତ କହୁଛନ୍ତି, "ହେ ମୁନିଗଣ, ଭଗବାନ ନାରଦତ ଏହି ବିଷୟ ବିସ୍ତାର କରି ବର୍ଣ୍ଣନା କରିଥିଲେ । ମାତ୍ର ମୁଁ ତା'ର କେବଳ ସଂକ୍ଷେପରେ ସାରାଂଶମାତ୍ର କହୁଛି । ଏଠାରେ କଥା ପ୍ରସଙ୍ଗରେ ତାକୁ ବିସ୍ତାରକରି ବସିଲେ କଥାର ପ୍ରବାହ ହିଁ ବାଧାପ୍ରାପ୍ତ ହେବ । ତେଣୁ ଏଠାରେ ମୁଁ କେବଳ ଦିଗଦର୍ଶନ ମାତ୍ର ଦେଇଛି । ପ୍ରଭୁଙ୍କର ଇଚ୍ଛା ହେଲେ ମୁଁ ଅନ୍ୟ ପ୍ରସଙ୍ଗରେ ତାହାର ବିସ୍ତୃତ ବର୍ଣ୍ଣନା କରିବି । ତେଣୁ ହେ ମୁନିଗଣ, ଏପରି ଭାବରେ ଦେବର୍ଷି ନାରଦ ଧର୍ମରାଜ ଯୁଧିଷ୍ଠିରଙ୍କର ପ୍ରତ୍ୟେକ ପ୍ରଶ୍ନର ଉତ୍ତର ଦେଇଥିଲେ । ତାହାପରେ ଯୁଧିଷ୍ଠିର ଅତ୍ୟନ୍ତ ଭକ୍ତି ଭାବରେ ନାରଦଙ୍କର ପୂଜା କଲେ । ନାରଦ ଯୁଧିଷ୍ଠିରଙ୍କ ଦ୍ୱାରା ଅତ୍ୟନ୍ତ ଉତ୍ତମ ଭାବରେ ସତ୍କୃତ ହେଲେ । ତା'ପରେ ସେ ତାଙ୍କର ବ୍ରହ୍ମ ବିଭୂଷିତା ବୀଣା ଉଠେଇ, ଭଗବାନଙ୍କୁ ପ୍ରଣାମ କରି 'ରାମ କୃଷ୍ଣ ହରି' କୀର୍ତ୍ତନ କରି କରି ସମସ୍ତେ ଦେଖୁଁ ଦେଖୁଁ ଆକାଶମାର୍ଗରେ ବ୍ରହ୍ମଲୋକକୁ ପ୍ରସ୍ଥାନ କଲେ ।

ସୂତ କହୁଛନ୍ତି, "ଏ ଧର୍ମରାଜ-ନାରଦ ସମ୍ବାଦ ପରମ ପବିତ୍ର । ଯଶ, କୀର୍ତ୍ତି ବୃଦ୍ଧିକାରୀ । ଯେଉଁମାନେ ଏହା ଶ୍ରଦ୍ଧାପୂର୍ବକ ଶ୍ରବଣ କରିବେ, ପଢିବେ, ସେମାନଙ୍କୁ ମନୋବାଞ୍ଛିତ ଫଳ ଅବଶ୍ୟ ପ୍ରାପ୍ତ ହେବ । ଏହି ଲୋକରେ ସେମାନେ ଶାନ୍ତିପୂର୍ବକ ସମସ୍ତ ସୁଖ ଭୋଗ କରିବେ । ମରଣାନ୍ତେ ସଦ୍‌ଗତି ପ୍ରାପ୍ତ ହେବେ । ହେ ମୁନିଗଣ, ମୁଁ ଆପଣମାନଙ୍କୁ ଧର୍ମରାଜ ନାରଦ ସମ୍ବାଦ କହିଲି । ଆପଣ ଆଉ କ'ଣ ଜାଣିବାକୁ ଇଚ୍ଛାକରନ୍ତି ?

Digitized by srujanika@gmail.com

## ଛପ୍ପୟ

ୟହ ପ୍ରସଙ୍ଗ ଅତି ଧନ୍ୟ ପୁଣ୍ୟପ୍ରଦ ପରମ ସୁହାବନ ।
ଧର୍ମ ବୃଦ୍ଧି ନିତ କରୈ ମୋକ୍ଷପ୍ରଦ ଅତିଶୟ ପାବନ ॥
ଭକ୍ତି ସହିତ ନରନାରୀ ଜାଇ ଜେ ସୁନୈ ସୁନାବୈଁ ।
ଜଗ ବନ୍ଧନ ତେଁ ଛୁଟି ମୋକ୍ଷ କୀ ପଦବୀ ପାବୈଁ ॥
ଧର୍ମରାଜ ପ୍ରତି ଦେବରଷି, କହୌ ସୁଖଦ ସମ୍ବାଦ ଅତି ।
ଶ୍ରବନ ମନନ ତେଁ ଅବସିହୀ, ହରିଚରନନ ମହଁ ହୋହି ଇତି ॥

—❋—

Digitized by srujanika@gmail.com

# ମନ୍ୱନ୍ତରାବତାରମାନଙ୍କ କଥା

ସ୍ୱାୟମ୍ଭୁବସ୍ୟେହ ଗୁରୋ ବଂଶୋଽୟଂ ବିସ୍ତାରାଚ୍ଛ୍ରୁତଃ ।
ଯତ୍ର ବିଶ୍ୱସୃଜାଂ ସର୍ଗୋ ମନୂନନ୍ୟାନ୍ ବଦସ୍ୱ ନଃ ॥
ଯତ୍ର ଯତ୍ର ହରେର୍ଜନ୍ମ କର୍ମାଣି ଚ ମହୀୟସଃ ।
ଗୃଣନ୍ତି କବୟୋ ବ୍ରହ୍ମଂସ୍ତାନି ନୋ ବଦ ଶୃଣ୍ୱତାମ୍ ॥

(ଶ୍ରୀ ଭା. ୭ । ୮ । ୧, ୧୨)

ଛପ୍ପୟ

କହେଁ ପରୀକ୍ଷିତ ପ୍ରଭୋ ପ୍ରଥମ ମନୁବଂଶ ସୁନାୟୋ ।
ମନୁ ପୁତ୍ରିନ ପତି ଭୟେ ପ୍ରଜାପତି ସର୍ଗ ବଢ଼ାୟୋ ॥
ଅନ୍ୟ ମନୁନ କୋ ବଂଶ କୃପା କରି ଔର ସୁନାବେଁ ।
ଭୟେ କୌନ ଅବତାର କର୍ମ ଗୁନ ନାମ ଗିନାବେଁ ॥
ଶୁକ ବୋଲେ ଯା କଲ୍ପ ମହଁ, ଛୈ ମନୁ ବୀତେ ଆଠ ଅରୁ ।
ହୋଁଗେ ପ୍ରକଟେଁ, ହରି ସବନ, ମହଁ ଭୂପତି ସବ ଶ୍ରବନ କରୁ ॥

ସତ୍ୟଯୁଗ, ତ୍ରେତୟା ଯୁଗ, ଦ୍ୱାପର ଯୁଗ ଏବଂ କଳି ଯୁଗ ଏମାନେ ଯେତେବେଳେ ସହସ୍ର ସହସ୍ର ବାର ବିତି ଯାଆନ୍ତି, ସେତେବେଳେ ବ୍ରହ୍ମାଙ୍କର ଗୋଟିଏ ଦିନ ବିତେ । ସେତିକି ବଡ଼ ତାଙ୍କର ରାତି । ଦିନ ବିତିଗଲା ପରେ ବ୍ରହ୍ମା ତ୍ରିଲୋକକୁ ଆପଣାର ମଧ୍ୟରେ ଲୀନ କରି ଭଗବାନଙ୍କର ଉଦରରେ ଶୋଇଯାଆନ୍ତି । ନିଶାର ଅବସାନ ହେବାପରେ ପୁଣି ସୃଷ୍ଟି କରିବା ଆରମ୍ଭ କରି ଦିଅନ୍ତି । ଯେଉଁପରି ଦୋକାନୀ ରାତିହେଲେ ତା' ଦୋକାନର ସବୁ ସାମଗ୍ରୀ ଭିତରେ ରଖି ତାଲା ଦେଇ ଶୋଇପଡ଼େ, ପ୍ରଭାତ ହେବାପରେ ପୁଣି ଦୋକାନ ଖୋଲି କାମ ଆରମ୍ଭ କରେ, ସେହିଭଳି ବ୍ରହ୍ମା ଦିବସାନ୍ତେ ଭୂ ଭୁବ ଏବଂ ସ୍ୱ ଏହି ତିନି

Digitized by srujanika@gmail.com

ଲୋକକୁ ଆପଣା ମଧ୍ୟରେ ଗୁପ୍ତ କରି ଦେଇଥାନ୍ତି । ମହ, ଜନ, ତପ, ସତ୍ୟ ଏହି ଚାରି ଲୋକ ସେହିଭଳି ଥାଆନ୍ତି । ମହର୍ଲୋକର ବସ୍ତି ଖାଲି ହୋଇଯାଏ । ସେଠାକାର ନିବାସୀ ଜନଲୋକକୁ ଚାଲି ଯାଆନ୍ତି । ଏହାର ନାମ କଳ୍ପ ପ୍ରଳୟ । ମହାପ୍ରଳୟରେ ଅର୍ଥାତ୍ ବ୍ରହ୍ମାଙ୍କର ଏକ ଶତ ବର୍ଷ ଆୟୁ ପୂର୍ଣ୍ଣ ହେବାପରେ ଯେଉଁ ପ୍ରଳୟ ହୁଏ ତାହାକୁ ମହାପ୍ରଳୟ କହନ୍ତି । ସେ ସମୟରେ କୌଣସି ଗୋଟିଏ ବି ଲୋକ ରହେ ନାହିଁ । ବ୍ରହ୍ମଲୋକ ପର୍ଯ୍ୟନ୍ତ ସମସ୍ତ ଲୋକ ବୈକୁଣ୍ଠଧାମରେ ଲୀନ ହୋଇ ଯାଆନ୍ତି । ଏହି କଳ୍ପରେ ଚଉଦ ମନ୍ୱନ୍ତର । ଏକସ୍ତରି ଚତୁର୍ଯୁଗ ସମୟରୁ କିଛି ଅଧିକରେ ଗୋଟିଏ ମନ୍ୱନ୍ତର । ସେହି ମନ୍ୱନ୍ତରର ଜଣେ ଅଧିପତି ମନୁ । ମନୁପୁତ୍ର, ସପ୍ତର୍ଷି, ଦେବଗଣ, ଇନ୍ଦ୍ର ଏବଂ ସେହି ମନ୍ୱନ୍ତରର ଜଣେ ମନ୍ୱନ୍ତରାବତାର ହୋଇଥାନ୍ତି । ଏହି କଳ୍ପରେ ସର୍ବ ପ୍ରଥମ ମନ୍ୱନ୍ତର ସ୍ୱାୟମ୍ଭୁବ ମନ୍ୱନ୍ତର ହେଲା, ଯା'ର ମନ୍ୱନ୍ତରାବତାର ହେଲେ ଭଗବାନ ଯଜ୍ଞପୁରୁଷ । କପିଳ, ନର-ନାରାୟଣ, ଆଦି ଅବତାର ମଧ୍ୟ ହେଲେ । ଏହିପରି ଏ ନିମେଷ, ପଳ, ଘଟିକା, ମୁହୂର୍ତ୍ତ, ପ୍ରହର, ଦିନ, ରାତ୍ରି, ପକ୍ଷ, ମାସ, ବର୍ଷ, ଦିବ୍ୟ ବର୍ଷ, ଯୁଗ, ମନ୍ୱନ୍ତର, କଳ୍ପ, ମହାକାଲର ଶୃଙ୍ଖଳା ବାନ୍ଧି ହୋଇ ରହିଛି । ଗୋଟିଏ ପରେ ଗୋଟିଏ କ୍ରମଶଃ ଆସିଥାନ୍ତି । ଏ ପ୍ରବାହ ଅନାଦି ଏବଂ ଅନନ୍ତ କାଳ ପର୍ଯ୍ୟନ୍ତ ଏପରି ଚାଲିଥିବ । ଏହାର ଆଦି ନାହିଁ ଅନ୍ତ ନାହିଁ, କୌଣସି କୂଳ କିନାରା ନାହିଁ । ଏହି ଅନନ୍ତ କାଳରେ ମନୁଷ୍ୟର ଦିନ ଗଣନାରେ ଏକଶତ ବର୍ଷ ଅନନ୍ତ ସାଗରରେ ଗୋଟିଏ ବିନ୍ଦୁ ସଦୃଶ ମଧ୍ୟ ନୁହେଁ । ମାତ୍ର ଏହାର ଅଭିମାନରେ ମଣିଷର ଆନନ୍ଦର ସୀମା ରହେ ନାହିଁ । ମୁଁ ଏୟା କରିଦେବି, ସେୟା କରିଦେବି । ଆରେ ଭାଇ, ତୁ କ'ଣ କରି ପକେଇବୁ, ଏ ପ୍ରବାହ ତ ସନାତନ, ତୁ ସେହି ଅବତାର ପୁରୁଷର କଥା ଶ୍ରବଣ କର । ସେଥିରେ ତୋର କଲ୍ୟାଣ ହେବ । ସେଥିରେ ଏ ଭୌତିକ ପଦାର୍ଥ ତ ଏପରି ଥିଲେ ଏବଂ ରହିଥିବେ । କାଠ ଧରି ନାଆ ଚଳେଇ ନେଲୁ ନା ଲୁହାରେ ଖୋଳ କରି ଆକାଶରେ ଉଡ଼େଇ ଦେଲୁ । ହଳ ଚଷାକରି କ୍ଷେତ ଚଷିଲୁ କିମ୍ବା ବିବିଧ ଯନ୍ତ୍ର ବାହାର କରି ବିଦ୍ୟୁତ୍ ବାହାର କଲୁ । କଣ ହେଲା ସେଇଠୁ ? ସେଥିରେ କିଛି ତଫାତ୍ ହେବ ନାହିଁ । ମନୁଷ୍ୟ ଜୀବନର ସାଫଲ୍ୟ ତ ଭଗବତ୍ ଚରିତ୍ର ଶ୍ରବଣରେ ଅଛି । ଭକ୍ତ ଏବଂ ଭଗବାନଙ୍କର ଚରଣରେ ପ୍ରୀତି ରଖିବା, ତାଙ୍କର କଥାହିଁ ଶ୍ରବଣୀୟ ଏବଂ ମନନ ଯୋଗ୍ୟ । ଆଉ ସବୁ ଜଗତର ଜଞ୍ଜାଳ ମାତ୍ର । ସବୁ ସଂସାର ଚକ୍ର । ଜନ୍ମ ମୃତ୍ୟୁ ପ୍ରଦାୟକ । ଅଧିକାଧିକ ସଂସାର ବନ୍ଧନରେ ବାନ୍ଧିବା ବସ୍ତୁ ।

ଧର୍ମରାଜ ନାରଦ ସମ୍ବାଦ ସମାପ୍ତ କରି ଯେତେବେଳେ ଶ୍ରୀ ସୂତ ନୈମିଷାରଣ୍ୟରେ ମୁନିମାନଙ୍କୁ ଆଉ କ'ଣ ଶୁଣିବାକୁ ଇଚ୍ଛା କରୁଚନ୍ତି, ବୋଲି ପଚାରିଲେ ସେତେବେଳେ ଶ୍ରୀ ଶୌନକ କହିଲେ, "ହେ ସୂତ, ଆପଣ ଏପରି ଏକ ସ୍ଥାନରେ କଥା ପ୍ରସଙ୍ଗ ସମାପ୍ତ କଲେ ଯେ ଭାବୁଛୁ ପ୍ରସଙ୍ଗ କିଭଳି ବଢିବ ? ଆମେ ହେଲୁ ଅବତାର ପ୍ରସଙ୍ଗର ରସିକ । ଆପଣ ଆମକୁ ଭଗବାନଙ୍କର ଅବତାର ଚରିତ୍ର ଶୁଣାନ୍ତୁ, କିମ୍ବା ତାଙ୍କର ଅନ୍ୟାନ୍ୟ

Digitized by srujanika@gmail.com

ଭକ୍ତମାନଙ୍କ କଥା କହନ୍ତୁ । ଅନ୍ୟ କଥା ଶୁଣିବାକୁ ଆମର ଇଚ୍ଛା ନାହିଁ । ତେବେ ଏତକ କହନ୍ତୁ ଯେ ଗଙ୍ଗା ତଟରେ ଅନ୍ନ ଜଳ ତ୍ୟାଗକରି ରହିଥିବା ମହାରାଜ ପରୀକ୍ଷିତ ଶୁକଦେବଙ୍କୁ ପୁଣି କଣ ପ୍ରଶ୍ନ କଲେ ? ସେ ପ୍ରଶ୍ନର ଅବଶ୍ୟ ପ୍ରସଙ୍ଗାନୁସାରୀ ହୋଇଥିବ । ଏହି କଥା ବଢ଼େଇବା କ୍ରମରେ ସେ ଅବଶ୍ୟ ପ୍ରାସଙ୍ଗିକ ପ୍ରଶ୍ନ କରିଥିବେ ।

ଏହା ଶୁଣି ଶ୍ରୀସୂତ ହସିଲେ । କହିଲେ, "ମହାଭାଗ, ଆପଣ ସର୍ବଜ୍ଞ, ଆପଣ ତପସ୍ୟା ବଳରେ, ଭୂତ ଭବିଷ୍ୟତ ବର୍ତ୍ତିମାନ ସମସ୍ତ କାଳର କଥା ଜାଣି ପାରନ୍ତି । ଯାହା ଆପଣ ମୋତେ ପଚାରୁଛନ୍ତି, ସେହି ପ୍ରଶ୍ନ ଭଳି ପ୍ରଶ୍ନ ଭରତ ବଂଶାବତଂଶ ମହାରାଜ ପରୀକ୍ଷିତ ଅବଧୂତ-ଚନ୍ଦ୍ର-ଚୂଡ଼ାମଣି ମୋର ଗୁରୁଦେବ ବ୍ୟାସନନ୍ଦନ ଭଗବାନ ଶ୍ରୀ ଶୁକଦେବଙ୍କୁ ପଚାରିଥିଲେ । ସେହି ପ୍ରଶ୍ନର ଉତ୍ତରରେ ଆପଣଙ୍କ ପ୍ରଶ୍ନର ଉତ୍ତର ଆସିଯିବ ।"

ମହାରାଜ ପରୀକ୍ଷିତ ବିନୟ ସହକାରେ ଶୁକଦେବଙ୍କୁ ପ୍ରଶ୍ନ କରିଥିଲେ, "ପ୍ରଭୁ, ବର୍ତ୍ତିମାନ ପର୍ଯ୍ୟନ୍ତ ଆପଣ ସ୍ୱାୟଂଭୁବ ମନ୍ୱନ୍ତରରେ ସମ୍ଭୂତ ହୋଇଥିବା ମନୁ ସନ୍ତାନ ମାନଙ୍କର, ସେମାନଙ୍କର ପୁତ୍ର ପୌତ୍ର ଏବଂ ଦୌହିତ୍ରଙ୍କର ବଂଶର ବର୍ଣ୍ଣନା କଲେ । ଏମାନେ ଏହି ସମସ୍ତ ସୃଷ୍ଟିକୁ ଜୀବରେ ପରିପୂର୍ଣ୍ଣ କରିଦେଲେ । ବ୍ରହ୍ମନ୍, ଆପଣ କହିଥିଲେ ଯେ, ଗୋଟିଏ କଳ୍ପରେ ଚଉଦ ଜଣ ମନୁ ହୋଇଥାନ୍ତି । ବର୍ତ୍ତିମାନ ପର୍ଯ୍ୟନ୍ତ ଆପଣ ଜଣେ ମାତ୍ର ମନୁଙ୍କର ବଂଶ ବର୍ଣ୍ଣନା କରିଛନ୍ତି । ଆମକୁ ଅବଶିଷ୍ଟ ତେର ଜଣ ମନୁଙ୍କର ବଂଶ ସମ୍ବନ୍ଧରେ କହନ୍ତୁ ।"

ପରୀକ୍ଷିତଙ୍କର ଏହି ପ୍ରଶ୍ନ ଶୁଣି ଶ୍ରୀ ଶୁକଦେବ ପ୍ରସନ୍ନ ଚିତ୍ତରେ ହସିଲେ । କହିଲେ, "ରାଜନ୍, ଆଜିକି ଚତୁର୍ଥ ଦିନ ହେଲା ଜଣେ ମାତ୍ର ମନୁଙ୍କର କଥା କହୁଥିଲି । ଏଥିରେ ଶ୍ରୀମଦ୍ଭାଗବତର ସପ୍ତମ ସ୍କନ୍ଧ ସମାପ୍ତ ହେଲା । ଆଉ ଆପଣଙ୍କ ହାତରେ ମାତ୍ର ତିନି ଦିନ ଅଛି । ବାର ସ୍କନ୍ଧରୁ ଆଉ ବହୁତ ବାକି ଅଛି । ଯଦି ବିସ୍ତାରକରି ଅବଶିଷ୍ଟ ତେର ଜଣଙ୍କ ବିଷୟରେ କହିବି ତା'ହେଲେ ସେ କଥା ବର୍ଷ ବର୍ଷ ଧରି ସମାପ୍ତ ହେବ ନାହିଁ । ଆପଣ ଏକାସାଙ୍ଗରେ ଏତେ ବଡ଼ ପ୍ରଶ୍ନ କରିଛନ୍ତି ଯାହାର ଆଗକୁ ପ୍ରଶ୍ନ କରିବାର ଆଉ ଅବସର ନାହିଁ । ଗୋଟିଏ ପରେ ଗୋଟିଏ, ତା'ପରେ ଆଉ ଏକ ମନୁଙ୍କର କଥା କହି ବସିଲେ କେତେବେଳେ ମଧ୍ୟ ତାହା ସମାପ୍ତ ହେବ ନାହିଁ ।"

ଏହା ଶୁଣି ମହାରାଜ ପରୀକ୍ଷିତ ତତ୍କ୍ଷଣାତ୍ କହିଲେ, "ନା ପ୍ରଭୁ, ସେଭଳି ମୋର ଅଭିପ୍ରାୟ ନୁହେଁ, ଯେ ଆପଣ ଜଣ ଜଣ କରି ସେମାନଙ୍କର ବର୍ଣ୍ଣନା କରନ୍ତୁ । ମୁଁ ଚାହୁଁଛି, ଏହି ମନ୍ୱନ୍ତରମାନଙ୍କରେ ଭଗବାନ ଯେଉଁ ଅବତାର ଗ୍ରହଣ କଲେ, ସେହି ମନ୍ୱନ୍ତରାବତାରରେ ପ୍ରଭୁ ଯେଉଁ ଯେଉଁ ଲୀଳା କଲେ ତାହା ସଂକ୍ଷେପରେ ବର୍ଣ୍ଣନା କରନ୍ତୁ । ଏହି

Digitized by srujanika@gmail.com

କଳ୍ପରେ କେତେ ମନୁ ହେବେ ଏବଂ କେତେ ହୋଇ ସାଉଛନ୍ତି । ବର୍ତ୍ତମାନ କେଉଁ ମନ୍ୱନ୍ତର ଏବଂ କେତୋଟି ଅବଶେଷ ଅଛି । ଏହା ସବୁ ଯାହା ସଂକ୍ଷେପରେ ଏବଂ ଯାହା ବିସ୍ତାରିତ କରି କହିବା କଥା କହନ୍ତୁ ।"

ଏହା ଶୁଣି ଶ୍ରୀ ଶୁକଦେବ କହିଲେ, "ରାଜନ୍ ଏହି କଳ୍ପରେ କାହିଁକି ପ୍ରତ୍ୟେକ କଳ୍ପରେ ଚଉଦ ମନ୍ୱନ୍ତର ହୋଇଥାଏ । ଏହି କଳ୍ପର (ବ୍ରହ୍ମାଙ୍କର ଦିନେ) ଛଅ ମନ୍ୱନ୍ତର ବିତି ଗଲଣି, ସପ୍ତମ ଚାଲିଛି । ଆହୁରି ସାତ ଆସିବ । ଯେଉଁ ମନୁ ବିତିଗଲେଣି ସେମାନେ ହେଲେ ସ୍ୱାୟଂଭୁବ, ସ୍ୱାରୋଚିଷ, ପ୍ରିୟବ୍ରତ, ତାମସ, ରୈବତ, ଚକ୍ଷୁଷ । ବର୍ତ୍ତମାନ ଯେଉଁ ମନ୍ୱନ୍ତର ଚାଲିଛି, ତାହା ସପ୍ତମ । ତା'ର ଅଧିପତି ବୈବସ୍ୱତ, ବିବସ୍ୱାନଙ୍କ ପୁତ୍ର ଶ୍ରାଦ୍ଧଦେବ । ଏଭଳି ସାତ ମନ୍ୱନ୍ତର ହେଲା । ଆଗାମୀ ସାତ ଜଣ ମନୁ ହେବେ—ସାବର୍ଣ୍ଣି, ଦକ୍ଷସାବର୍ଣ୍ଣି, ବ୍ରହ୍ମ ସାବର୍ଣ୍ଣି, ଧର୍ମ ସାବର୍ଣ୍ଣି ଆଦି । ଏମାନେ କ୍ରମଶଃ ଜଣେ ପରେ ଜଣେ ସମୟେ ଆପଣା ଆପଣା ମନ୍ୱନ୍ତର ସମାପ୍ତି ପର୍ଯ୍ୟନ୍ତ ଶାସନ କରିବେ । ଏହି ପ୍ରତ୍ୟେକ ମନ୍ୱନ୍ତରରେ ଭଗବାନଙ୍କର ଗୋଟିଏ ଲେଖାଏଁ ଅବତାର ହେବ ।"

ଏହା ଶୁଣି ଶୌନକ କହିଲେ, "ହେ ସୂତ, ଆପଣ ଆମମାନଙ୍କୁ ଭଗବାନଙ୍କର ଅବତାର ଚରିତ୍ର କିଛି କହିବା ହୁଅନ୍ତୁ ।"

ସୂତ କହିଲେ, "ଭଗବନ୍, ପ୍ରତ୍ୟେକ ମନ୍ୱନ୍ତରରେ ଭଗବାନ ଛଅଗୋଟି ରୂପ ଧାରଣ କରି ରହିଥାନ୍ତି । ଏହି ଛଅ ଗୋଟି ଚରିତ ଭଗବାନଙ୍କ ଚରିତର ଅନ୍ତର୍ଗତ । ମନୁ, ମନୁପୁତ୍ର ଇନ୍ଦ୍ର, ଦେବଗଣ, ସପ୍ତର୍ଷି, ଏବଂ ମନ୍ୱନ୍ତରାବତାର । ଭଗବାନ ଆପଣାର କ୍ରୀଡ଼ା ନିମନ୍ତେ ଏହି ଛଅ ଗୋଟି ରୂପଧାରଣ କରି ପ୍ରତ୍ୟେକ ମନ୍ୱନ୍ତରରେ ଅବତାର ନେଇ କୌଣସି ନା କୌଣସି ବିଶିଷ୍ଟ କାର୍ଯ୍ୟ ସମ୍ପାଦନ କରନ୍ତି ।"

ଏହାଶୁଣି ଶୌନକ ପଚାରିଲେ, "ହେ ସୂତ, ସର୍ବପ୍ରଥମେ ସ୍ୱାୟଂଭୁବ ମନ୍ୱନ୍ତରରେ ଭଗବାନଙ୍କର କେଉଁ କେଉଁ ମନ୍ୱନ୍ତରାବତାର ହେଲା, ଏବଂ କେଉଁ କେଉଁ କାର୍ଯ୍ୟ ବିଶେଷ ରୂପେ ସମ୍ପାଦନ କରିଥିଲେ ତାହା କହନ୍ତୁ ।

ଏହାଶୁଣି ସୂତ କହିଲେ, 'ଭଗବାନ, ଏହା ତ ମୁଁ କହିସାରିଛି ଯେ ପ୍ରଥମ ମନ୍ୱନ୍ତରର ଅଧିପତି ସ୍ୱାୟଂଭୁବ ମନୁ ଥିଲେ । ତାଙ୍କର ଶତରୂପା ନାମ୍ନୀ ରାଣୀ ଥିଲେ । ତାଙ୍କ ଗର୍ଭରୁ ଆକୂତି, ଦେବହୂତି, ଏବଂ ପ୍ରସୂତି ନାମ୍ନୀ ତିନୋଟି କନ୍ୟା ଏବଂ ପ୍ରିୟବ୍ରତ, ଉତ୍ତାନପାଦ ନାମକ ଦୁଇପୁତ୍ର ଜନ୍ମଗ୍ରହଣ କରିଥିଲେ । ଭଗବତୀ ଦେବହୂତିଙ୍କ ଗର୍ଭରୁ ଭଗବାନ ପ୍ରଥମ ଯୁଗାବତାର କପିଳ ଜନ୍ମହେଲେ, ଯେ ସଂସାରରେ ଜ୍ଞାନର ଉପଦେଶ ଦେଲେ । ତାଙ୍କ ବିଷୟରେ ତ ମୁଁ ପ୍ରଥମରୁ କହିଛି । ଭଗବତୀ ଆକୂତିଙ୍କର ଗର୍ଭରୁ

Digitized by srujanika@gmail.com

ଭଗବାନଙ୍କର ଯେଉଁ ମନ୍ୱନ୍ତରାବତାର ହେଲା ସେ ସଂସାରରେ ଧର୍ମର ପ୍ରଚାର କରିଥିବା ହେତୁ ଯଜ୍ଞ ନାମରେ ପ୍ରସିଦ୍ଧ ହେଲେ । ଏହି ଯଜ୍ଞ ଭଗବାନ ସ୍ୱାୟଂଭୁବ ମନୁଙ୍କର ଏବଂ ସେହି ମନ୍ୱନ୍ତରର ଇନ୍ଦ୍ର ହୋଇ ଇନ୍ଦ୍ରପଦର କେଉଁପରି ପାଳନ କରାଯାଏ ତା'ର ଶିକ୍ଷା ଦେଲେ ।

ଏହାଶୁଣି ଶୌନକ ପଚାରିଲେ, "ହେ ସୁତ ! ସ୍ୱାୟଂଭୁବ ମନୁଙ୍କୁ ଅସୁର ରାକ୍ଷସମାନେ କାହିଁକି କଷ୍ଟ ଦେଲେ ଏବଂ ଯଜ୍ଞ ଭଗବାନ ତାଙ୍କର କିପରି ଭାବରେ ରକ୍ଷାକଲେ ସେହି ପ୍ରସଙ୍ଗକୁ ଆପଣ ଆମକୁ ବିସ୍ତାର କରି କହିବା ହୁଅନ୍ତୁ ।"

ସୁତ କହିଲେ, "ହେ ମୁନିଗଣ, ବିସ୍ତାର କରି କହିବା ତ ସମ୍ଭବ ନୁହେଁ । କାରଣ ମୋତେ ଅନେକ କଥା କହିବାକୁ ହେବ । ହଁ, ସଂକ୍ଷେପରେ କହୁଛି । ଆପଣମାନେ ସାବଧାନ ହୋଇ ଶ୍ରବଣ କରନ୍ତୁ ।"

ଯେତେବେଳେ ଭଗବାନ୍ ସ୍ୱାୟଂଭୁବ ମନୁ ତାଙ୍କର ପୁତ୍ରୀ ଏବଂ ପୌତ୍ର ମାନଙ୍କର ବିବାହ ସମାପନ କଲେ, ସେତେବେଳେ ତାଙ୍କର ସଂସାରି ବିଷୟ ଭୋଗପ୍ରତି ଅରୁଚି ଜାଗ୍ରତ ହେଲା ଏବଂ ସେ ଆପଣାର ସମସ୍ତ ରାଜ୍ୟଭାରର ପୁତ୍ରକୁ ସମର୍ପଣ କରି ବୈରାଗ୍ୟ ଗ୍ରହଣ କରି ସମ୍ପୂର୍ଣ୍ଣ ଭୋଗ ବିରକ୍ତ ହୋଇ, ପତ୍ନୀ ଶତରୂପାଙ୍କ ସହିତ ତପସ୍ୟା କରିବାକୁ ଅରଣ୍ୟକୁ ଗମନ କଲେ ।

ସେଠାରେ ପହଞ୍ଚ ସେ ଗୁହ୍ୟ ମନ୍ତ୍ରୋପନିଷଦ୍‌ସାରର ନିରନ୍ତର ଜପ କରିବାକୁ ଲାଗିଲେ । ସେ ଯେଉଁ ମନ୍ତ୍ର ଜପ କରୁଥିଲେ ତା'ର ସାର ହେଲା, 'ଯାହାଦ୍ୱାରା ଏ ସମସ୍ତ ବିଶ୍ୱବ୍ରହ୍ମାଣ୍ଡ ବ୍ୟାପ୍ତ, ଯାହାଙ୍କର ଦୃଷ୍ଟିଦ୍ୱାରା ସଂସାରର ସବୁ ପ୍ରାଣୀଙ୍କର ଚୈତନ୍ୟ ଅଛି ମାତ୍ର ଯାହାଙ୍କୁ କାହାରିହେଲେ ଚେତନତାର ଆବଶ୍ୟକତା ନାହିଁ, ଏହି ବିଶ୍ୱ ଶୟନ କଲେ ହେଁ ଯେ ସାକ୍ଷୀଭାବରେ ସର୍ବଦା ଜାଗ୍ରତ ହୋଇ ରହିଥାନ୍ତି, ସେ ଜଗତକୁ ଜାଣନ୍ତି ମାତ୍ର ତାହାଙ୍କୁ ଜଗତ ଜାଣେ ନାହିଁ । ଯାହାକିଛି ବି ଦୃଶ୍ୟ ଏବଂ ଶ୍ରୁତ ଅଛି ସବୁ ତାଙ୍କରି ଦ୍ୱାରା ବ୍ୟାପ୍ତ । ତେଣୁ ସେ ସର୍ବବ୍ୟାପକ ବିଭୁ ଏବଂ ବ୍ରହ୍ମ ଅଟନ୍ତି । ଜଗତର ଯାହା କିଛି ଅଛି ସବୁ ଈଶ ଦ୍ୱାରା ପରିବୃତ୍ତ, ତେଣୁ ଭକ୍ତିଭାବରେ ସବୁ ତାଙ୍କୁ ସମର୍ପିତ କରି ଭୋଗ କରିବା ଉଚିତ, ପ୍ରସାଦ ରୂପରେ ଗ୍ରହଣ କରିବା ଉଚିତ । କେତେବେଳେ ହେଲେ କାହାର ଧନପ୍ରତି ଆସକ୍ତ ହେବା ଉଚିତ ନୁହେଁ । ତାହା ଦ୍ରଷ୍ଟା, ଚକ୍ଷୁ, କର୍ଣ୍ଣ, ଶ୍ରୋତ୍ର ଆଦି ଇନ୍ଦ୍ରିୟର ବିଷୟ ନୁହେଁ । ଏହି ବାହ୍ୟ ଇନ୍ଦ୍ରିୟମାନଙ୍କ ଦ୍ୱାରା ସେମାନଙ୍କ ବିଷୟରେ ଜାଣିବା ଅସମ୍ଭବ, ମାତ୍ର ସେ ସ୍ୱୟଂ ଜ୍ଞାନ ସ୍ୱରୂପ । ତାଙ୍କର ଜ୍ଞାନ କଦାପି କ୍ଷୀଣ ହୁଏ ନାହିଁ । ସେହି ସର୍ବାନ୍ତକରଣ ବିହାରୀ, ସମସ୍ତ ଆସକ୍ତି ରହିତ, ପରାତ୍ପର ପ୍ରଭୁଙ୍କର ଧ୍ୟାନ

Digitized by srujanika@gmail.com

କରିବା ଉଚିତ । ଯେଉଁ ପ୍ରଭୁଙ୍କର ଆଦି. ଅନ୍ତ, ମଧ୍ୟ କିଛି ବୋଲି କିଛି ନାହିଁ, ଯାହାଙ୍କର କେହି ଆପଣାର ବା ପର ନୁହନ୍ତି, ଯେ ନା ବାହାରେ ଅଛନ୍ତି ନା ଭିତରେ, ଅର୍ଥାତ୍ ସର୍ବତ୍ର ଅଛନ୍ତି, ଯେ ଆଦି, ମଧ୍ୟ, ଅନ୍ତ, କର୍ତ୍ତା, ଧର୍ତ୍ତା, ହର୍ତ୍ତା ସବୁ କିଛି; ଏହି ଦୃଶ୍ୟ ପ୍ରପଞ୍ଚ ଏକମାତ୍ର ତାଙ୍କଦ୍ୱାରା ଉତ୍ପନ୍ନ ହୋଇଛି । ତାଙ୍କର ସ୍ୱରୂପ ସତ୍ୟ ଅଟେ । ଚେତନ ଅନନ୍ତ ଅଟେ; ଏବଂ ସେ ସର୍ବତ୍ର ପରିପୂର୍ଣ୍ଣ ବୃହତ୍ ହୋଇ ବ୍ରହ୍ମ ବୋଲାଇଥାନ୍ତି ।

ଏହି ବିଶ୍ୱହିଁ ତାଙ୍କର ପ୍ରତ୍ୟକ୍ଷ ସ୍ଥୂଳ ଶରୀର । ତାଙ୍କର ଅନନ୍ତ ନାମ । ଈଶ୍ୱର, ସତ୍ୟରୂପ, ସ୍ୱୟଂପ୍ରକାଶ, ଅଜନ୍ମା, ତଥା ପୁରାଣ ପୁରୁଷ ଏସବୁ ତାଙ୍କର ପ୍ରସିଦ୍ଧ ନାମ । ସେ ତିନୋଟି ଶକ୍ତିର ଏକମାତ୍ର ସ୍ୱାମୀ । ଆପଣାର ମାୟା ଶକ୍ତି ଦ୍ୱାରା ଏହି ବିଶ୍ୱବ୍ରହ୍ମାଣ୍ଡର ରଚନା କରି ସେ ତାରି ଦ୍ୱାରା ପାଳନ କରି କରାଇ ଥାଆନ୍ତି । ସେ ନିଜର ନିତ୍ୟସିଦ୍ଧ ଜ୍ଞାନ ଶକ୍ତିଦ୍ୱାରା ଏହି ସବୁ ତ୍ୟାଗ କରି ସର୍ବଥା ନିର୍ଲିପ୍ତ ହୋଇ ଯାଆନ୍ତି । ଯଦ୍ୟପି କର୍ମବନ୍ଧନର କାରଣ ତଥାପି ନୈଷ୍କର୍ମର ସିଦ୍ଧି ନିମନ୍ତେ ବି ତ ସାଧନରୂପ କର୍ମ କରିବାକୁ ପଡିଥାଏ । ସେ ତାଂରିଦ୍ୱାରା ସକାମ କର୍ମ ସ୍ଥାନରେ ନିଷ୍କାମ କର୍ମ କରିବାର ଚେଷ୍ଟା କରନ୍ତି, କାରଣ ନିଷ୍କାମଭାବରେ କରାଯାଇଥିବା କର୍ମ ହିଁ ମୋକ୍ଷ ପ୍ରଦାନ କରିବାକୁ ସମର୍ଥ । ଯଦି କର୍ମ କରିବା ମାତ୍ରକେ ହିଁ ବନ୍ଧନ ହେଉଥାନ୍ତା, ତାହେଲେ ଭଗବାନ ନାନା ଅବତାର ଗ୍ରହଣ କରି ବିବିଧ କର୍ମ କାହିଁକି କରନ୍ତେ ! ସେ ସର୍ବାନ୍ତର୍ଯ୍ୟାମୀ ପ୍ରଭୁ କର୍ମ କରିଥାନ୍ତି, ଆତ୍ମ ଲାଭ ହେତୁ ପୂର୍ଣ୍ଣକାମ ହୋଇଥିବା ହେତୁ ସେହି କର୍ମରେ ଆସକ୍ତ ହୁଅନ୍ତି ନାହିଁ । ଅନାସକ୍ତ ହୋଇ କର୍ମ କରିଥାନ୍ତି । ଏପରି ଯେଉଁମାନେ ତଦୀୟ, ପ୍ରପନ୍ନ, ଭଗବତ୍ ଶରଣାପନ୍ନ ଅଟନ୍ତି, ସେମାନେ ମଧ୍ୟ ନିଷ୍କାମ କର୍ମ କରି ସେହି କର୍ମର ଫଳରେ ଆସକ୍ତି ରଖନ୍ତି ନାହିଁ । ଯେଉଁ ପ୍ରଭୁ ସମସ୍ତଙ୍କୁ ଶିକ୍ଷା ଦେଇଥାନ୍ତି, ସେ ସ୍ୱୟଂ ନିଷ୍କାମ କର୍ମର ଆଚରଣ କରି ଆପଣାର ସନାତନ ମାର୍ଗରେ ସ୍ଥିର ହୋଇ ରହିଥାନ୍ତି । ସେ ଜ୍ଞାନ ସ୍ୱରୂପ ହୋଇଥିବା ହେତୁ ଅହଂକାର ରହିତ ଅଟନ୍ତି, ସେ ପୂର୍ଣ୍ଣକାମ ହୋଇ ମଧ୍ୟ ନିଷ୍କାମ, ସେ ଅନ୍ୟର ପ୍ରେରଣାରେ କାର୍ଯ୍ୟ କରନ୍ତି ନାହିଁ, ସେ ସମ୍ପୂର୍ଣ୍ଣ ଧର୍ମର ପ୍ରବୃତ୍ତି ଜାଗ୍ରତ କରାଇଥାନ୍ତି । ମୁଁ ସେହି ପରାତ୍ପର ପ୍ରଭୁଙ୍କର ଶରଣାପନ୍ନ ହେଉଛି ।

ଶ୍ରୀ ଶୁକଦେବ କହୁଛନ୍ତି, 'ରାଜନ୍ ! ଏପରି ଭାବରେ ସ୍ୱାୟଂଭୁବ ମନୁ ଧ୍ୟାନ ତନ୍ମୟ ହୋଇ ଏକାଗ୍ର ଚିତ୍ତରେ ଏହି ମନ୍ତ୍ରୋପନିଷଦର ନିରନ୍ତରେ ଜପ କରୁଥିଲେ । ଜପ କରିକରି ତାଙ୍କର ଶରୀର ପର୍ଯ୍ୟନ୍ତ ଚେତନା ରହିଲା ନାହିଁ । ସେତେବେଳେ ସେଠାରେ ଅନେକ ରାକ୍ଷସ ଉପସ୍ଥିତ ହେଲେ । ସେମାନେ ବୁଭୁକ୍ଷା ପ୍ରପୀଡ଼ିତ ଥିଲେ । କ୍ଷୁଧାରେ ସେମାନେ କାତର ହୋଇ ଏକାସାଙ୍ଗରେ ମନୁଙ୍କୁ ଖାଇବାକୁ ଦୌଡ଼ିଲେ । ସେତେବେଳେ ସେ ତ ଧ୍ୟାନମଗ୍ନ ଥିଲେ । ମାତ୍ର ସର୍ବାନ୍ତର୍ଯ୍ୟାମୀ ପ୍ରଭୁ, ଯେ ଯଜ୍ଞରୂପ ଧାରଣ କରି ମନୁପୁତ୍ରୀ

Digitized by srujanika@gmail.com

ଆକୂତିଙ୍କର ଗର୍ଭରୁ ଜନ୍ମ ହୋଇଥିଲେ, ସେ ତୁରନ୍ତ ସେଠାରେ ଆପଣାର ଯାମ ଆଦି ପୁତ୍ରମାନଙ୍କ ସହିତ ପହଞ୍ଚିଲେ । ସେ ଆସି ଯକ୍ଷ ରାକ୍ଷସ ମାନଙ୍କ ସହିତ ଘନଘୋର ଯୁଦ୍ଧକଲେ । ଶେଷରେ ରାକ୍ଷସମାନେ ପରାସ୍ତ ହେଲେ । ଭଗବାନ ସେମାନଙ୍କୁ ମାରି ଘଉଡେଇ ଦେଲେ । ଭଗବାନଙ୍କର ଏରୂପ କାର୍ଯ୍ୟ ଦେଖି ଦେବଗଣ ଅତ୍ୟନ୍ତ ପ୍ରସନ୍ନ ହେଲେ । ତା'ପରେ ସବୁ ଦେବତା ଏକତ୍ର ତାଙ୍କୁ ଦେବେନ୍ଦ୍ର ହେବାକୁ ପ୍ରାର୍ଥନା କଲେ । ଦେବତାମାନଙ୍କର ପ୍ରାର୍ଥନା ସ୍ୱୀକାର କରି ଭଗବାନ ସ୍ୱର୍ଗର ଇନ୍ଦ୍ରାସନରେ ବିରାଜମାନ କଲେ । ତାଙ୍କର ଯାମ ପ୍ରଭୃତି ଯେତେ ପୁତ୍ର ଥିଲେ ସେମାନେ ସମସ୍ତେ ସେହି ମନ୍ୱନ୍ତରରେ ଗଣ ହେଲେ । ଏପରି ଭାବରେ ଭଗବାନ ଇନ୍ଦ୍ର ହୋଇ ସେହି ମନ୍ୱନ୍ତରର ପାଳନ କଲେ । ଏହା ପ୍ରଥମ ମନ୍ୱନ୍ତରାବତାରର କଥା ।

ସ୍ୱାୟଂଭୁବ ମନୁଙ୍କର ମନ୍ୱନ୍ତର ବିତିଯିବା ପରେ ଦ୍ୱିତୀୟ ମନ୍ୱନ୍ତରରେ ଅଗ୍ନିପୁତ୍ର ସ୍ୱରୋଚିଷ ଦ୍ୱିତୀୟ ମନୁ ହେଲେ । ତାଙ୍କର ଦ୍ୟୁମାନ, ସୁଷେଣ ତଥା ରୋଚିଷ୍ମାନ୍ ଆଦି ମନୁପୁତ୍ର ଜାତ ହେଲେ । ସେହି ମନ୍ୱନ୍ତରର ଇନ୍ଦ୍ରଙ୍କ ନାମ ଥିଲା ରୋଚନ । ତୁଷିତ ନାମକ ଦେବଗଣ ହେଲେ ଏବଂ ଊର୍ଜସ୍ତମ୍ଭ ଆଦି ସାତ ଜଣ ମୁନି ସପ୍ତର୍ଷି ପଦ ଗ୍ରହଣ କଲେ । ଯେଉଁପରି ପ୍ରଥମ ମନ୍ୱନ୍ତରରେ ମନ୍ୱନ୍ତରାବତାର ଏବଂ ଇନ୍ଦ୍ର ଉଭୟ ପଦକୁ ଭଗବାନ ସୁଶୋଭିତ କରିଥିଲେ ସେଭଳି ଏ ମନ୍ୱନ୍ତରରେ ହୋଇନାହିଁ । ଏହି ମନ୍ୱନ୍ତରରେ ରୋଚନ ପୃଥକ୍ ଇନ୍ଦ୍ର ହେଲେ, ଏବଂ ବେଦଶିରା ନାମକ ଋଷିଙ୍କର ତୁଷିତା ନାମ୍ନୀ ପତ୍ନୀ ଗର୍ଭରୁ ଭଗବାନ ଅବତାର ଗ୍ରହଣ କଲେ ।"

ଏହା ଶୁଣି ଶୌନକ ପଚାରିଲେ, "ହେ ସୂତ, ସ୍ୱରୋଚିଷ ମନୁ ପୂର୍ବଜନ୍ମରେ କିଏ ଥିଲେ ? କେଉଁ ପୁଣ୍ୟର ପ୍ରଭାବରେ ତାଙ୍କୁ ଏ ତ୍ରୈଲୋକ୍ୟ ବନ୍ଦିତ ପଦ ପ୍ରାପ୍ତ ହେଲା ? ଆପଣ ଉଚିତ ମନେ କରୁଥିଲେ ଆମକୁ କହନ୍ତୁ ।

ସୂତ କହିଲେ ମହାତ୍ମାଗଣ, ଏହି ଦ୍ୱିତୀୟ ମନୁଙ୍କର କଥା ଅତ୍ୟନ୍ତ ସରସ ମନୋରଞ୍ଜକ ଓ ଶିକ୍ଷାପ୍ରଦ । ମୁଁ କହୁଛି, ଆପଣମାନେ ଦତ୍ତଚିତ୍ତ ହୋଇ ଶ୍ରବଣ କରନ୍ତୁ ।

କାଶୀ କ୍ଷେତ୍ରରେ ଭଗବତୀ ଭାଗୀରଥୀରେ ଆସି ପୁଣ୍ୟତୋୟା ବରୁଣା ମିଳିତ ହୋଇଛନ୍ତି । ବରୁଣା ନଦୀ ଅତ୍ୟନ୍ତ ପବିତ୍ର ନଦୀ । ସେହି ନଦୀ ତଟରେ, ପ୍ରାଚୀନ କାଳରେ ଅରୁଣାସ୍ପଦ ନାମକ ଏକ ସୁନ୍ଦର ନଗର ଥିଲା । ସେହି ନଗରରେ ଜଣେ ଅତ୍ୟନ୍ତ ସଦାଚାରୀ କର୍ମକାଣ୍ଡରତ ବିଦ୍ୱାନ ବ୍ରାହ୍ମଣ ଥିଲେ । ସେ ବ୍ରାହ୍ମଣ କୁମାର ଏତେ ସୁନ୍ଦର ଥିଲେ ଯେ ଦୂର ଦୂରାନ୍ତରୁ ଲୋକେ ତାଙ୍କୁ ଦେଖିବାକୁ ଆସୁଥିଲେ । ସ୍ୱର୍ଗରେ ଯେଉଁପରି ଅଶ୍ୱିନୀ କୁମାର ସବୁଠାରୁ ସୁନ୍ଦର ସେହିପରି ମର୍ତ୍ତ୍ୟଲୋକରେ ସେ ବ୍ରାହ୍ମଣ କୁମାର ସୁନ୍ଦର ଥିଲେ ।

Digitized by srujanika@gmail.com

ତାଙ୍କର ଶରୀର ଯେପରି ସୁନ୍ଦର ଥିଲା ଅନ୍ତଃକରଣ ମଧ୍ୟ ସେଭଳି ସ୍ୱଚ୍ଛ ଥିଲା, ନିର୍ମଳ ତଥା ପବିତ୍ରତା ପୂର୍ଣ୍ଣ ଥିଲା । ସେ ଆଗତ ଅତିଥିମାନଙ୍କ ସେବା ସତ୍କାର କରି ଅତ୍ୟନ୍ତ ଆନନ୍ଦଲାଭ କରୁଥିଲେ । ଏହାଫଳରେ ତାଙ୍କର ସୁନାମ ଚତୁର୍ଦ୍ଦିଗ ବ୍ୟାପି ଯାଇଥିଲା । ଯେ କୌଣସି ଅତିଥି ଯାହାକୁ ବି ଆଶ୍ରୟ ନିମନ୍ତେ ସ୍ଥାନ ପଚାରୁଥିଲେ ସେ ତାଙ୍କୁ ସେହି ବ୍ରାହ୍ମଣ କୁମାରଙ୍କ ଠିକଣା କହିଦେଉଥିଲେ ଏବଂ ସେହି ବ୍ରାହ୍ମଣକୁମାର ମଧ୍ୟ ସେ ଅତିଥିଙ୍କର ପରମ ଆଦର ସହକାରେ ସେବା ସତ୍କାର କରୁଥିଲେ । ରହିବା'ର ବନ୍ଦୋବସ୍ତ କରୁଥିଲେ, ଭୋଜନ ସାମଗ୍ରୀ ଦେଉଥିଲେ ଏବଂ ତାହା ବ୍ୟତୀତ ସେ ଆଉ ଯାହାଇଚ୍ଛା କରୁଥିଲେ ଯଥା-ସାଧ୍ୟ ତା'ର ବ୍ୟବସ୍ଥା କରିଦେଉଥିଲେ । ଏହା ଫଳରେ ତାଙ୍କର ଖ୍ୟାତି ସର୍ବତ୍ର ବ୍ୟାପ୍ତ ହୋଇଥିଲା ଏବଂ ଲୋକେ ମଧ୍ୟ ତାଙ୍କୁ ଅତି ଆଦର କରିବାକୁ ଲାଗିଲେ । ବ୍ରାହ୍ମଣ ପ୍ରକୃତି-ପ୍ରେମୀ ଥିଲେ । ଏକାନ୍ତରେ ସେ ଅନେକ ସମୟ ଧରି ବୃକ୍ଷ ଲତା ପତ୍ରମାନଙ୍କୁ ଦେଖୁଥିଲେ । ଭାବୁଥିଲେ ଏତେ ସୁନ୍ଦର ପତ୍ର ପୁଷ୍ପମାନଙ୍କର ସୃଷ୍ଟି କିଏ କଲା ? ଏତେ ଫଳବନ୍ତ ବୃକ୍ଷ-ମାନଙ୍କର ଉତ୍ପତ୍ତି କିପରି ହେଲା ? ଏ ପୃଥିବୀ କେତେ ବଡ଼ ? ଏ ପୃଥିବୀରେ କେତୋଟି ଦେଶ ଅଛି ? ଲୋକେ ହିମାଳୟର ଅତି ପ୍ରଶଂସା କରନ୍ତି, ସେ ପର୍ବତ କେଉଁପରି ହୋଇଥିବ ? ଏପରି ଭାବରେ ସେ ଏ ପୃଥିବୀର ବନ ଉପବନ, ନଦ, ନଦୀ ତଥା ପର୍ବତ ଆଦିକୁ ଦେଖିବାକୁ ସଦା ସମୁତ୍ସୁକ ଥିଲେ ।

ଦିନେ ତାଙ୍କ ନିକଟକୁ ଆଉ ଜଣେ ବେଦଜ୍ଞ ବ୍ରାହ୍ମଣ ଅତିଥି ଭାବରେ ଆସିଲେ । ବ୍ରାହ୍ମଣ କୁମାର ତାଙ୍କର ଅନେକ ଆଦର ସତ୍କାର କଲେ । ଶ୍ରଦ୍ଧା ସହିତ ଭୋଜନ କରାଇଲେ । ରହିବା ନିମନ୍ତେ ସ୍ଥାନ ଦେଲେ । ଯେତେବେଳେ ସତ୍ସଙ୍ଗ ନିମନ୍ତେ ଦୁହେଁ ବସିଲେ ସେତେବେଳେ ଆଗନ୍ତୁକ ବ୍ରାହ୍ମଣ ଅନେକ ଦେଶର କଥା କହିବାକୁ ଲାଗିଲେ, ସେ ଦେଶ ଏପରି, ସେ ଦେଶର ସଦାଚାର ଏପରି, ସେହି ଦେଶର ସ୍ତ୍ରୀମାନେ ଏଭଳି ଆଦି ବର୍ଣ୍ଣନା କଲେ । ହିମାଳୟ ପର୍ବତର ଛଟା ଅପୂର୍ବ, ତା ଉପରେ ଦିବ୍ୟ ଗନ୍ଧର୍ବମାନେ ବିଚରଣ କରନ୍ତି, ଅପସରାମାନେ ବିହାର କରନ୍ତି ।'

ଏ ସବୁ କଥା ଶୁଣି ବ୍ରାହ୍ମଣ କୁମାରଙ୍କ ମନରେ କୁତୁହଳ ଜାତ ହେଲା । ସେ ସେହି ଆଗନ୍ତୁକ ବ୍ରାହ୍ମଣଙ୍କୁ ପଚାରିଲେ, "ବ୍ରହ୍ମନ୍, ମୋର ଗୋଟିଏ ଶଙ୍କା ହେଉଛି । ଆପଣ ତାର ନିବାରଣ କରନ୍ତୁ । ଆପଣଙ୍କ କଥାରୁ ଏଭଳି ମନେ ହେଉଛି ଯେପରି କି ଆପଣ ଦେଶ ବିଦେଶର ଅନେକ କ୍ଷେତ୍ର ଦେଖିଛନ୍ତି, ସମୁଦ୍ର ପାରିହୋଇ ମଧ୍ୟ ଆପଣ ଅନେକ ଦେଶକୁ ଯାଇଛନ୍ତି । ଦେଶର ସମସ୍ତ ପର୍ବତ ଆପଣ ଅବଲୋକନ କରିଛନ୍ତି ।

ବ୍ରାହ୍ମଣ କହିଲେ "ହଁ ଦ୍ୱିଜବର ! ଆପଣଙ୍କର ଅନୁମାନ ସତ୍ୟ । ଏ ପୃଥିବୀରେ ଏଭଳି କୌଣସି ଦେଶ ନାହିଁ, ଯାହା ମୁଁ ଦେଖିନାହିଁ ।"

Digitized by srujanika@gmail.com

ସେତେବେଳେ ବ୍ରାହ୍ମଣ କୁମାର କହିଲେ, "ମୋର ଶଙ୍କା— ଏହି କଥା ପାଇଁ ଆପଣ ହୁଏତ ବୃଦ୍ଧତ୍ୱ ପ୍ରାପ୍ତ ହୋଇଛନ୍ତି । ଆପଣଙ୍କ ଶରୀରରୁ ତ ଯାତାୟାତଜନିତ କ୍ଲାନ୍ତ ପ୍ରତୀତ ହେଉଛି । କହନ୍ତୁ ଆପଣ ଏତେ ଏତେ ଦୀର୍ଘଯାତ୍ରା କେଉଁପରି କରିପାରିଲେ ?"

ବ୍ରାହ୍ମଣ କହିଲେ, "ହେ ଦ୍ୱିଜବର, ମୋତେ ପାଦରେ ଗ୍ଲଲିବାକୁ ପଡ଼େ ନାହିଁ । ମୋର ଅନେକ ଔଷଧି ଅଛି, ଯାହାଙ୍କୁ ପାଦରେ ଲେପଦେଇ ଯେଉଁ ଦିଶାରେ ଯାତ୍ରା କରିବା କଥା ସେହି ଦିଶାଙ୍କୁ ଅଭିମନ୍ତ୍ରିତ କରି ନିଏ । ତାପରେ ସେହି ଔଷଧିର ପ୍ରଭାବରେ ଅଧା-ଦିନରେ ମୁଁ ଗ୍ୱରିହଜାର କୋଶ ଅତିକ୍ରମ କରିଯାଇ ପାରେ ।"

ଏହାଶୁଣି ବ୍ରାହ୍ମଣ କୁମାର ଅତ୍ୟନ୍ତ ଆଶ୍ଚର୍ଯ୍ୟାନ୍ୱିତ ହେଲେ । ସେ କହିଲେ, "ବ୍ରହ୍ମନ୍, ହିମାଳୟକୁ ଦେଖିବାକୁ ମୋର ଅନେକ ଇଚ୍ଛା । ଯଦି ଆପଣ ମୋ ଉପରେ କୃପା କରନ୍ତି ତାହେଲେ ମୁଁ ମଧ ମୋର ଇଚ୍ଛା ପୂର୍ଣ୍ଣ କରି ପାରିବି ।

ଏହା ଶୁଣି ବ୍ରାହ୍ମଣ କହିଲେ, "ଉତ୍ତମ କଥା । ମୁଁ ଆପଣଙ୍କର ଇଚ୍ଛା ପୂର୍ଣ୍ଣ କରିବି ।"

ଏହାଶୁଣି ବ୍ରାହ୍ମଣ କୁମାର ଅତ୍ୟନ୍ତ ପ୍ରସନ୍ନ ହେଲେ । ପ୍ରଭାତରେ ସେ ସନ୍ଧ୍ୟା ଅଗ୍ନିହୋତ୍ର ଆଦି ସାରି ହିମାଳୟକୁ ଯାତ୍ରା କରିବାକୁ ପ୍ରସ୍ତୁତ ହେଲେ । ସେ ଭାବିଲେ ଯଦି ଅଧା ଦିନରେ ଗ୍ୱରି ହଜାର କୋଶ ଯାଇ ପାରିବି ତାହାହେଲେ ସନ୍ଧ୍ୟାରେ ଫେରିଆସି ସନ୍ଧ୍ୟା ଅଗ୍ନିହୋତ୍ର କରିବି । ତେଣୁ ସାଙ୍ଗରେ ଅଗ୍ନିହୋତ୍ର ନିମନ୍ତେ କୌଣସି ବସ୍ତୁ ନେଲେ ନାହିଁ ।

ବ୍ରାହ୍ମଣ ତାଙ୍କପାଦରେ ଏକ ପ୍ରଲେପ ଲଗେଇ ଦେଲେ । ଉତ୍ତର ଦିଶାକୁ ଅଭିମନ୍ତ୍ରିତ କରିଦେଲେ । ତାପରେ ସେ ଇଚ୍ଛାନୁସାରେ ଉତ୍ତର ଦିଶାରେ ଉଡ଼ିବାକୁ ଲାଗିଲେ । ଯେଉଁଠି ସଙ୍କଳ୍ପ କରନ୍ତି ସେଠାରେ ଓହ୍ଲେଇ ପଡ଼ନ୍ତି, ପୁଣି ଉଡ଼ିବା ଆରମ୍ଭ କରନ୍ତି । ଏହିପରି ଭାବରେ ମାର୍ଗରେ ଅନେକ ନଗର, ଉଦ୍ୟାନ, ନଦ ନଦୀ ତଥା ଅନ୍ୟାନ୍ୟ ବିଶିଷ୍ଟ ସ୍ଥାନମାନଙ୍କୁ ଦେଖି ଦେଖି ସେ ହିମାଳୟରେ ଉପସ୍ଥିତ ହେଲେ । ସେଠାର ଶୋଭା ଦେଖି ସେ ଚକିତ ହେଲେ । ଗୋଟିଏ ପର୍ବତ ଶିଖରରୁ ଅନ୍ୟ ପର୍ବତ ଶିଖରରେ ସେ ଉଡ଼ି ଯାଇ ପହଞ୍ଚି ଯାଉଥିଲେ ।ସେ ହିମାଳୟର ଶୋଭା ଦେଖି ଦେଖି ଆତ୍ମବିସ୍ମୃତ ହୋଇଗଲେ । ବରଫାବୃତ ସ୍ୱଚ୍ଛ ଶୁଭ୍ର ନିର୍ମଳ ରୂପାପରି ଚମକୁଥିବା ପର୍ବତ ମାନଙ୍କୁ ଦେଖି ତାଙ୍କର ହୃଦୟ ତୃପ୍ତ ହୋଇଗଲା । ହିମାଳୟ ଉପତ୍ୟକାର ଅଦ୍ଭୁତ ଶୋଭା, ସେଠାକାର ବିବିଧ ପୁଷ୍ପମାନଙ୍କର ମନୋହାରୀ ସୁଗନ୍ଧ, ଶାନ୍ତ ଓ ଏକାନ୍ତ ସ୍ଥାନ ଏସବୁ

Digitized by srujanika@gmail.com

କଥା ବିପ୍ରକୁମାରଙ୍କ ମନରେ ଅନିର୍ବଚନୀୟ ଆନନ୍ଦ ସଞ୍ଚାର କରୁଥିଲେ । ବ୍ରାହ୍ମଣ କୁମାର ନିଜକୁ ଭୁଲିଯାଇ ଆନନ୍ଦ ମନରେ ଖାଲି ପାଦରେ ହିମାଳୟ ଅଞ୍ଚଳରେ ବୁଲି ବୁଲି ଦେଖିବାକୁ ଲାଗିଲେ । ବରଫ ଉପରେ ଖାଲି ପାଦରେ ଚାଲିବା ଫଳରେ ସେ ସିଦ୍ଧ ଔଷଧ ଧୋଇ ହୋଇଗଲା । ବ୍ରାହ୍ମଣ କୁମାର ଏହା ଜାଣି ପାରିଲେ ନାହିଁ । ଏଣେତେଣେ ବୁଲି କ୍ଲାନ୍ତ ହୋଇ ସେ ଯେତେବେଳେ ଦେଖିଲେ ଯେ ଭଗବାନ ଭାସ୍କର ଅସ୍ତାଚଳ ଦିଗକୁ ପ୍ରସ୍ଥାନ କରିବାକୁ ଉଦ୍ୟତ ହେଲେଣି ସେତେବେଳେ ସେ ସଚେତନ ହେଲେ ଏବଂ ତାଙ୍କର ଅଗ୍ନିହୋତ୍ର ଓ ସନ୍ଧ୍ୟା କଥା ମନେ ପଡ଼ିଲା । ତା ପରେ ସେ ପୁନଃ ଉଡ଼ି ଆସିବାର ସଂକଳ୍ପ କଲେ । ମାତ୍ର ତା'ହା ଆଉ କଣ ସମ୍ଭବ ? ଔଷଧ ତ ବରଫରେ ଧୋଇ ହୋଇ ଯାଇଥିଲା । ତାର ପ୍ରଭାବ ନଷ୍ଟ ହୋଇ ଯାଇଥିଲା । ବ୍ରାହ୍ମଣ କୁମାର ଗୃହ ପ୍ରତ୍ୟାବର୍ତ୍ତନ କରିବା ନିମନ୍ତେ ନିଜକୁ ଅସମର୍ଥ ମନେ କଲେ । ତା'ପରେ ସେ ଚିନ୍ତିତ ହୋଇ ପଡ଼ିଲେ । ସେ ମନେ ମନେ ଚିନ୍ତାକଲେ, ସୌଭାଗ୍ୟବଶତଃ କୌଣସି ସାଧୁ ସନ୍ଥ ମିଳନ୍ତି ଯଦି ତାହେଲେ ତାଙ୍କର ଧର୍ମ ନଷ୍ଟ ହୁଅନ୍ତା ନାହିଁ । ଭାବିଲେ ସନ୍ଧ୍ୟା, ଅଗ୍ନିହୋତ୍ର ମୋର ପରମ ଧର୍ମ । ମୁଁ ସବୁ କିଛି ତ୍ୟାଗ କରିପାରେ ମାତ୍ର ଧର୍ମ ତ୍ୟାଗ କରିବା ମୋ ନିମନ୍ତେ କଦାଚିତ ସମ୍ଭବ ନୁହେଁ । ଧର୍ମ ସଙ୍କଟରେ ଉପନୀତ ପୁରୁଷଙ୍କୁ କେବଳ ସାଧୁ ସନ୍ଥମାନେ ହିଁ ଉଦ୍ଧାର କରିପାରିବେ ।" ଏହା ଭାବି ସେ ଏଣେ ତେଣେ ସାଧୁସନ୍ଥଙ୍କର ଅନ୍ୱେଷଣରେ ଘୁରିବାକୁ ଲାଗିଲେ । ତାଙ୍କୁ କେହି ସାଧୁତ ମିଳିଲେ ନାହିଁ, ଜଣେ ସାଧ୍ୱୀ ମିଳିଲେ ।

ସେହି ବନ୍ୟ ପ୍ରଦେଶରେ ବରୁଥିନୀ ନାମକ ଜଣେ ଅପ୍ସରା ଏଣେତେଣେ ବୁଲି ପ୍ରକୃତିର ସୌନ୍ଦର୍ଯ୍ୟ ପର୍ଯ୍ୟବେକ୍ଷଣ କରୁଥିଲା । ଯୌବନ ମଦରେ ମଦୋନ୍ମତ୍ତ ସେହି ଅପ୍ସରା ଆପଣାର ସୌନ୍ଦର୍ଯ୍ୟର ଆଲୋକରେ ଚୌଦିଗ ଆଲୋକିତ କରି ମୂର୍ତ୍ତିମା ହରିଣୀ ଭଳି ବୁଲୁଥିଲା । ତାର ସୌନ୍ଦର୍ଯ୍ୟ ଥିଲା ଅନବଦ୍ୟ । ସେ ଏ ପର୍ଯ୍ୟନ୍ତ କୌଣସି ପୁରୁଷ ପ୍ରତି ପ୍ରଣୟାସକ୍ତ ହୋଇ ନଥିଲା । ସହସା ସେ ବିପଦଗ୍ରସ୍ତ ବ୍ରାହ୍ମଣ କୁମାରଙ୍କୁ ଦେଖିଲା । ଏକାନ୍ତରେ ସେହି ବ୍ରାହ୍ମଣ କୁମାରଙ୍କର ଅନବଦ୍ୟ ସୌନ୍ଦର୍ଯ୍ୟ ଦେଖି ଅପ୍ସରା ମନରେ ତାଙ୍କ ପ୍ରତି ପ୍ରବଳ ଅନୁରାଗ ଜାତହେଲା । କାମୀ ପୁରୁଷ ଯେତେ ସୁନ୍ଦର ହୋଇଥାଉ ପଛକେ କାମ ଚିନ୍ତାରେ ତାର ସୌନ୍ଦର୍ଯ୍ୟ ମଳିନ ହୋଇଯାଏ । ତା'ର ଆକର୍ଷଣ ରହେନାହିଁ । ମାତ୍ର ଯେ ସଦାଚାରୀ, ସଂଯମୀ, ସେ ବାସ୍ତବିକ ସୁନ୍ଦର ହୋଇ ନଥିଲେହେଁ ସଦାଚାରର ଓଜ ଓ ତେଜ ହେତୁ ତାର ସୌନ୍ଦର୍ଯ୍ୟ ଉକୁଟି ଉଠେ । ତାହା ମଧ୍ୟରେ ଏକ ଅଦ୍‌ଭୁତ ଆକର୍ଷଣ ସମାବେଶିତ ହୋଇଯାଏ । ଯା'ର ଦୃଷ୍ଟି ତାହାଉପରେ ପଡ଼େ ସେ ତାକୁ ଭଲ ପାଇ ବସେ । ସେ ଅପ୍ସରା ବରୁଥିନୀ ତ ପ୍ରଣୟ ପିପାସିନୀ ଥିଲା । ସେ ପର୍ଯ୍ୟନ୍ତ ତାର ହୃଦୟ ମନ୍ଦିର ପ୍ରଣୟ ପ୍ରତିମା ବିନା ଶୂନ୍ୟ ହୋଇ ରହିଥିଲା, ଏବଂ ସେ ଯାଏ କୌଣସି ପ୍ରତିମାର ପ୍ରତିଷ୍ଠା କରି ନଥିଲା । କାରଣ ତାକୁ ତା'ର ହୃଦୟ-ମନ୍ଦିରରେ ପ୍ରତିଷ୍ଠିତ ଲାଗିପରି ପ୍ରତିମାଟିଏ ମିଳି ନଥିଲା । ସହସା ଅନାହୂତ ଭାବରେ ସେହି ବ୍ରାହ୍ମଣ କୁମାରର ଅନୁପମ ଛବି ତାର

Digitized by srujanika@gmail.com

ହୃଦୟ-ମନ୍ଦିରରେ କେବଳ ମାତ୍ର ପ୍ରବେଶ କଲା ତାହାନୁହେଁ, ଆପେ ଅଧିଷ୍ଠିତ ହୋଇଗଲା ମଧ୍ୟ । ଅପ୍ସରା ପାଗଳମାନଙ୍କ ଭଳି ଅପଲକ ନେତ୍ରରେ ସେହି ବ୍ରାହ୍ମଣ କୁମାରଙ୍କୁ ଅନେଇ ରହିଲା ।

ବ୍ରାହ୍ମଣ କୁମାର କାମୀ ହୋଇଥିଲେ ତାଙ୍କର ଚିତ୍ତ ଚଞ୍ଚଳ ହୋଇଥାନ୍ତା ଏବଂ ସେ ମଧ୍ୟ ତାକୁ ବାରମ୍ବାର ଅନେଇ ଥାଆନ୍ତେ । ହୃଦୟର ଭାବ ଯାହା ପ୍ରାୟତଃ ଭାବ-ମୁଦ୍ରାରେ ଅଙ୍କିତ ହୋଇଯାଏ, ତାହା ପଢିବାକୁ ଚେଷ୍ଟିତ ହୋଇଥାନ୍ତେ । ମାତ୍ର ସେ ଧର୍ମାତ୍ମା ଥିଲେ । ଏଣୁ ସେ ବରୂଥିନୀକୁ ଚାହିଁଲେ ନାହିଁ । ମାତ୍ର ବରୂଥିନୀ ଯେପରି ଆପଣାର ସର୍ବସ୍ୱ ବ୍ରାହ୍ମଣ କୁମାରଙ୍କ ନିକଟରେ ମନେ ମନେ ଅର୍ପଣ କରିଦେଇ ସାରିଥିଲା । ତେଣୁ ସେ ଆପଣା ଆଭାରେ ସେହି ଅରଣ୍ୟ ପ୍ରାନ୍ତକୁ ଉଦ୍ଭାସିତ କରି ସରଳତାର ସହିତ ଆସି ବିପ୍ର କୁମାରଙ୍କ ସମ୍ମୁଖରେ ଉପସ୍ଥିତ ହେଲା ।

ସେହି ଏକାନ୍ତ ପର୍ବତ ପ୍ରାନ୍ତରେ ଜଣେ ପରମ ସୁନ୍ଦର ରମଣୀକୁ ଦେଖି ବ୍ରାହ୍ମଣ କୁମାର ମନରେ ଧୈର୍ଯ୍ୟ ଜାତ ହେଲା । ସେ ମଧୁର ଓ ବିନୀତ ସ୍ୱରରେ କହିଲେ, "ହେ ସୁନ୍ଦରୀ, ତୁମେ କିଏ ? କା'ର ପୁତ୍ରୀ ! ଏ ଏକାନ୍ତ ବଣରେ କାହିଁକି ବିଚରଣ କରୁଛ ?"

ବରୂଥିନୀ ଅତ୍ୟନ୍ତ ଅନୁରାଗ ପୂର୍ଣ୍ଣ କଣ୍ଠରେ ପରମ ସ୍ନେହ ଓ ଲଜ୍ଜାମିଶ୍ରିତ ସ୍ୱରରେ କ୍ରୀଡ଼ା ପ୍ରଦର୍ଶନ ପୂର୍ବକ କହିଲା, "ମହାଭାଗ, ମୁଁ ସ୍ୱର୍ଗର ଅପ୍ସରା । ମୋର ନା' ବରୂଥିନୀ । ମୁଁ ଅରଣ୍ୟ ଅଞ୍ଚଳରେ ଆସି ସ୍ୱେଚ୍ଛାରେ ବିଚରଣ କରୁଛି । ମୁଁ ଅନେକ ମନୁଷ୍ୟ, ଦେବତା, ଦୈତ୍ୟ, ଯକ୍ଷ, ଗନ୍ଧର୍ବ, ସିଦ୍ଧ, ଚାରଣ, କିନ୍ନର, ବିଦ୍ୟାଧର ତଥା ଅନ୍ୟାନ୍ୟ ଦେବଯୋନିର ପୁରୁଷ ଦେଖିଛି । କିନ୍ତୁ ଆପଣଙ୍କ ସଦୃଶ ସୁନ୍ଦର ପୁରୁଷଟିଏ ଦେଖି ନଥିଲି । ଯେଉଁପରି ଆପଣ ମୋତେ ଆକର୍ଷିତ କରିଛନ୍ତି, ସେଭଳି କେହି କରିନଥିଲେ । ଆପଣ କିଏ ? କେଉଁଠାରୁ ଆସିଛନ୍ତି ?"

ଏହା ଶୁଣି ବ୍ରାହ୍ମଣକୁମାର କହିଲେ, "ସୁନ୍ଦରୀ ! ମୁଁ ବ୍ରାହ୍ମଣ କୁମାର । ଅରୁଣାସ୍ପଦ ନାମକ ନଗରର ନିବାସୀ । ଜଣେ ସିଦ୍ଧପୁରୁଷଙ୍କ କୃପାରୁ ଏକ ଅନୁଲେପର ପ୍ରଭାବରେ ମୁଁ ଏ ପର୍ଯ୍ୟନ୍ତ ଆସି ପାରିଛି । ମୋର ଅସାବଧାନତା ହେତୁ ବରଫର ଜଳରେ ସେହି ଲେପ ଧୋଇ ହୋଇ ଯାଇଛି । ମୁଁ ବର୍ତ୍ତମାନ ଧର୍ମ ସଙ୍କଟରେ ପଡ଼ିଛି । ମୁଁ ମୋର ଅଗ୍ନିହୋତ୍ର ଆଦି କର୍ମରୁ ବଞ୍ଚିତ ହେବାକୁ ଯାଉଛି । ତୁମେ ମୋତେ ସାହାଯ୍ୟ କର ।"

ବରୂଥିନୀ ଅନୁରାଗ ପୂର୍ଣ୍ଣ କଣ୍ଠରେ କହିଲା, "ଦେବ, ଆଜ୍ଞା କରନ୍ତୁ, ମୁଁ ଆପଣଙ୍କର କେଉଁଭଳି ସେବା କରିବି କହନ୍ତୁ ।"

Digitized by srujanika@gmail.com

ବ୍ରାହ୍ମଣକୁମାର କହିଲେ, "ତୁମେ ସେଭଳି କିଛି ଉପାୟ କର, ଯେପରି ମୁଁ ଘରେ ପହଞ୍ଚି ଯାଇ ପାରିବି ।"

ବରୂଥିନୀ ଆପଣା ଭିତରେ ଥିବା ସମସ୍ତ ମମତା ସହିତ ସଜଳ ନେତ୍ରରେ ଦେଖି ବାଷ୍ପାକୁଳ କଣ୍ଠରେ କହିଲା, "ଜୀବନଧନ, ଆପଣ ଏଭଳି କଥା ମୁହଁରେ ଧରନ୍ତୁ ନାହିଁ । ମୁଁ ଆପଣଙ୍କ ବିନା ବଞ୍ଚି ପାରିବି ନାହିଁ । ମୁଁ ମୋର ସର୍ବସ୍ୱ ଆପଣଙ୍କର ଚରଣତଳେ ଅର୍ପଣ କରିଛି । ଆପଣ ଏହି ଅନୁରକ୍ତାକୁ ଗ୍ରହଣ କରନ୍ତୁ । ଏହି ଦୁଃଖିନୀର ଦୁଃଖ ଦୂର କରନ୍ତୁ । କାମ-ବାଣ-ପୀଡ଼ିତ ଏ ହୃଦୟକୁ ପ୍ରୀତି ଦାନ କରି ପ୍ରସନ୍ନ କରନ୍ତୁ ।"

ବ୍ରାହ୍ମଣ କୁମାର ଗମ୍ଭୀର କଣ୍ଠରେ କହିଲେ, "ସୁର ସୁନ୍ଦରୀ, ତୁମେ କେଉଁପରି ଧର୍ମ ବିରୁଦ୍ଧ କଥା କହୁଛ ? ବ୍ରାହ୍ମଣ ପକ୍ଷରେ କାମର ବଶୀଭୂତ ହେବା ଉଚିତ ନୁହେଁ । ତାହା ପକ୍ଷରେ ସର୍ବଦା ଧର୍ମ-ସ୍ଥିତ ହୋଇଥିବା ହିଁ କର୍ତ୍ତବ୍ୟ । ଆପଣାର ନିତ୍ୟ ନୈମିତ୍ତିକ କାର୍ଯ୍ୟପ୍ରତି ଅନୁରକ୍ତ ହୋଇ ରହିବା ଉଚିତ । ସାଂସାରିକ ପ୍ରେମ ବିଷୟ କ୍ଷଣମାତ୍ରକ ନିମନ୍ତେ ସୁଖଦାୟୀ ହୋଇଥାନ୍ତି । ମାତ୍ର ଧର୍ମାଚରଣ ଇହଲୋକରେ କଠୋର ମନେ ହେଉଥିଲେ ହେଁ ପର-ଲୋକରେ ତାହା ଅତି ସୁଖ ପ୍ରଦାନକାରୀ ହୋଇଥାଏ । ତେଣୁ ତୁମେ ଯଦି ମୋତେ କୌଣସି ସାହାଯ୍ୟ କରିପାରିବ କର, ଯେପରି ମୁଁ ନିଜଘରକୁ ପହଞ୍ଚିଯାଇ ପାରିବି ଓ ଉଚିତ ସମୟରେ ଅଗ୍ନି ଉପାସନା କରିବାକୁ ସମର୍ଥ ହେବି ।'

ବରୂଥିନୀ କହିଲା, "ଦେବ, ପରଲୋକରେ ମଧ୍ୟ ଏ ସୁଖ ଅଛି । ମୋର ସୌଭାଗ୍ୟ ଯେ ଆପଣ ମୋତେ ପ୍ରାପ୍ତ ହୋଇଛନ୍ତି । ଆପଣ ଏଠାରେ ନିବାସ କରନ୍ତୁ । ଏ ପ୍ରଦେଶ ସ୍ୱର୍ଗଠାରୁ ମଧ୍ୟ ସୁନ୍ଦର । ତେଣୁ ଆମେ ସ୍ୱର୍ଗ ପରିତ୍ୟାଗ କରି ଏଠାରେ ରହୁଛୁ । ମୁଁ ଆପଣଙ୍କର ସବୁ ପ୍ରକାର ସେବା କରିବି । ମୋର ହୃଦୟକୁ ହାର କରିବି । ଦିବ୍ୟ ବସ୍ତ୍ରାଭୂଷଣ, ସୁନ୍ଦର ଭକ୍ଷ୍ୟ ତଥା ଅଙ୍ଗରାଗ, ଅମ୍ଳାନ ପୁଷ୍ପର ଦିବ୍ୟମାଳା ତଥା ଅନ୍ୟାନ୍ୟ ଭୋଗର ଅନୁପମ ସାମଗ୍ରୀ ମୁଁ ଆପଣଙ୍କୁ ବାରମ୍ବାର ସମର୍ପିତ କରୁଥିବି । ମୁଁ ମୋର ତନୁମନଧନ ସମର୍ପିତ କରି ଆପଣଙ୍କୁ ସୁଖୀ କରି ରଖିବି ।"

ବ୍ରାହ୍ମଣକୁମାର କହିଲେ, "ଭାମିନୀ, ସାଂସାରିକ ପଦାର୍ଥର ବିଷୟ ଭୋଗରେ ଯଥାର୍ଥ ସୁଖ ନାହିଁ, ପ୍ରକୃତ ସନ୍ତୋଷ ନାହିଁ । ବାସ୍ତବିକ ସୁଖ ଓ ସନ୍ତୋଷ ଧର୍ମ ପାଳନରେ ରହିଛି । ତୁମେ ଏହି ମାଦକ୍ତ୍ୟ ପ୍ରଦେଶକୁ ରମଣୀୟ ବୋଲି କହୁଛ । ମାତ୍ର ମୋ ନିମନ୍ତେ ବର୍ତ୍ତମାନ ଅଗ୍ନି-ଶାଳା ହିଁ ସୁଖକର ସ୍ଥାନ । ତନୋଡିଯାକ ଅଗ୍ନି ମୋର ଆଶ୍ରୟ । ଯଜ୍ଞବେଦୀ ହିଁ ମୋର ପ୍ରିୟତମା । ତୁମେ ମୋତେ କୌଣସି ଧର୍ମ ବିରୁଦ୍ଧ ପ୍ରସ୍ତାବ ଦିଅନାହିଁ । ମୁଁ ଚଞ୍ଚଳତା ବଶତଃ ଅନେକ ଭୁଲ କରିଛି; ଅଗ୍ନିଶାଳା ଛାଡ଼ି ଦେଶ ଭ୍ରମଣ ଲୋଭରେ ଚାଲି ଆସିଛି ।

Digitized by srujanika@gmail.com

ବ୍ରାହ୍ମଣ ପକ୍ଷରେ ଅଗ୍ନିଶାଳାରେ ରହି ଆପଣାର ନୈମିତ୍ତିକ କାର୍ଯ୍ୟ ସମ୍ପାଦନ କରିବା ଉଚିତ । ତାହା ପକ୍ଷରେ ଦେଶ ବିଦେଶ ଦେଖିବାର ଲୋଭ ସମ୍ବରଣ କରିବା ଉଚିତ । ଯାତ୍ରାକାଳରେ ନା ପୂଜନ ସାମଗ୍ରୀ ଉପଲବ୍ଧ ହୋଇଥାଏ ନା ଉଚିତ ଧାରାରେ ନିତ୍ୟନୈମିତ୍ତିକ କର୍ମ ହୋଇଥାଏ ।"

ବରୁଥିନୀ କହିଲେ, "ପ୍ରାଣନାଥ ! ଆପଣ କିପରି ସ୍ନେହହୀନ କଥା କହୁଛନ୍ତି ? ଶରଣାଗତର ରକ୍ଷାକରିବା ଶାସ୍ତ୍ରରେ ପରମ ଧର୍ମବୋଲି କୁହାଯାଇଛି । ମୁଁ ଆପଣଙ୍କର ଶରଣାପନ୍ନ ହୋଇ ଆସିଛି । ଆପଣଙ୍କୁ ସମ୍ମୁଖରେ ରଖି କାମ ମୋତେ ଅତ୍ୟନ୍ତ ପୀଡ଼ିତ କରୁଛି । ସେ ମୋର ଅଙ୍ଗ ପ୍ରତ୍ୟଙ୍ଗକୁ ବାରମ୍ବାର ବାଣବିଦ୍ଧ କରୁଛି । ହେ ଶରଣାଗତ ରକ୍ଷକ, ଆପଣ ମୋତେ ତାହା କବଳରୁ ରକ୍ଷା କରନ୍ତୁ । ଏ ଦୀନାକୁ ଗ୍ରହଣ କରନ୍ତୁ । ମୋତେ ହୃଦୟରେ ସ୍ଥାନ ଦିଅନ୍ତୁ ।" ଏହା କହି ସେ ଅତ୍ୟନ୍ତ କାତର ଭାବରେ ପରମ ଅନୁରାଗ ସହିତ ବଳପୂର୍ବକ ବ୍ରାହ୍ମଣ କୁମାରଙ୍କୁ ଆଲିଙ୍ଗନାବଦ୍ଧ କଲା । ସେ ସମୟରେ ତା'ର ଶରୀର ରୋମାଞ୍ଚିତ ହେଉଥିଲା । କାମ ପୀଡ଼ାରେ ସେ ଅତ୍ୟନ୍ତ ପୀଡ଼ିତା ଥିଲା ।

ତା'ର ଏଭଳି ସାହସ ଦେଖି ବ୍ରାହ୍ମଣ କୁମାର ସାହସ ସଞ୍ଚୟ କରି ତାକୁ ଧମକେଇ ରୋଷପୂର୍ଣ୍ଣ କଣ୍ଠରେ କହିଲେ, "ଯା' ଦୁଷ୍ଟା ! ତୁ ଯଦି ମୋତେ ପୁନର୍ବାର ସ୍ପର୍ଶକରୁ ତା'ହେଲେ ମୁଁ ତୋତେ ଭସ୍ମ କରି ଦେବି । ତୁ ସେଇ ଲୋକଙ୍କ ପାଖକୁ ଯା, ଯେଉଁମାନେ ତୋତେ ଇଚ୍ଛାକରନ୍ତି ।" ଏହାକହି ସେ ବ୍ରାହ୍ମଣ କୁମାର ଅପସରା ପାଖରୁ ଦୂରେଇଗଲେ, ଯେପରି ପୁରୁଷ ହଠାତ୍ ଅଗ୍ନି, ସର୍ପ, ସିଂହାଦି ହିଂସ୍ର ଜନ୍ତୁ ଦେଖିଲେ ଦୂରେଇଯାଏ ।

ସୂତ କହନ୍ତି, "ହେ ମୁନିଗଣ ! ଭଗବାନ ଏହି ମନୁଷ୍ୟକୁ ଅପୂର୍ଣ୍ଣ କରି ଗଢିଛନ୍ତି । ସେ କେବଳମାତ୍ର ଜଣକୁ ହିଁ ପ୍ରେମ କରି ପାରିବ । ଯେଉଁମାନେ ଧର୍ମକୁ ପ୍ରେମ କରନ୍ତି, ସେମାନଙ୍କ ଦୃଷ୍ଟିରେ ଧର୍ମହୀନ କାମ ଏବଂ ଧର୍ମହୀନ ଧନ ତୁଚ୍ଛବସ୍ତୁ । ସେମାନେ ଧର୍ମ ତୁଳନାରେ ଅନ୍ୟ କୌଣସି କଥାକୁ ମୂଲ୍ୟ ଦିଅନ୍ତି ନାହିଁ । ଧର୍ମର ବଳିବେଦୀରେ ସେମାନେ ସବୁକିଛି ଅର୍ପଣ କରି ଦେଇ ପାରନ୍ତି । ଧର୍ମର ବିରୁଦ୍ଧ ଅନ୍ୟ କୌଣସି ଆକର୍ଷଣ ସେମାନଙ୍କୁ ଆକର୍ଷିତ କରି ପାରେନି ନାହିଁ । ଯେଉଁମାନଙ୍କ ହୃଦୟରେ କାମ ଆସନ ମାଡ଼ି ବସିଛି, ସେଭଳି କାମୀ ପୁରୁଷ ଧର୍ମ ଅର୍ଥ ତାହାକୁ ହେଲେ କିଛି ବୋଲି ମନେ କରନ୍ତି ନାହିଁ । ସେମାନେ 'କାମ' ନିମନ୍ତେ ସବୁକିଛି ଧର୍ମବିରୁଦ୍ଧ ଆଚରଣ କରିବାକୁ କୁଣ୍ଠିତ ହୁଅନ୍ତି ନାହିଁ । ଧନକୁ ପାଣିପରି ବୁହାଇ ଦେଇପାରନ୍ତି । ଅର୍ଥ-ଲୋଲୁପ ବ୍ୟକ୍ତି ଧର୍ମ ଏବଂ କାମକୁ ତୁଚ୍ଛବୋଲି ମନେ କରେ । ସେଥିପାଇଁ ସେମାନେ ଆପଣାର ପତ୍ନୀ, ପୁତ୍ରୀ, ଭଗିନୀ ଦ୍ୱାରା ମଧ୍ୟ ଅନୁଚିତ କାର୍ଯ୍ୟ କରାଇ ପାରନ୍ତି । ଦେଖନ୍ତୁ ଯେଉଁ ବରୁଥିନୀର କଟାକ୍ଷ ମାତ୍ରକରେ କଳନାମକ ଗନ୍ଧର୍ବ ଆପଣାର ସର୍ବସ୍ୱ ସମର୍ପଣ କରିଦେବାକୁ ପ୍ରସ୍ତୁତ, ସେହି ବରୁଥିନୀର ଏକାନ୍ତ

Digitized by srujanika@gmail.com

ଦୀନତାପୂର୍ଣ୍ଣ ପ୍ରାର୍ଥନାଲୁ ଜଣେ ଧର୍ମିଷ୍ଠରୁ ବ୍ରାହ୍ମଣ ରୂତ୍ର ମନେକର ପାଦରେ ଆଡ଼େଇ ଦେଲା ।"

ବ୍ରାହ୍ମଣ କୁମାର ଯେତେବେଳେ ସୂର୍ଯ୍ୟାସ୍ତ ପୂର୍ବରୁ କୌଣସି ପ୍ରକାରେ ଆପଣାର ଅଗ୍ନିଶାଳାରେ ପହଞ୍ଚିବା ନିମନ୍ତେ ଅସମର୍ଥତା ଅନୁଭବ କଲେ, ସେତେବେଳେ ସେ ଅତ୍ୟନ୍ତ ଚିନ୍ତିତ ହୋଇ ଉଠିଲେ । ସେ ଭାବିଲେ, 'ମୁଁ ଏତେଦିନ ପର୍ଯ୍ୟନ୍ତ ଅବ୍ୟଗ୍ର ଭାବରେ, ଆଳସ୍ୟ ତଥା ଦମ୍ଭ କପଟ ତ୍ୟାଗ ପୂର୍ବକ ଅଗ୍ନିଦେବଙ୍କର ଆରାଧନା କରିଛି । ସେ କଣ ଏପରି ଏକ ସମୟରେ ମୋର ସହାୟତା କରିବେ ନାହିଁ ? ଏପରି ବିଚାର କରି ସେ ନିର୍ମଳ ଜଳରେ ଆଚମନ କଲେ ଏବଂ କରବଦ୍ଧ ପ୍ରଣାମ କରି ଅଗ୍ନିଦେବଙ୍କୁ କହିଲେ, "ହେ ଅଗ୍ନିଦେବ, ଆପଣ ଜଗତର ପାଳକ । ସବୁରି ରକ୍ଷକ । ଯଦି ମୁଁ କେବେହେଲେ ନିୟତ ସମୟରେ ବୈଦିକ କର୍ମର ପରିତ୍ୟାଗ କରି ନାହିଁ, ଯଦି ମୋ ମନରେ ପରଧନ ଅପହରଣ ବା ତାକୁ ଅଧର୍ମଦ୍ୱାରା ଆପଣାର କରିବାର ଲୋଭ ହୋଇ ନାହିଁ; ଯଦି ମୁଁ ପରସ୍ତ୍ରୀ ଦେଖି କଦାଚିତ ଚଞ୍ଚଳ ହୋଇନାହିଁ, ତେବେ ସେହି ସତ୍ୟର ପ୍ରଭାବରେ ମୁଁ ସୂର୍ଯ୍ୟାସ୍ତ ପୂର୍ବରୁ ଯେପରି ନିଜ ଗୃହକୁ ଫେରିଯାଇ ପାରିବି ଆପଣ ସେପରି କୃପା କରନ୍ତୁ ।"

ସୂତ କହୁଛନ୍ତି; "ହେ ମୁନିଗଣ, ଏହା କହିବା ମାତ୍ରକେ ତୁରନ୍ତ ସେହି ବ୍ରାହ୍ମଣ କୁମାରଙ୍କ ଶରୀରରେ ଗାର୍ହପତ୍ୟ ଅଗ୍ନି ପ୍ରବେଶକଲେ । ତାଙ୍କର ପ୍ରକାଶରେ ବ୍ରାହ୍ମଣ କୁମାରଙ୍କ ଶରୀର ଦ୍ୱିତୀୟ ସୂର୍ଯ୍ୟ ସଦୃଶ୍ୟ ତେଜସ୍ୱୀନ୍ ହୋଇ ଉଠିଲା । ବରୁଥିନୀ ତାଙ୍କର ସେହି ଅପୂର୍ବ ତେଜ ଓ ଓଜ ଦେଖି ତାଙ୍କପ୍ରତି ଆହୁରି ଅଧିକ ଅନୁରକ୍ତା ହେଲା । ଅଗ୍ନିଙ୍କ ପ୍ରଭାବରେ ତୁରନ୍ତ ସେ ଆକାଶମାର୍ଗରେ ଉଡ଼ିଗଲେ ଏବଂ ସୂର୍ଯ୍ୟାସ୍ତ ପୂର୍ବରୁ ଆପଣାର ବାସଭବନରେ ପହଞ୍ଚିଗଲେ । ସେଠାରେ ପହଞ୍ଚି ସେ ନିର୍ବିଘ୍ନରେ ଆପଣାର ଅଗ୍ନିହୋତ୍ରାଦି କର୍ମ ସମାପନ କଲେ ।

ତେଣେ ବରୁଥିନୀର ଦଶା ଅତ୍ୟନ୍ତ ଦୟନୀୟ ହୋଇ ଉଠିଲା । ବ୍ରାହ୍ମଣ କୁମାର ତା'ର ଦୃଷ୍ଟିରୁ ଅନ୍ତର୍ହିତ ହେବାମାତ୍ରକେ ସେ ଛିନ୍ନ ଲତା ସଦୃଶ ଭୂଶାୟିନୀ ହେଲା । ତାର ଶରୀରରେ କୌଣସି ବୋଧଶକ୍ତି ରହିଲା ନାହିଁ । ସେ ଘନଘନ ଦୀର୍ଘଶ୍ୱାସ ତ୍ୟାଗ କରି ଜଳଚ୍ୟୁତ ମୀନ ସଦୃଶ ବିକଳ ହୋଇ ଉଠିଲା । ସେ ସେହି ରାତି ସାରା ବିକଳ ହୋଇ ବିଳାପ କରି କରି ଅତିବାହିତ କଲା । ଅତ୍ୟନ୍ତ କଷ୍ଟରେ ରାତି ବିତିଥିଲେ ହେଁ ପ୍ରଭାତରେ ମଧ୍ୟ ତା'ର ଦଶାର କୌଣସି ପରିବର୍ତ୍ତନ ହେଲା ନାହିଁ । ଭୋକ, ଶୋଷ, ଆହାର, ବିହାର କୌଣସି କଥା ପାଇଁ ତାର ଚେତନା ନଥିଲା । ଲୁହ ବୁହାଇ ସେ ସେହି ବ୍ରାହ୍ମଣକୁମାରଙ୍କୁ ସ୍ମରଣ କରି ବିଳାପ କରିବାକୁ ଲାଗିଲା ।

ସେ ସମୟରେ ସେଠାରେ ସେହି କଳନାମକ ଗନ୍ଧର୍ବ ଉପସ୍ଥିତ ହେଲା । ସେ ପୂର୍ବରୁ ବରୁଥିନୀ ପ୍ରତି ଅନୁରକ୍ତ ଥିଲା । ସେ ଅତ୍ୟନ୍ତ ଦୀନଭାବରେ ବରୁଥିନୀ ନିକଟରେ

Digitized by srujanika@gmail.com

ପ୍ରଣୟ ପ୍ରାର୍ଥନା କରିଥିଲା । ସେଥିରେ ବରୂଥିନୀ କେବଳ ମାତ୍ର ଅସ୍ୱୀକାର ନ ହୋଇ ତାକୁ ତିରସ୍କାର ମଧ୍ୟ କରିଥିଲା । ସେ ନିରାଶ ହୋଇ ଫେରିଯାଇଥିଲେ ହେଁ ତାହା ମନରୁ ବରୂଥିନୀର ମୋହନୀ ମୂର୍ତ୍ତି ଦୂର ହୋଇ ନଥିଲା । ସେ ସର୍ବଦା ତା'ରି ବିଷୟରେ ଚିନ୍ତା କରୁଥିଲା । ଆଜି ବରୂଥିନୀର ଏଭଳି ଦଶା ଦେଖି ସେ ବିସ୍ମିତ ହେଲା । ବରୂଥିନୀର ଏପରି ଦଶା କାହିଁକି ହେଲା ଜାଣିବାକୁ ଧ୍ୟାନାବସ୍ଥିତ ହେବାରୁ ତାକୁ ସବୁକଥା ଗୋଚର ହେଲା, ଏବଂ ତାର ମୃତମଣ୍ଡଳ ନୂତନ ଆଶାରେ ଆପ୍ଲାବିତ ହୋଇ ଉଠିଲା । ସେ ମନେ ମନେ ଚିନ୍ତା କଲା, "କାହିଁକି ବା ବ୍ରାହ୍ମଣ କୁମାରର ରୂପ ଧାରଣ କରି ଏହାକୁ ଠକିବି ନାହିଁ ?"

ସେ କାମୀ ଥିଲା । କାମର ହେତୁରୁ ତା' ମନରେ ସତ୍ୟଧର୍ମ ପ୍ରତି କୌଣସି ଆଦର ନଥିଲା । ଏଣୁ ସେ ମାୟାବୀ ଗନ୍ଧର୍ବ ମାୟାରେ ବ୍ରାହ୍ମଣର ରୂପଧାରଣ କରି ବରୂଥିନୀର ସମ୍ମୁଖରେ ଏଣେତେଣେ ବିଚରଣ କରିବାକୁ ଲାଗିଲା । ବରୂଥିନୀ ଯେତେବେଳେ ଦେଖିଲା ସେହି ବ୍ରାହ୍ମଣ କୁମାର ପୁନଃ ଉପସ୍ଥିତ ହୋଇଛନ୍ତି, ସେ ତାଙ୍କର ସମୀପକୁ ଦଉଡ଼ିଗଲା ଏବଂ କହିଲା, "ଦେବ. ଆପଣ ମୋତେ ରକ୍ଷା କରନ୍ତୁ । ସତ କହୁଛି ଯଦି ଆପଣ ମୋତେ ଗ୍ରହଣ କରିବେ ନାହିଁ, ତାହେଲେ ମୁଁ ପ୍ରାଣ ବିସର୍ଜନ କରି ଦେବି । ସେଥିରେ ଆପଣ ସ୍ତ୍ରୀ ହତ୍ୟା ପାପର ଭାଗୀ ହେବେ ।"

ବ୍ରାହ୍ମଣ ରୂପଧାରୀ କଳି କହିଲା, "ଭାମିନୀ, କ୍ଷମା କରିବ । ମୁଁ ଧର୍ମ ସଙ୍କଟରେ ପଡ଼ିଛି । ଗୋଟିଏ ପଟରେ ମୋର ବ୍ରତ, ଅପର ପଟରେ ତୁମର ପ୍ରାଣରକ୍ଷା'ର ପ୍ରଶ୍ନ, ଏ ମଧ୍ୟରୁ କାହାକୁ ରଖିବି !"

ଏହାଶୁଣି ବିନୀତ ଭାବରେ ବରୂଥିନୀ କହିଲା, "ହେ ଧର୍ମଜ୍ଞ ! ଜଣକର ପ୍ରାଣରକ୍ଷା କୋଟି ଧର୍ମରୁ ବଳି । ଆପଣ ମୋତେ ରକ୍ଷାକଲେ ପୁଣ୍ୟଲୋକ ପ୍ରାପ୍ତ ହେବେ ।"

ବ୍ରାହ୍ମଣ ରୂପୀ ଗନ୍ଧର୍ବ କହିଲା, "ତୁମକୁ ଏକ ପ୍ରତିଜ୍ଞା କରିବାକୁ ହେବ । ରତି-କାଳରେ ତୁମେ ଦେଖିବ ନାହିଁ, ଆଖି ବୁଜି ରହିଥିବ । ମୋତେ ଭୁଲରେ ସୁଦ୍ଧା ଛୁଇଁବ ନାହିଁ ।"

ବରୂଥିନୀ ଏହା କାହିଁକି ବା ଅସ୍ୱୀକାର କରନ୍ତା ? ଉଭୟଙ୍କ ମଧ୍ୟରେ ଗାନ୍ଧର୍ବ ବିବାହ ହେଲା । ଉଭୟେ ଗିରିରାଜଙ୍କର ପୁଷ୍ପିତ କାନନରେ, ପର୍ବତର ସୁନ୍ଦର ମନୋ-ହାରିଣୀ ଗୁମ୍ଫା ତଥା ସୁନ୍ଦର ସରିତ ତଟରେ ବିହାର କଲେ । ବରୂଥିନୀ ରତିକାଳରେ ସେହି ବ୍ରାହ୍ମଣ ଦେବଙ୍କର ତେଜୋମୟୀ ମୂର୍ତ୍ତିର ଧ୍ୟାନକରେ । କିଛି କାଳପରେ ସେ ଗର୍ଭଧାରଣ କଲା । ତାକୁ ଗର୍ଭଧାରଣ କରିଥିବା ଦେଖି କଳିଗନ୍ଧର୍ବ ଚାଲିଗଲା । କାଳାନ୍ତରରେ

Digitized by srujanika@gmail.com

ଅପ୍ସରା ଏକ ପୁତ୍ରରତ୍ନ ପ୍ରସବ କଲା । ସେ ତା'ର କାରଣରେ ସୂର୍ଯ୍ୟ ସଦୃଶ ସୁଶୋଭିତ ହୋଇଥିଲା । ଏଣୁ ମାତା ତାକୁ ସ୍ୱରୋଚିଷ ନାମରେ ନାମିତ କଲେ । ଧୀରେ ଧୀରେ ସେ ବାଳକ ବଢ଼ିବାକୁ ଲାଗିଲା । ସେ ମୁନିମାନଙ୍କ ନିକଟରୁ ବେଦ, ବେଦାଙ୍ଗ, ଧନୁର୍ବେଦ, ଅନ୍ୟାନ୍ୟ ସମସ୍ତ ବିଦ୍ୟା ଅଧ୍ୟୟନ ପୂର୍ବକ ଜ୍ଞାନପ୍ରାପ୍ତ ହେଲା । ସେ ଧନୁର୍ବାଣ ଧରି ରାଜକୁମାର ସଦୃଶ ସେହି ବନପ୍ରାନ୍ତରେ ବିଚରଣ କରିବାକୁ ଲାଗିଲା ।

ଦିନେ ସେ ଧନୁଶର ଧରି ଏକ ମନୋରମ ଉପତ୍ୟକା ନିକଟକୁ ଯାଉଥିବା ବେଳେ 'ରକ୍ଷାକର · · ରକ୍ଷାକର' ଏଭଳି ଆର୍ତ୍ତି ଅଥଚ କରୁଣା-ପୂରିତ ସୁମଧୁର କୋମଳ ସ୍ୱର ଶୁଣାଗଲା । ସେ ଆଖି ଉଠେଇ ଦେଖିଲା ଏକ ପରମା ସୁନ୍ଦରୀ ନବଯୌବନବତୀ ଭୟବିହ୍ୱଳା ହୋଇ ତା' ନିକଟରେ ଅଭୟ ଭିକ୍ଷା କରୁଛି ।

ଧନୁରେ ଶର ସଯୋଗ କରି କୁମାର ସ୍ୱରୋଚିଷ କହିଲା, "ଦେବୀ ! ତୁମେ ଡରନାହିଁ । ମୁଁ ତୁମର ରକ୍ଷାନିମନ୍ତେ ସମୁପସ୍ଥିତ ହୋଇଛି । ତୁମେ କିଏ ? କା'ର ପୁତ୍ରୀ ? କେଉଁ କାରଣରୁ ତୁମେ ଭୟଗ୍ରସ୍ତ ହୋଇଛ ? ସମସ୍ତ ବୃତ୍ତାନ୍ତ କହ ।"

ଏହା ଶୁଣି ଭୟରେ ଥରୁଥିବା ଯୁବତୀ ଚତୁର୍ଦ୍ଦିଗକୁ କାତର ଆଖିରେ ଅନେଇ କହିଲା, "ଦେବ ! ବିଦ୍ୟାଧର ମାନଙ୍କର ଗୋଟିଏ ଗଣର ଅଧିପତି ହେଉଛନ୍ତି ନଳନାଭ ନାମକ ଗନ୍ଧର୍ବରାଜ । ତାଙ୍କର ପୁତ୍ରର ନାମ ଇନ୍ଦୀବରାକ୍ଷ । ମୁଁ ତାଙ୍କର ପୁତ୍ରୀ । ମୋର ନା' ମନୋରମା । ମୋର ମାତାମହ ଗନ୍ଧର୍ବରାଜ ମରୁଧନ୍ୱା ମଧ୍ୟ ଜଣେ ବିଖ୍ୟାତବୀର୍ଯ୍ୟ ବ୍ୟକ୍ତି ଥିଲେ । ସେ ଭଗବାନ ବଶିଷ୍ଠଙ୍କ ନିକଟରୁ ଅସ୍ତ୍ର-ହୃଦୟ ନାମକ ସେହି ବିଦ୍ୟା ପ୍ରାପ୍ତ ହୋଇଥିଲେ, ଯାହା ବଶିଷ୍ଠ ସ୍ୱାୟଂଭୁବ ମନୁଙ୍କଠାରୁ ଏବଂ ମନୁ ପିନାକଧାରୀ ଭଗବାନ୍ ଶୂଳପାଣିଙ୍କଠାରୁ ପ୍ରାପ୍ତ ହୋଇଥିଲେ । ମୁଁ ପିତାଙ୍କର ଏକମାତ୍ର ଆଦରଣୀୟା କନ୍ୟା । ମୋର ଆଉ ଦୁଇ ଜଣ ପ୍ରିୟସଖୀ ଅଛନ୍ତି । ଜଣକର ନାମ ବିଭାବରୀ, ସେ ମନ୍ଦାର ଗନ୍ଧର୍ବର ପୁତ୍ରୀ । ଅପରର ନାମ କଳାବତୀ, ସେ ପାର ମୁନିଙ୍କର ପୁତ୍ରୀ । ଦିନେ ଆମେ ତିନିଜଣ କ୍ରୀଡ଼ାରେ କ୍ରୀଡ଼ାରେ କୈଳାସର ପାବନ ପ୍ରଦେଶରେ ଉପସ୍ଥିତ ହେଲୁ । ସେଠାରେ ଜଣେ ଅତ୍ୟନ୍ତ କୃଶ ଓ ବିରୂପ ମୁନିଙ୍କୁ ଦେଖି ଯୌବନ ଚପଳତାରେ ତାଙ୍କର ଉପହାସ କରିବାକୁ ଲାଗିଲୁ । ମୁନି କ୍ରୋଧିତ ହୋଇ ମୋତେ କହିଲେ, "ଦୁଷ୍ଟେ ! ତୁ ମୋତେ ଉପହାସ କରୁଛୁ । ହଁ, କିଛି ଦିନ ଭିତରେ ରାକ୍ଷସଟିଏ ତୋ ଉପରକୁ ଝପଟି ଆସିବ ।"

ମୁନିଙ୍କର ଶାପ ଶୁଣି ମୋର ସଖୀମାନେ ତାଙ୍କୁ ଭଲମନ୍ଦ ଶୁଣେଇଲେ । ମୁନି ତ କ୍ରୋଧିତ ହୋଇଥିଲେ । ସେ ସେମାନଙ୍କୁ ମଧ୍ୟ ଶାପ ଦେଲେ ଯେ ଜଣକୁ କୁଷ୍ଠ ବ୍ୟାଧି ଏବଂ ଆଉ ଜଣକୁ ରାଜଯକ୍ଷ୍ମା ହେବ । ମୁନିଙ୍କର ବାକ୍ୟ ଅସତ୍ୟ ହେବାର ନୁହେଁ । ଏଣୁ ତୁରନ୍ତ

Digitized by srujanika@gmail.com

ସେମାନେ ବ୍ୟାଧିଗ୍ରସ୍ତ ହୋଇପଡ଼ିଲେ । ଆଜିକି ଚଉଦଦିନ ହେଲା ମୋ ପଛରେ ରାକ୍ଷସଟିଏ ଲାଗିଛି । ଦେଖନ୍ତୁ ସେ କେଉଁଆଡ଼େ ଗୁଡ଼ୁଛି, ଆପଣ ମୋର ରକ୍ଷା କରନ୍ତୁ ।

ସେ ଏଭଳି କହୁଥିବା ସମୟରେ ଭୟଙ୍କର ରାକ୍ଷସଟିଏ ସ୍ୱରୋଚିଷଙ୍କୁ ଦେଖାଗଲା । ସେତେବେଳେ ଭୟ-ବିହ୍ୱଳା ମନୋରମା କହିଲା, "ଦେବ, ମୁଁ ଯାହା କହୁଛି ସେହି ଅସ୍ତ୍ର ଏହି ରାକ୍ଷସ ଉପରେ ପ୍ରୟୋଗ କରନ୍ତୁ । କଥାହେଲା ମୋର ମାତାମହଙ୍କର ଯେଉଁ ଅସ୍ତ୍ର ବିଦ୍ୟାଥିଲା ତାହା ସେ ମୋର ମାତାଙ୍କ ସହିତ ପିତାଙ୍କୁ ଅର୍ପଣ କରିଛନ୍ତି । ସ୍ନେହବଶତଃ ପିତା ମୋତେ ତାହା ଶିଖେଇ ଦେଇଛନ୍ତି । ଆପଣ ସେହି ବିଦ୍ୟାକୁ ମୋଠାରୁ ତୁରନ୍ତ ରହସ୍ୟ ଓ ଉପସଂହାର ସହିତ ଗ୍ରହଣ କରନ୍ତୁ । ତା'ର ପ୍ରୟୋଗ ଦ୍ୱାରାହିଁ ଆପଣ ଏହାକୁ ପରାଜିତ କରି ପାରିବେ ।"

ସ୍ୱରୋଚିଷ ଆଚମନ କରି ପ୍ରସନ୍ନ ଚିତ୍ତରେ ସେହି 'ଅସ୍ତ୍ର ହୃଦୟ'କୁ ଗ୍ରହଣ କଲେ ଏବଂ ତାହା ସେହି ଭୟଙ୍କର ରାକ୍ଷସ ଉପରେ ପ୍ରୟୋଗ କରିବାକୁ ଉଦ୍ୟତ ହେଲେ । ଫଳରେ ରାକ୍ଷସ ଡରିଗଲା ଏବଂ ଭୟଭୀତ ହୋଇ କହିଲା, "ହେ ଶୂରଶ୍ରେଷ୍ଠ, ପ୍ରଥମେ ମୋ କଥା ଶ୍ରବଣ କରନ୍ତୁ ଏବଂ ପରେ ଅସ୍ତ୍ର ପ୍ରୟୋଗ କରିବେ ।"

ସ୍ୱରୋଚିଷ କହିଲେ, "କହ, କଣ କହିବାକୁ ଚାହୁଁଛ ?"

ରାକ୍ଷସ କହିଲା, "ହେ ବୀରବର ! ମୁଁ ରାକ୍ଷସ ନୁହେଁ ଏ କନ୍ୟାର ପିତା ଅଟେ । ମୋର ନାମ ଇନ୍ଦୀବରାକ୍ଷ ବିଦ୍ୟାଧର ।

ସ୍ୱରୋଚିଷ କହିଲେ, "ତାହେଲେ ଆପଣ ରାକ୍ଷସ କିପରି ହେଲେ ଏବଂ ଆପଣାର ପୁତ୍ରୀ ଉପରେ କାହିଁକି ଆକ୍ରମଣ କରିବାକୁ ଉଦ୍ୟତ ହେଉଛନ୍ତି ?"

ରାକ୍ଷସ କହିଲା, "ହେ ବୀର, ଏହା ନିଜର କର୍ମଫଳ । ମୁଁ ଆୟୁର୍ବେଦ ପଢ଼ିବାକୁ ବ୍ରହ୍ମମିତ୍ର ମୁନିଙ୍କ ନିକଟକୁ ଗଲି । ସେ ନିଷେଧ କଲେ । ମାତ୍ର ମୁଁ ଲୁଚିରହି ଗୋପନରେ ପଢ଼ିନେଲି । କଥା ଖୋଲିଯିବା ପରେ ସେ ମୋତେ ରାକ୍ଷସ ହେବାକୁ ଅଭିଶାପ ଦେଲେ । ଅନେକ ଅନୁନୟ ବିନୟ ପରେ ସେ କହିଲେ, "ରାକ୍ଷସ ହୋଇ ଯେତେବେଳେ ତୁମେ ଭ୍ରମକ୍ରମେ ଆପଣାର ପୁତ୍ରୀ ଉପରେ ଆକ୍ରମଣ କରିବ, ସେତେବେଳେ ଯେଉଁ ଯୁବକ ସେହି କନ୍ୟାକୁ ରକ୍ଷା କରିବାକୁ ଉଦ୍ୟତ ହେବ, ତାହାଦ୍ୱାରା ତୁମର ଉଦ୍ଧାର ହେବ ଏବଂ ତୁମକୁ ପୁନଶ୍ଚ ଗନ୍ଧର୍ବଲୋକ ପ୍ରାପ୍ତ ହେବ । ତେଣୁ ହେ ଗନ୍ଧର୍ବ, ଆପଣ ମୋତେ ପୂର୍ଣ୍ଣ ଜୀବନ ଦିଅନ୍ତୁ, ମୁଁ ଆପଣଙ୍କୁ ଆୟୁର୍ବେଦ ବିଦ୍ୟା ଏବଂ ମୋର ଏହି ମନୋରମା କନ୍ୟା ଅର୍ପଣ କରିବି । ଏହା କହି ସେ କନ୍ୟା ଏବଂ ଆୟୁର୍ବେଦ ବିଦ୍ୟା ଦେଇ ଗନ୍ଧର୍ବ ଲୋକକୁ ଚାଲିଗଲା ଓ ପୁନଶ୍ଚ ବିଦ୍ୟାଧର ଯୋନି ପ୍ରାପ୍ତ ହେଲା ।

Digitized by srujanika@gmail.com

ସ୍ୱରୋଚିଷ ମନୋରମା ସହିତ ବିଧିପୂର୍ବକ ବିବାହ କରି ଆୟୁର୍ବେଦର ପ୍ରଭାବରେ ପତ୍ନୀର ଉଭୟ ସଖୀଙ୍କୁ ମଧ୍ୟ ଭଲ କରିଦେଲା ଏବଂ ସେମାନଙ୍କ ସହିତ ମଧ୍ୟ ବିବାହ କଲା । ଏପରି ଭାବରେ ସେ ତା'ର ତିନୋଟି ଯାକ ପତ୍ନୀଙ୍କ ସହିତ ଆନନ୍ଦ ପୂର୍ବକ ହିମାଳୟର ମନୋରମ ଉପତ୍ୟକାରେ ବିହାର କରିବାକୁ ଲାଗିଲା । ସେହି ତିନୋଟି କନ୍ୟାଙ୍କ ଗର୍ଭରୁ ବିଜୟ, ମେରୁଭେଦ ଏବଂ ମହାବଳୀ ନାମକ ତିନୋଟି ପୁତ୍ର ହେଲେ । ତିନୋଟି ପୁତ୍ରଙ୍କ ନିମନ୍ତେ ତିନୋଟି ସ୍ୱତନ୍ତ୍ର ନଗର ନିର୍ମାଣ କରି ସେ ସେମାନଙ୍କୁ ସେଠାରେ ରଖିଦେଲା ଏବଂ ପୁଣି ତିନୋଟିଯାକ ପତ୍ନୀଙ୍କ ସହିତ ପୂର୍ବବତ୍ ପାର୍ବତ୍ୟ ପ୍ରଦେଶରେ ଆନନ୍ଦରେ ବିହାର କରିବାକୁ ଲାଗିଲା ।

ସ୍ୱରୋଚିଷ୍‌ର ମୃଗୟା ନିମନ୍ତେ ଯଥେଷ୍ଟ ଆଗ୍ରହ ଥିଲା । ସେ ଦିନେ ଧନୁର୍ବାଣ ନେଇ ଗୋଟିଏ ଶୂକରକୁ ଗୋଡ଼େଇଲା । ସେହି ସମୟରେ ଗୋଟିଏ ହରିଣୀ ଆସି ଉପସ୍ଥିତ ହୋଇ କହିଲା, "ହେ ଧନୁର୍ଦ୍ଧରମାନଙ୍କ ମଧ୍ୟରେ ଶ୍ରେଷ୍ଠ, ଆପଣ କାହିଁକି ଏହି ଶୂକର ଉପରେ ବାଣ ପ୍ରୟୋଗ କରିବାକୁ ଯାଉଛନ୍ତି । ମୋତେ ସଂହାର କରନ୍ତୁ । ଏହା ଫଳରେ ମୁଁ ମଧ୍ୟ କ୍ଳେଶ ମୁକ୍ତ ହେବି, ଆପଣଙ୍କର ବାଣ ମଧ୍ୟ ସଫଳ ହେବ ।"

ମୃଗୀ ମୁଖରୁ ମାନୁଷୀବାଣୀ ଶୁଣି ସହାନୁଭୂତି ପରିପୂର୍ଣ୍ଣ ସ୍ୱରରେ ସ୍ୱରୋଚିଷ କହିଲା, "ମୃଗୀ, ତୋର କଷ୍ଟ କଣ ? ତୁ ତୋର କଷ୍ଟର କାରଣ କହ, ମୁଁ ତାହା ନିବାରଣ କରିବି ।"

ମୃଗୀ କହିଲା ମୋର କୌଣସି କଷ୍ଟ ନାହିଁ । ଏହାହିଁ ସବୁଠାରୁ ବଡ଼ କଷ୍ଟ ଯେ ମୁଁ ଯାହାକୁ ପ୍ରେମ କରୁଛି ସେ ମୋତେ ପ୍ରେମ କରୁନାହିଁ । ପ୍ରେମ ବିନା ଶୁଷ୍କ ଜୀବନ ବ୍ୟର୍ଥ । ଆପଣାର ପ୍ରେମାସ୍ପଦର ଅବହେଳନ ଅପେକ୍ଷା ମରିଯିବା ଶ୍ରେୟସ୍କର ।

ସ୍ୱରୋଚିଷ କହିଲେ, "ଏପରି କେଉଁ ପୁରୁଷ ଅଛି, ଯାହାକୁ ତୁମେ ପ୍ରେମ କର ମାତ୍ର ସେ ତୁମକୁ ସ୍ନେହ ଦାନ କରୁନାହିଁ । ସେ ଅତ୍ୟନ୍ତ ହୃଦୟହୀନ ।"

ମୃଗୀ କହିଲା, "ନା' ସେ ହୃଦୟହୀନ ନୁହେଁ, ମାତ୍ର ଅନ୍ୟ ସ୍ତ୍ରୀ ମାନଙ୍କୁ ସ୍ନେହ କରୁଛି ।"

ସ୍ୱରୋଚିଷ କହିଲେ, "ତୁମେ କହ ତ ସେ କିଏ ?"

ମୃଗୀ କହିଲା, "ଦେବ, ଅପରାଧ କ୍ଷମା କରନ୍ତୁ । ମୁଁ ଆପଣଙ୍କ ପ୍ରତି ଆସକ୍ତ ଏବଂ ଆପଣଙ୍କୁ ପାଇବାକୁ ଚାହୁଁଛି । ଆପଣ ଏହି ସୁନ୍ଦରୀମାନଙ୍କ ଉପସ୍ଥିତିରେ ମୋତେ ପ୍ରେମ କରିବେ ନାହିଁ । ତେଣୁ ଆପଣଙ୍କ ବାଣଦ୍ୱାରା ନିହତ ହୋଇ ମୁଁ ସୁଖ ପାଇବି ।"

Digitized by srujanika@gmail.com

ହସି ହସି ସ୍ୱରୋଚିଷ କହିଲା, "ମୁଁ ତ ଦ୍ୱିପଦ, ଏବଂ ତୁମେ ଚତୁଷ୍ପଦା । ମୋ ପକ୍ଷରେ ତୁମ ସହିତ ପ୍ରେମ ବୃଥା ଓ ନିରର୍ଥକ । ମୁଁ ତୁମ ସହିତ କେଉଁପରି ବିବାହ କରି ପାରିବି ?"

ମୃଗୀ କହିଲା, "ଯଦି ଆପଣ ମୋ ଉପରେ କୃପା କରିବାକୁ ଚାହାନ୍ତି, ତା'ହେଲେ ଅନୁରାଗ ପୂର୍ଣ୍ଣ ହୃଦୟରେ ମୋତେ ଗାଢ଼ ଆଲିଙ୍ଗନ କରନ୍ତୁ । ସ୍ନେହାଲିଙ୍ଗନ ଏକ ଦିବ୍ୟୌଷଧି । ଏହାଦ୍ୱାରା ଅସମ୍ଭବ ମଧ୍ୟ ସମ୍ଭବ ହୋଇଥାଏ ।"

ଏହାଶୁଣି ସ୍ୱରୋଚିଷ ତାକୁ ସ୍ନେହରେ ଆଲିଙ୍ଗନ କଲାରୁ ସେ ମୃଗୀ ତତ୍‌କ୍ଷଣାତ୍ ଏକ ଦିବ୍ୟରୂପଧାରିଣୀ ସର୍ବାଙ୍ଗସୁନ୍ଦରୀ ସୁକୁମାରୀ ନାରୀରେ ପରିଣତ ହୋଇଗଲା ।

ବିସ୍ମିତ ହୋଇ ସ୍ୱରୋଚିଷ ପଚାରିଲେ, "ତୁମେ କିଏ ?"

ହସିହସି ସେ ଉତ୍ତର ଦେଲା, "ଦେବ, ମୁଁ ଏ ବନର ଅଧିଷ୍ଠାତ୍ରୀ ଦେବୀ । ପ୍ରଥମ ମନ୍ୱନ୍ତର ବିତିବାପରେ ଯେଉଁ ଦ୍ୱିତୀୟ ମନୁ ଜାତହେବେ, ସେ ଆପଣଙ୍କ ବୀର୍ଯ୍ୟରୁ ମୋର ଗର୍ଭରେ ଉତ୍ପନ୍ନ ହେବେ । ଏକଥା ମୋତେ ଦେବତାମାନେ କହିଛନ୍ତି । ତେଣୁ ଆପଣ ଆପଣଙ୍କର ବୀର୍ଯ୍ୟରେ ମୋ ଗର୍ଭରୁ ଦ୍ୱିତୀୟ ମନୁ ଉତ୍ପନ୍ନ କରନ୍ତୁ ।"

ଏହା ଶୁଣି ସ୍ୱରୋଚିଷ ବନଦେବୀଙ୍କ ଗର୍ଭରୁ ଏକ ପୁତ୍ରରତ୍ନ ଜାତକଲେ । ପିତା ଦ୍ୟୁତିମାନ ବୋଲି ପୁତ୍ରର ନାମକରଣ କଲେ । ମାତ୍ର ସ୍ୱରୋଚିଷଙ୍କ ପୁତ୍ରବୋଲି ସେ ସ୍ୱାରୋଚିଷ ନାମରେ ଖ୍ୟାତ ହେଲା । ତପସ୍ୟା ବଳରେ ସେ ବ୍ରହ୍ମାଙ୍କୁ ପ୍ରସନ୍ନ କଲା ଏବଂ ବ୍ରହ୍ମା ପ୍ରସନ୍ନ ହୋଇ ତାକୁ ମନୁପଦରେ ପ୍ରତିଷ୍ଠିତ କଲେ । ଏହି ହେଲେ ଦ୍ୱିତୀୟ ମନ୍ୱନ୍ତରର ଅଧିପତି ସ୍ୱାରୋଚିଷ ମନୁ । ସ୍ୱାରୋଚିଷ ଅଗ୍ନିଙ୍କର ମଧ୍ୟ ନାମ । ତେଣୁ ସ୍ୱାରୋଚିଷ କୌଣସି ଏକ କଳ୍ପରେ ଅଗ୍ନିପୁତ୍ର ନାମରେ ମଧ୍ୟ ବିଖ୍ୟାତ ହୋଇଥିଲେ ।

ତଦନନ୍ତର ରାଜା ପରୀକ୍ଷିତ ପଚାରିଲେ, "ଭଗବାନ୍, ଦ୍ୱିତୀୟ ମନ୍ୱନ୍ତରାବତାରଙ୍କର ନାମ କଣ ? ସେ କେଉଁ ବିଶେଷ କାର୍ଯ୍ୟ କରିଥିଲେ । ସେ କଥା ରହିଗଲା ।"

ଏହା ଶୁଣି ଶୁକଦେବ କହିଲେ, "ଏହି ଅବତାରରେ ଭଗବାନଙ୍କର ନାମ ହେଲା 'ବିଭୁ' ।"

ରାଜା ପ୍ରଶ୍ନକଲେ, "ମହାଭାଗ, ଭଗବାନଙ୍କର ପତ୍ନୀଙ୍କର ନାମ ଏବଂ ସେ କେଉଁ କେଉଁ କାର୍ଯ୍ୟ କରିଥିଲେ କହିବା ହୁଅନ୍ତୁ ।"

Digitized by srujanika@gmail.com

ଏହା ଶୁଣି ଶ୍ରୀ ଶୁକଦେବ କହିଲେ, "ମହାରାଜ, ବିଭୁ ଭଗବାନ ବିବାହ କରି ନଥିଲେ । ସେ କରିଥିବା କାର୍ଯ୍ୟ ମଧ୍ୟରେ ଏହା ମଧ୍ୟ ଏକ ମହତ୍ତର କାର୍ଯ୍ୟ । ସେ ସଂସାରରେ ନୈଷ୍ଠିକ ବ୍ରହ୍ମଚର୍ଯ୍ୟର ଆଦର୍ଶ ଉପସ୍ଥାପିତ କରି ଯାଇଛନ୍ତି । ପ୍ରଥମତଃ ଏହି ମାନ୍ୟତା ରହିଥିଲା ଯେ ଅପୁତ୍ରିକଙ୍କର କୌଣସି ଗତିନାହିଁ । ସେ କହିଲେ, "ନା' ସେପରି ନୁହେ । ପରମାର୍ଥରେ ସ୍ତ୍ରୀ ପୁତ୍ରଙ୍କର କୌଣସି ଆବଶ୍ୟକତା ନାହିଁ । ଯାହା ମନରେ ସଂସାରବାସନା ନାହିଁ ଯଦି ସେ ବିବାହ ନକରି ଅଖଣ୍ଡ ବ୍ରହ୍ମଚର୍ଯ୍ୟ ବ୍ରତର ପାଳନ କରନ୍ତି, ତେବେ ଅକ୍ଷୟ ଲୋକ ପ୍ରାପ୍ତ ହୋଇ ମୋକ୍ଷର ଅଧିକାରୀ ହୋଇଥାନ୍ତି । ଏହି ନୈମିଷାରଣ୍ୟରେ ଯେଉଁ ଅଠାଅଶୀ ହଜାର ଋଷି ଅଛନ୍ତି, ଯେଉଁମାନେ କୁମାରାବସ୍ଥାରୁ ଅଖଣ୍ଡ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରି ଯମନିୟମାଦି ସାଧନର ସାଧନାରେ ତତ୍ପର ରହିଥାନ୍ତି, ସେମାନେ କଲ୍ପାନ୍ତ ଋଷି ହୋଇଥାନ୍ତି ଏବଂ କଳିଯୁଗ ଆସନ୍ତେ ଜନଲୋକକୁ ପ୍ରାପ୍ତ ହୁଅନ୍ତି ଓ ଅବଶିଷ୍ଟ ସମସ୍ତ ନୈମିଷାରଣ୍ୟ ଆଦି ପୁଣ୍ୟକ୍ଷେତ୍ରରେ ଭଗବାନଙ୍କର କଥାରେ କଟେଇ ଥାଆନ୍ତି । ଏହି ବ୍ରତର ଦୀକ୍ଷା ଭଗବାନ ବିଭୁ ଦେଇଛନ୍ତି ।"

ଶ୍ରୀ ଶୁକଦେବ କହୁଛନ୍ତି, "ରାଜନ୍, ଏହି କଥା ପ୍ରଥମ ଏବଂ ଦ୍ୱିତୀୟ ମନ୍ୱନ୍ତରା-ବତାରର କଥା ଯାହା ମୁଁ କହିଲି । ଆପଣ ବର୍ତ୍ତମାନ ତୃତୀୟ ଏବଂ ଚତୁର୍ଥ ମନ୍ୱନ୍ତରା-ବତାରଙ୍କର ପ୍ରସଙ୍ଗ ଶୁଣିବେ ।

## ଛପ୍ପୟ

ଯଜ୍ଞ ପୁରୁଷ ପ୍ରଭୁ ଭୟେ ପ୍ରଥମ ମନ୍ୱନ୍ତର ମାହୀଁ ।
ତପ ସ୍ୱାୟମ୍ଭୁବ କରତ ଅସୁର ସୋଚେଁ ତନ ଖାଇଁ ॥
ଜାନେ୍ୟା ତନକୋ ଭାବ ମାରି ଉଦ୍ଧାର କରେ୍ୟା ପ୍ରଭୁ ।
ମନ୍ୱନ୍ତର ଜବ ଦ୍ୱିତୀୟ ଭୟୋ ପ୍ରକଟ ବେ ଛି ବିଭୁ ॥
ବ୍ରହ୍ମଚର୍ଯ୍ୟ ବ୍ରତ ଆୟୁଭରି, ପାଲନ କୀ ଦୀକ୍ଷା ଦଈ ।
ସହସ ଆଠାସୀ ମୁନିନ କୌଁ, ଉନ ହୀ ତେଁ ଶିକ୍ଷା ଲଈ ॥



Digitized by srujanika@gmail.com

# ତୃତୀୟ ଏବଂ ଚତୁର୍ଥ ମନ୍ୱନ୍ତରାବତାର

ଚତୁର୍ଥ ଉତ୍ତମଭ୍ରାତା ମନୁର୍ନାମା ଚ ତାମସଃ ।
ପୃଥୁଃ ଖ୍ୟାତିର୍ନରଃ କେତୁରିତ୍ୟାଦ୍ୟା ଦଶ ତତ୍ସୁତାଃ ॥
ତତ୍ରାପି ଯଜ୍ଞେ ଭଗବାନ୍ ହରିଣ୍ୟାଂ ହରିମେଧସଃ ।
ହରିରିତ୍ୟାହୃତୋ ଯେନ ଗଜେନ୍ଦ୍ରୋ ମୋଚିତୋ ଗ୍ରହାତ୍ ॥
(ଶ୍ରୀ ଭା. ୮ । ୧ । ୨୭, ୩୦)

## ଛପ୍ପୟ

'ଉତ୍ତମ' ପ୍ରିୟବ୍ରତ ପୁତ୍ର ତୀସରେ ମନୁ ବିଖ୍ୟାତ ।
ଇନ୍ଦ୍ର ସତ୍ୟଜିତ ହୁଏ ଭୟେ ପ୍ରଭୁ ତନକେ ଭ୍ରାତା ॥
ଧର୍ମ ପତ୍ନୀ ସୂନୃତା ଉଦର ତେ ପ୍ରକଟେ ଶ୍ରୀପତି ।
'ସତ୍ୟସେନ' ବିଖ୍ୟାତ ସୁରନ କୀ ଏକମାତ୍ର ଗତି ॥
ତା ମନ୍ୱନ୍ତର ମଧ୍ୟ ମହଁ, ସଖା ସତ୍ୟଜିତ କେ ବନେ ।
ସୁରଦ୍ରୋହୀ ଦୁଃଶୀଳ ଖଳ, ଦୁଷ୍ଟ ଯକ୍ଷ ରାକ୍ଷସ ହନେ ॥

ଅନେକ ନାସ୍ତିକ ବ୍ୟକ୍ତି କହନ୍ତି ଯେ ଏହି ଜଗତର କର୍ତ୍ତା କେହି ନାହିଁ । ସ୍ୱଭାବତଃ ଗୁଣ ମଧ୍ୟରେ କ୍ଷୁଣ ବିଦ୍ୟମାନ ହୋଇ ରହିଛି । ଯେପରି ଜଳର ଶୀତଳତା । ରଜବୀର୍ଯ୍ୟର ସଂଯୋଗରେ ସ୍ୱଭାବତଃ ସନ୍ତାନୋତ୍ପତ୍ତି ହୋଇଥାଏ । ପ୍ରକୃତିର ନିୟମରେ ହିଁ ଏ ସଂସାର ଚାଲିଛି । ଯଦି ପ୍ରକୃତି ଜଡ଼ ଅଟେ, ତା'ହେଲେ ତାହାମଧ୍ୟରେ ସଂଯମିତ କରିବାର ଶକ୍ତି ନାହିଁ । କୌଣସି ଜଡ଼ ଯନ୍ତ୍ର ଚୈତନ୍ୟର ନିୟନ୍ତ୍ରଣ ବିନା ମର୍ଯ୍ୟାଦିତ ଭାବରେ ଚିରକାଳ ଚାଲି ପାରିବ ନାହିଁ । ମାତ୍ର ଆମ୍ଭେ ଦେଖୁଛୁ ଯେ ସଂସାର କୌଣସି ନିୟମରେ

Digitized by srujanika@gmail.com

ଆବଦ୍ଧ ହୋଇ ଯଥାବତ୍ତ ଚାଲିଛି । ଋତୁମାନେ କ୍ରମାନୁସାରେ ଆସୁଛନ୍ତି, ସମୟ ଅନୁସାରେ ଫଳ ଫୁଲ ଧରୁଛି । ସୂର୍ଯ୍ୟ ଚନ୍ଦ୍ର ଏବଂ ଅନ୍ୟ ଗ୍ରହ ନକ୍ଷତ୍ର ଆଦି ଗୋଟିଏ ନିୟମରେ ଚାଳିତ ହୋଇ ଆସିଛନ୍ତି । ଏହି ସବୁ କାରଣରୁ ପ୍ରକୃତି ମଧ୍ୟରେ ପୁରୁଷୋତ୍ତମଙ୍କର ସତ୍ତା ସିଦ୍ଧ ହୋଇଥାଏ । ଯେଉଁପରି ଦିନପରେ ରାତି ହୁଏ, ଗ୍ରୀଷ୍ମ ପରେ ବର୍ଷା ଏବଂ ବର୍ଷା ପରେ ଶୀତ ଆସେ, ସେହିପରି ଗୋଟିଏ ମନ୍ୱନ୍ତର ପରେ ଦ୍ୱିତୀୟ ଏବଂ ଦ୍ୱିତୀୟ ପରେ ତୃତୀୟ ଆସେ । ଗୋଟିଏ କଳ୍ପରେ ଚଉଦ ମନ୍ୱନ୍ତର ବିତିଯାଏ । ସେଥିରେ ଗୋଟିଏ ମନୁ, ଗୋଟିଏ ମନୁପୁତ୍ର ଓ ଇନ୍ଦ୍ର ଦେବତା ସପ୍ତର୍ଷି ଆଦି ଅବତାର ହୋଇଥାନ୍ତି । ପୂର୍ବର ଅବସର ପ୍ରାପ୍ତ ମନୁ, ଦେବତା, ସପ୍ତର୍ଷି ଆଦି ସ୍ୱର୍ଗଲୋକ ତଥା ମହର୍ଲୋକକୁ ଯାଇ ଅଧିକାର ହୀନ ହୋଇ ଆନନ୍ଦ କରନ୍ତି । ଅନ୍ୟ କଳ୍ପରେ ଯୋଗ୍ୟ ବିବେଚିତ ହୋଇ କୌଣସି ମନୁ ଇନ୍ଦ୍ର ହେଲେ, କେହି ସପ୍ତର୍ଷି ହେଲେ, ଏପରି ଭାବରେ ପଦ ପରିବର୍ତ୍ତନ ହେଉଥାଏ । ବ୍ରହ୍ମାପଦ ପର୍ଯ୍ୟନ୍ତ ଅସ୍ଥାୟୀ, ନଶ୍ୱର ଏବଂ କ୍ଷୟିଷ୍ଣୁ । କେବଳ ବିଷ୍ଣୁପଦ ହିଁ ଅକ୍ଷୟପଦ ।

ଶ୍ରୀ ଶୁକଦେବ ରାଜା ପରୀକ୍ଷିତଙ୍କୁ କହୁଛନ୍ତି, "ରାଜନ୍, ମୁଁ ଆପଣଙ୍କୁ ଦୁଇଟି ମନ୍ୱନ୍ତରାବତାର ବିଷୟରେ କହିଲି, ବର୍ତ୍ତମାନ ଆପଣ ତୃତୀୟ ଅବତାର ପ୍ରସଙ୍ଗ ଶ୍ରବଣ କରନ୍ତୁ ।"

ପୂର୍ବରୁ ମୁଁ ସ୍ୱାୟମ୍ଭୁବ ମନୁଙ୍କର ବଂଶ ବିଷୟରେ କହିବା ସମୟରେ କହିଛି, ଯେ ସ୍ୱାୟମ୍ଭୁବ ମନୁଙ୍କର ପ୍ରିୟବ୍ରତ ଓ ଉତ୍ତାନପାଦ ନାମକ ଦୁଇଟି ପୁତ୍ର ଥିଲେ । ପ୍ରିୟବ୍ରତଙ୍କର ପୁତ୍ର ଉତ୍ତମ । ସେ ଆପଣାର ପୁଣ୍ୟ ପ୍ରଭାବରୁ ତୃତୀୟ ମନ୍ୱନ୍ତରରେ ମନୁ ହେଲେ । ସେ ମନୁ ହୋଇ ସେହି ସମ୍ପୂର୍ଣ୍ଣ ମନ୍ୱନ୍ତରର ପାଳନ କଲେ । ତାଙ୍କର ପବନ, ସୃଞ୍ଜୟ, ଯଜ୍ଞ ହୋତ୍ର ଆଦି ପୁତ୍ରମାନେ ଜନ୍ମଗ୍ରହଣ କରିଥିଲେ, ଯେଉଁମାନେ ପୃଥିବୀରେ ରାଜା ହୋଇ ତାର ପାଳନ କଲେ । ବଶିଷ୍ଠଙ୍କର ପ୍ରମଦ ଆଦି ସାତପୁତ୍ର । ସେହି ସାତ ଭାଇ ସେହି ମନ୍ୱନ୍ତରର ମହର୍ଷି ହେଲେ । ତଥାସତ୍ୟ, ବେଦଶ୍ରୁତ, ତଥାଭଦ୍ର ନାମକ ଦେବତା-ମାନଙ୍କର ଗଣହେଲେ । ଏହି ମନ୍ୱନ୍ତରରେ ଇନ୍ଦ୍ରଙ୍କର ନାମ 'ସତ୍ୟଜିତ' । ଭଗବାନଙ୍କର ସେହି ମନ୍ୱନ୍ତରରେ 'ସତ୍ୟସେନ' ନାମରେ ଅବତାର ହୋଇଥିଲେ । ଧର୍ମଦେବଙ୍କର ପତ୍ନୀମାନଙ୍କ ମଧ୍ୟରେ ଅନ୍ୟତମା ସୁନୃତାଙ୍କର ଗର୍ଭରୁ ଭଗବାନ ଅବତରିତ ହୋଇଥିଲେ ।

ସେ ସମୟରେ ଦୁଷ୍ଟ ଯକ୍ଷ, ରାକ୍ଷସମାନେ ଇନ୍ଦ୍ରଙ୍କୁ ଅନେକ କ୍ଲେଶ ଦେଉଥିଲେ । ସେମାନେ ସର୍ବଦା ତାଙ୍କୁ ଇନ୍ଦ୍ର ପଦରୁ ବିତାଡ଼ିତ କରି ଆପେ ସିଂହାସନାରୂଢ଼ ହୋଇ ସ୍ୱର୍ଗର ଅଧିପତି ହେବାର ଚେଷ୍ଟା ହିଁ କରୁଥିଲେ । ଅସତ୍ୟ ଭାବବନ୍ତ ସେହି ଦୁଃଶୀଳ ଦୁଷ୍ଟମାନଙ୍କର ଅଭିପ୍ରାୟ ଜାଣି ଦେବେନ୍ଦ୍ର ସତ୍ୟସେନ ଭଗବାନଙ୍କର ଶରଣାପନ୍ନ ହେଲେ ଏବଂ ତାଙ୍କୁ ସହାୟତା ପାଇ ପ୍ରାର୍ଥନା କଲେ । ସେହି ମନ୍ୱନ୍ତରରେ ଭଗବାନଙ୍କର ଅବତାର ଏହି ବିଶେଷ

Digitized by srujanika@gmail.com

କାର୍ଯ୍ୟ ନିମନ୍ତେ ହୋଇଥିଲା । ତେଣୁ ଭଗବାନ ଇନ୍ଦ୍ରଙ୍କର ପ୍ରାର୍ଥନା ସ୍ୱୀକାର କରିନେଲେ । ଓ ସେହି ଦୁଷ୍ଟ ସ୍ୱଭାବର ଯକ୍ଷ ରାକ୍ଷସ ଅସୁର ଭୂତ ଆଦିଙ୍କୁ, ଯେଉଁମାନେ ସମସ୍ତ ପ୍ରାଣୀମାନଙ୍କ ସହିତ ଦ୍ରୋହ କରୁଥିଲେ, ଯଜ୍ଞ ଆଦି କର୍ମରେ ବିଘ୍ନଜାତ କରୁଥିଲେ, ବିନାଶ କଲେ । ଏଥିରେ ଇନ୍ଦ୍ର ପ୍ରସନ୍ନ ହେଲେ ।

ସେ ଭଗବାନଙ୍କୁ ପ୍ରାର୍ଥନା କଲେ, "ପ୍ରଭୁ, ଆପଣ ମୋତେ ମିତ୍ରଭାବରେ ସ୍ୱୀକାର କରନ୍ତୁ ଏବଂ ମୋତେ ସର୍ବଦା ଏହି ଅସତ୍ୟ-ପରାୟଣ ଅସୁରମାନଙ୍କର ଦାଉରୁ ରକ୍ଷା କରନ୍ତୁ ।"

ଭଗବାନ 'ତଥାସ୍ତୁ' କହି ଇନ୍ଦ୍ରଙ୍କର ପ୍ରାର୍ଥନା ଗ୍ରହଣ କରିନେଲେ । ସେତେବେଳ-ଠାରୁ ସେ ଇନ୍ଦ୍ରସଖା ବୋଲାଇଲେ । ଭଗବାନଙ୍କ ସହିତ ସଖ୍ୟ ସ୍ଥାପିତ ହେବାରୁ ଇନ୍ଦ୍ର ନିର୍ଭୟ ହେଲେ, ଏବଂ ଈଶ୍ୱରଙ୍କ ସହାୟତାରେ ସେହି ମନ୍ୱନ୍ତରରେ ସ୍ୱର୍ଗର ପାଳନ କଲେ ।

ମହାରାଜ ପ୍ରିୟବ୍ରତଙ୍କର ଦ୍ୱିତୀୟ ପୁତ୍ର ଉତ୍ତମଙ୍କର ଶ୍ରେଷ୍ଠ ଭାଇ 'ତାମସ' ଚତୁର୍ଥ ମନ୍ୱନ୍ତରର ମନୁ ହେଲେ । ତାଙ୍କର ପୃଥୁ, ଖ୍ୟାତି, ନର ତଥା କେତୁ ଆଦି ଦଶପୁତ୍ର ଜାତ ହୋଇ ପୃଥ୍ୱୀର ବିଭିନ୍ନ ସ୍ଥାନରେ ନିଜ ନିଜର ରାଜଧାନୀ ସ୍ଥାପିତ କରି ପୃଥ୍ୱୀର ପାଳନ କରିବା ସଙ୍ଗେ ସଙ୍ଗେ ରାଜବଂଶ ବୃଦ୍ଧି କରିବାକୁ ଲାଗିଲେ । ସେହି ମନ୍ୱନ୍ତରରେ ସତ୍ୟକ, ହରି ଓ ବୀର ଏହି ନାମରେ ଦେବତାମାନଙ୍କର ଗଣ ଥିଲେ । ଇନ୍ଦ୍ରଙ୍କର ନାମଥିଲା ତ୍ରିଶିଖ ଏବଂ ଜ୍ୟୋତିର୍ଧାମ ଆଦି ସପ୍ତର୍ଷି ଥିଲେ । ସେହି ତାମସ ମନ୍ୱନ୍ତରରେ ବିଧୃତିଙ୍କର ପୁତ୍ର ବୈଧୃତ ନାମକ କେତେଜଣ ବିଶେଷ ଦେବଗଣ ହୋଇଥିଲେ, ଯେଉଁମାନେ କାଳକ୍ରମେ ନଷ୍ଟ ହୋଇଥିବା ବେଦମାନଙ୍କୁ ସପ୍ତର୍ଷିମାନଙ୍କ ସହିତ ରକ୍ଷା କଲେ । ମନେହୁଏ, ସେ ସମୟରେ ସପ୍ତର୍ଷିମାନଙ୍କର କିଛିଟା ତେଜହ୍ରାସ ହୋଇଥିଲା । ତେଣୁ ସିନା ଦେବଗଣମାନେ ଅବତୀର୍ଣ୍ଣ ହୋଇ ଆପଣା ତେଜରେ ରକ୍ଷାକଲେ ! ସେହି ମନ୍ୱନ୍ତରରେ ଭଗବାନଙ୍କର 'ହରି' ନାମରେ ଅବତାର ହେଲା । ହରିମେଧା ନାମକ ଋଷିଙ୍କ ଔରସରୁ ତାଙ୍କର ହରିଣୀ-ନାମକ ପତ୍ନୀଙ୍କର ଗର୍ଭରୁ ଭଗବାନ 'ହରି' ପ୍ରକଟିତ ହେଲେ ।

ରାଜା ପଚାରିଲେ, "ପ୍ରଭୁ, ଭଗବାନ ହରି କେଉଁ ବିଶେଷ କାର୍ଯ୍ୟ କରିଥିଲେ ?"

ଏହା ଶୁଣି ଶ୍ରୀ ଶୁକଦେବ କହିଲେ, "ରାଜନ୍, ଏହି ହରି ଭଗବାନ ଗ୍ରାହର କବଳରେ ପଡ଼ିଥିବା ଗଜର ଉଦ୍ଧାର କରିଥିଲେ ।"

ଏହାଶୁଣି ଅତ୍ୟନ୍ତ ଉଲ୍ଲସିତ ହୋଇ ରାଜା ପରୀକ୍ଷିତ କହିଲେ, "ପ୍ରଭୁ, ଗଜଗ୍ରାହ ସମ୍ବାଦ ତ ସଂସାରରେ ସର୍ବତ୍ର ପ୍ରସିଦ୍ଧି ଲାଭ କରିଛି । ଏହା ଏକ ଅତ୍ୟନ୍ତ ପାବନ

Digitized by srujanika@gmail.com

ଚରିତ୍ର । ଭଗବାନଙ୍କର ଭକ୍ତବତ୍ସଳତାର ଏହା ଏକ ସର୍ବଶ୍ରେଷ୍ଠ ଉଦାହରଣ । ଆପଣାର ଆଶ୍ରିତଙ୍କୁ ରକ୍ଷା କରିବା ନିମନ୍ତେ ଭଗବାନ କିପରି ଦଉଡ଼ି ଆସନ୍ତି, ତା'ର ଅତି ଉଜ୍ଜ୍ୱଳ ଦୃଷ୍ଟାନ୍ତ ଏହି ପ୍ରସଙ୍ଗରୁ ମିଳିଥାଏ । ପ୍ରଭୁ, ଆପଣ କୃପାକରି ତାହା ମୋତେ କହନ୍ତୁ । ସବୁ କଥା ମଧ୍ୟରେ ସେଇ ହିଁ ଶ୍ରେଷ୍ଠ ପ୍ରସଙ୍ଗ, ଏହା କଥାମାନଙ୍କ ମଧ୍ୟରେ ଆଦରଣୀୟ ଓ ପ୍ରଶଂସନୀୟ ପ୍ରସଙ୍ଗ, ଯେଉଁଥିରେ ପବିତ୍ରକୀର୍ତ୍ତି ଭଗବାନ ହରିଙ୍କର ନାମ ତଥା ଗୁଣର କୀର୍ତ୍ତନ ହୋଇଛି । ସ୍ୱାମିନ୍, ମୁଁ ଶୁଶ୍ରୂଷୁ ଅଟେ । ଆପଣ ଏହି ପାବନ କଥା, ପୁଣ୍ୟପ୍ରଦ ପ୍ରସଙ୍ଗ ଏହି ପ୍ରଣତଙ୍କୁ ଶୁଣାନ୍ତୁ ।''

ଶ୍ରୀ ସୂତ ଶୌନକ ଆଦି ମୁନିମାନଙ୍କୁ କହୁଛନ୍ତି, ''ହେ ଋଷିମାନେ, ମହାରାଜ ପରୀକ୍ଷିତ ଏତେ ଧୀନତା ଓ ଉତ୍ସୁକତା ସହକାରେ ଗଜଗ୍ରାହ ଉଦ୍ଧାର ପ୍ରସଙ୍ଗରେ ପ୍ରଶ୍ନ କରିଥିଲେ ଯେ ଭଗବାନ ବ୍ୟାସନନ୍ଦନ ତାଙ୍କର ପ୍ରଶଂସା କଲେ । ''ଭଗବାନଙ୍କର କଥା ପ୍ରତି ଏହିଭଳି ଗମ୍ଭୀର ଅନୁରାଗ ରହିବା ଉଚିତ'' ଏକଥା ବାରମ୍ବାର କହି ସେ ରାଜାଙ୍କୁ କହିଲେ, ''ରାଜନ୍, ମୁଁ ଆପଣଙ୍କୁ ଗଜଗ୍ରାହ ଉଦ୍ଧାରର କମନୀୟ କଥା ଶୁଣେଇବି । ଆପଣ ତାହା ଶ୍ରଦ୍ଧା ସହିତ ଅନ୍ୟ ଋଷିମାନଙ୍କ ସାଙ୍ଗରେ ଶ୍ରବଣ କରନ୍ତୁ ।''

## ଛପ୍ପୟ

ଚୌଥେ ମନୁ ଜଗ ମାଁ ହିଁ ଭୟେ ତାମସ ପ୍ରିୟବ୍ରତ ସୁତ ।
ମନ୍ୱନ୍ତର ଅବତାର ଭୟେ 'ହରି' ଅତି ଶୋଭାଯୁତ ॥
ପିତୁ ହରିମେଧା ଭୟେ ମାତୁ ହରିନୀ କହଲାଇ ।
କୀନ୍ହୋ ଗଜ ଉଦ୍ଧାର ଗ୍ରାହ ତେଁ ତୁରତ ଗୁସାଇଁ ॥
ଯେୟାଁ ଗଜ ପକର୍‌ୟୋ ଗ୍ରାହ ନେଁ, ଶଂକା ରାଜା ନେ କରୀ ।
ଭୟୋ ଯୁଦ୍ଧ କହଁ, କୈ ଦିବସ, କୈସେ ଦୁଃଖ ମେଟ୍‌ୟୋ ହରୀ ॥



# ଗଜ ଓ ଗ୍ରାହ

ଆସୀଦ୍ ଗିରିବରୋ ରାଜଂସ୍ତ୍ରିକୂଟ ଇତି ବିଶ୍ରୁତଃ ।
କ୍ଷୀରୋଦେନାବୃତଃ ଶ୍ରୀମାନ୍ ଯୋଜନାୟୁତ ମୁଚ୍ଛ୍ରିତଃ ॥

—ଶ୍ରୀ. ଭା. ୮ । ୨ । ୧

## ଛପ୍‌ପୟ

ବୋଲେ ଶୁକ ଶୁଣ ନୃପତି ! କ୍ଷୀରସାଗର ତିଂଗ ଗିରିବର ।
ହୁତେ। ତ୍ରିକୂଟ ପ୍ରସିଦ୍ଧ ସହସ୍ରଦଶ ଯୋଜନ ସୁନ୍ଦର ॥
ଲତା ଗୁଳ୍ମ ଦ୍ରୁମ ସଘନ ଶୃଙ୍ଗ ସୁଖକର ସବ ସୋହେଁ ।
ଝର ଝର ଝରନା ଝରୈ ସିଦ୍ଧ ସୁର ମୁନି ମନ ମୋହେଁ ॥
କ୍ରୀଡ଼ା କାନନ ଜହ୍ ବହୁତ, କୋ ସୁନ୍ଦର ଋତୁମାନ ଅତି ।
ସୁରଲଲନା ଘୂମତ ଫିରତ, ସୁରତି କରତ ନିଜ ସହିତ ପତି ॥

ଏପରି ବୁଝେଁ ଯେ ଏ ପୃଥ୍ୱୀମଣ୍ଡଳ ଅନିୟମିତ ଭାବରେ ସୃଷ୍ଟ ହୋଇଯାଇଛି । ଏହାର ନିର୍ମାଣ ଅତ୍ୟନ୍ତ ସାବଧାନତା ସହକାରେ ମାପି ଚୁପି କରାଯାଇଛି । ଅର୍ଥଶାସ୍ତ୍ରରେ ବର୍ଣ୍ଣନା ଅଛି ଯେ ସାତଗୋଟି ଦ୍ୱୀପ ଅଛି ଏବଂ ସେଇମାନଙ୍କୁ ଘେରି ସାତଗୋଟି ସମୁଦ୍ର ଅଛନ୍ତି । ପ୍ରଷ୍ଫୁଟିତ ପଦ୍ମପରି ଜମ୍ବୁଦ୍ୱୀପ ରହିଛି । ଏହି ଜମ୍ବୁଦ୍ୱୀପର ନବ ଖଣ୍ଡ କମଳ ମଧ୍ୟରେ ଯେଉଁ କର୍ଣ୍ଣିକା ଥାଏ ତାହା ସ୍ଥାନରେ ଇଲାବୃତ୍ତ ଖଣ୍ଡ ରହିଛି । ତନ୍ମଧ୍ୟରେ ଅଛି ଦିବ୍ୟ ସୁନ୍ଦର ସୁମେରୁ ପର୍ବତ । କମଳର ଚତୁର୍ଦ୍ଦିଗରେ ଯେପରି ଦଳ ଥାଏ, ସେପରି ଆଠଖଣ୍ଡ ଏହି କମଳ ଦଳ ସଦୃଶ ଅଛନ୍ତି । ଏହାର ଚତୁର୍ଦ୍ଦିଗରେ ଲବଣ ସମୁଦ୍ର । ସମୁଦ୍ର ପାରି ଚାରିପଟେ ପ୍ଲକ୍ଷ ଦ୍ୱୀପ ରହିଛି । ଯେପରି ଦୁର୍ଗର ଚାରିପଟେ ଖାଇ ଥାଏ ସେହିପରି ପ୍ଲକ୍ଷଦ୍ୱୀପର ଗୋଟିଏ ପଟେ କ୍ଷାର ସମୁଦ୍ର ଏବଂ ଅପର ଦିଗରେ ଇକ୍ଷୁ ସମୁଦ୍ର । ଏକ ସମୁଦ୍ର ତାପରେ ଦ୍ୱୀପ, ଏପରି ସାତଦ୍ୱୀପ ସାତ ସମୁଦ୍ର ଦ୍ୱାରା ବେଷ୍ଟିତ ହୋଇ ରହିଛି । କ୍ଷୀର ସମୁଦ୍ର,

Digitized by srujanika@gmail.com

ଇକ୍ଷୁ ସମୁଦ୍ର, ସୁରା ସମୁଦ୍ର, ଘୃତ ସମୁଦ୍ର, କ୍ଷୀର ସମୁଦ୍ର, ଦଧିମଣ୍ଡୋଦ ସମୁଦ୍ର ତଥା ଶୁଦ୍ଧୋଦକ ସମୁଦ୍ର ଏଭଳି ସାତୋଟି ସମୁଦ୍ର । କ୍ଷୀର ସମୁଦ୍ରକୁ ଛାଡ଼ି ଅନ୍ୟ ଛଅ ଗୋଟି ସମୁଦ୍ର ଏହି ଚର୍ମଚକ୍ଷୁକୁ ଦେଖା ଯାଆନ୍ତି ନାହିଁ । ସେମାନେ ଧ୍ୟେୟ । ଏଥିରେ ଜୀବଜନ୍ତୁ, ଲତାଗୁଳ୍ମ, ବୃକ୍ଷ, ଗ୍ରାମ, ନଗର, ବନ, ପର୍ବତ, ନଦ, ନଦୀ ଆଦି ସବୁ ଅଛି । ଏମାନଙ୍କର ପର୍ବତମାନଙ୍କ ଉପରେ ଦିବ୍ୟୋଦ୍ୟାନ ରହିଛି, ଯେଉଁଠାରେ ଦେବତାମାନେ ଅପସରାମାନଙ୍କ ସହିତ ଆସି ବିହାର କରନ୍ତି ।

ଶ୍ରୀ ସୂତ କହୁଛନ୍ତି, "ହେ ମୁନିଗଣ, ଯେତେବେଳେ ନିରାହାର ବ୍ରତ କରି ସାବଧାନ ହୋଇ ଶ୍ରୀ ଶୁକଦେବଙ୍କ ମୁଖରୁ ନିଃସୃତ କଥାମୃତ ପାନକରି ତୃପ୍ତ ହୋଇଥିବା ଭୂପତି ଶ୍ରୀ ପରୀକ୍ଷିତ ମହାରାଜ ଭଗବାନ ବ୍ୟାସଦେବଙ୍କୁ ଗଜ-ଗ୍ରାହ ଉଦ୍ଧାର ପ୍ରସଙ୍ଗରେ ପ୍ରଶ୍ନକଲେ ସେତେବେଳେ ଭଗବାନ ବାଦରାୟଣ ଗଦ୍‌ଗଦ୍ ହୋଇ ଉଠିଲେ । କହିଲେ, "ରାଜନ୍, ତୁମେ ଧନ୍ୟ । ଅନ୍ନଜଳ ତ୍ୟାଗ କରି ସାରି ମଧ୍ୟ ତୁମେ ନବୀନ-ନବୀନ କଥା ଶ୍ରବଣ ନିମନ୍ତେ ଆଗ୍ରହ ପ୍ରଦର୍ଶନ କରୁଛ । ମହାରାଜ, ପ୍ରଥମରେ ମୁଁ ଆପଣଙ୍କୁ ଗଜ ଏବଂ ଗ୍ରାହର ନିବାସ ସ୍ଥାନ ସମ୍ବନ୍ଧରେ କହୁଛି । ତାପରେ ସେହି ପାବନ ପ୍ରସଙ୍ଗ ଶୁଣେଇବି । ଆପଣ ଏହା ଏକାଗ୍ର ଚିତ୍ତରେ ଅପର ମୁନିମାନଙ୍କ ସହିତ ଶ୍ରବଣ କରନ୍ତୁ ।"

"ହେ ଉତ୍ତରାନନ୍ଦବର୍ଦ୍ଧନ ରାଜନ୍, କ୍ଷୀର ସାଗର ପରିବେଷ୍ଟିତ ହୋଇ ତ୍ରିକୂଟ ନାମକ ଏକ ଅତ୍ୟନ୍ତ ରମଣୀୟ ପର୍ବତ ଥିଲା । ତାହା ସାଧାରଣ ପର୍ବତ ନୁହେଁ, ସୁମେରୁ ସଦୃଶ ପ୍ରସିଦ୍ଧ ଏବଂ ବିସ୍ତୀର୍ଣ୍ଣ । ଦଶହଜାର ଯୋଜନ ଥିଲା ତା'ର ଉଚ୍ଚତା ଏବଂ ଚାରିଦିଗକୁ ସେ ସେହି ପରିମାଣରେ ବିସ୍ତୃତ ହୋଇଥିଲା । ରାଜନ୍, ତାହା ଭୂସ୍ୱର୍ଗର ମୁକୁଟମଣି ଗିରିବର ଭାବରେ ପରିଗଣିତ ହେଉଥିଲା । ତା'ର ପାଦଦେଶରେ ପୁଣ୍ୟବନ୍ତ ସ୍ୱର୍ଗୀୟ ପୁରୁଷମାନେ ନିବାସ କରୁଥିଲେ । ଯେଉଁମାନେ ନା' କେବେ ବୃଦ୍ଧ ହେଉଥିଲେ ନା ସେମାନଙ୍କର କେଶ ପକ୍ୱ ହେଉଥିଲା । ଯେଉଁଠାରେ ଦୁଗ୍ଧ ସମୁଦ୍ର ଥିଲା ଏବଂ ସଂକଳ୍ପ ଅନୁସାରେ ଦିବ୍ୟ ଦିବ୍ୟ ବସ୍ତୁ ପ୍ରଦାନକାରୀ ଅସଂଖ୍ୟ ଦ୍ରୁମ ଥିଲେ, ସେଠାକାର ନିବାସୀମାନଙ୍କର ନା ଦୁଃଖ ଥିଲା ନା ଶୋକ । ସେହି ପର୍ବତ ଉପରେ ଦେବତା, ଯକ୍ଷ, କିନ୍ନର, ଗୁହ୍ୟକ, ଅପ୍‌ସରା ଆଦି ମଧ୍ୟ ଆନନ୍ଦମନରେ ସ୍ୱଚ୍ଛନ୍ଦରେ ବିହାର କରୁଥିଲେ । ସେହି ପର୍ବତର ତିନୋଟି ଶୃଙ୍ଗ ଥିଲା । ଗୋଟିଏ ସୁବର୍ଣ୍ଣ ଶୃଙ୍ଗ, ଗୋଟିଏ ରଜତ ଏବଂ ତୃତୀୟଟି ଲୌହ ଶୃଙ୍ଗ, ଏହି ତିନୋଟି କୂଟ (ଶୃଙ୍ଗ) ତ ଏହାର ପ୍ରଧାନ ଶୃଙ୍ଗ । ସେମାନଙ୍କ ବ୍ୟତୀତ ଏହି ବିଶାଳ ପର୍ବତର ଆହୁରି ଅନେକ ଶୃଙ୍ଗ ଥିଲେ ଯହିଁରେ ନାନା ପ୍ରକାର ଧାତୁମାନଙ୍କର ଖଣି ଥିଲା । କେଉଁଠାରେ ଭୂମି ରକ୍ତବର୍ଣ୍ଣ ତ କେଉଁ କ୍ଷେତ୍ରର ପାଷାଣ କୃଷ୍ଣ ବର୍ଣ୍ଣ ଥିଲା । କେଉଁଠାରେ ବର୍ଣ୍ଣ ଥିଲା ରଜତ ଶୁଭ୍ର, କେଉଁଠାରେ ବିବିଧ ମଣିମାନଙ୍କର ଝଣିଥିଲା ଯାହା ସୂର୍ଯ୍ୟ କିରଣର ସଂଯୋଗରେ ଦିଗମାନଙ୍କୁ ଅଲଙ୍କୃତ କରୁଥିଲେ । ସେଠାକାର ବୃକ୍ଷମାନେ ଅତ୍ୟନ୍ତ ମନୋହର ଏବଂ

Digitized by srujanika@gmail.com

ସଦା ଫଳପୁଷ୍ପରେ ନମିତ ହୋଇ ରହିଥିଲେ । ସ୍ଥାନେ ସ୍ଥାନେ ସ୍ୱଚ୍ଛ ଜଳ-ବାହିନୀ କଲ୍ଲୋଳିନୀ ଝରଣାମାନେ ପ୍ରବାହିତ ହେଉଥିଲେ । ବୃକ୍ଷୋପରି ପକ୍ଷୀମାନେ ମଧୁର କଳରବ କରୁଥିଲେ । ସେହି ବିଶାଳ ପର୍ବତ ଚତୁର୍ଦ୍ଦିଗରୁ ସାଗର ପରିବେଷ୍ଟିତ ହୋଇ ରହିଥିଲା ଏବଂ ମନେ ହେଉଥିଲା ଯେପରି କ୍ଷୀର ସାଗରରେ ପଦ୍ମ ଫୁଟିଛି । କ୍ଷୀର ସାଗରର ଦୁଗ୍ଧମୟ ତରଳ ତରଙ୍ଗ ପ୍ରକ୍ଷାଳିତ ତାର ପଦ ପ୍ରାନ୍ତର ହରିତ ବର୍ଣ୍ଣ ମର୍କତମୟୀ ଶିଳା ହେତୁ ପୃଥ୍ୱୀ କଞ୍ଚିତ ଶ୍ୟାମବର୍ଣ୍ଣା ମନେ ହେଉଥିଲା ।

ସେହି ଗିରିରାଜ ଶୋଭାର ସଜୀବ ସାକାର ସ୍ୱରୂପ ମନେ ହେଉଥିଲା । ସ୍ଥାନେ ସ୍ଥାନେ ତା'ର କମନୀୟ କନ୍ଦରାମାନେ ଥିଲେ ଯେଉଁମାନେ ପ୍ରତ୍ୟେକ ଋତୁରେ ସୁଖ ପ୍ରଦାନ କରୁଥିଲେ । କେତୋଟି କନ୍ଦରାରେ ସିଂହ ବ୍ୟାଘ୍ରାଦି ବନ୍ୟ ଜନ୍ତୁ ସୁଖପୂର୍ବକ ନିବାସ କରୁଥିଲେ । ସେମାନଙ୍କର ଗର୍ଜନ ଏବଂ ହାତୀମାନଙ୍କର ଗମ୍ଭୀର ରବ ହେତୁ ସେ କ୍ଷେତ୍ରରେ ନିରନ୍ତର କୀର୍ତ୍ତନ ହେଉଥିବା ଭଳି ମନେ ହେଉଥିଲା । ଗୋଟିଏ ସିଂହ ହେଣ୍ଟାଳ ଛାଡ଼ିଲା । ତାର ପ୍ରତିଧ୍ୱନି ପ୍ରତି କନ୍ଦରାରେ ଧ୍ୱନିତ ହେଲା । ସିଂହ ମନେକଲା ନିକଟରେ ମୋର କୌଣସି ପ୍ରତିଦ୍ୱନ୍ଦ୍ୱୀ ରହିଛି । ତେଣୁ ସେ ଈର୍ଷା ଓ ଅସହିଷ୍ଣୁତା ବଶତଃ ଅଧିକ ତୀବ୍ର ଗର୍ଜନ କଲା । ତା'ର ଗର୍ଜନ ତର୍ଜନ ଶୁଣି ଅନ୍ୟ ସିଂହମାନେ ମଧ୍ୟ ଗର୍ଜନ କଲେ; ସେମାନଙ୍କର ମଧ୍ୟ ଠିକ ସେହିଭଳି ଭ୍ରମ ହେଲା । ହାତୀମାନେ ମଧ୍ୟ ତାହାଶୁଣି ଗର୍ଜନ କଲେ ଏବଂ ଦଉଡ଼ିବାକୁ ଲାଗିଲେ । ଏପରି ଭାବରେ ସେ ବନଭୂମି ନିରନ୍ତର ଧ୍ୱନିତ ହେଉଥିଲା ।

ସୁନ୍ଦର ଏବଂ ବିସ୍ତୃତ କନ୍ଦରା, ସେଥିରେ ରହୁଥିବା ବନ୍ୟ ଜନ୍ତୁମାନେ, ବିଭିନ୍ନ ଦେବଦ୍ରୁମ-ସଙ୍କୁଳ ଦେବୋଦ୍ୟାନ, ସେହି ଉଦ୍ୟାନମାନଙ୍କରେ କ୍ରୀଡ଼ାରତ ଓ କ୍ରୀଡ଼ା ଆସକ୍ତା ଦେବାଙ୍ଗନାମାନେ, ବୃକ୍ଷମାନଙ୍କରେ ବସିଥିବା ବିହଙ୍ଗମ ମାନଙ୍କର ମଧୁର କଳରବ, ସୁନ୍ଦର, ସ୍ୱଚ୍ଛ, ସ୍ୱାଦିଷ୍ଟ ସଲିଳ ପରିପୂର୍ଣ୍ଣ ସରୋବର ସମୂହ, ତରଙ୍ଗ ଓ ଆବର୍ତ୍ତ ମାନଙ୍କରେ ପ୍ରୀତି-ଚଞ୍ଚଳ କୁଟିଳ-ଗାମିନୀ ସରିତା, ଏମାନେ ସମସ୍ତେ ମିଶି ସେଠାକାର ଶୋଭା ସହସ୍ର ଗୁଣିତ କରୁଥିଲେ । ସେଠାରେ ସୁଖସ୍ପର୍ଶୀ ସ୍ୱଚ୍ଛ ଜଳରେ ନିର୍ଭୟରେ ଦେବାଙ୍ଗନାମାନେ ସ୍ନାନ କରୁଥିଲେ ଏବଂ ସେମାନଙ୍କର କୁଚ-କୁଙ୍କୁମ ଦ୍ୱାରା ପୀତାଭ ସୁଗନ୍ଧିତ ଜଳକୁ ମୃଗ ଓ ମୃଗବଧୂମାନେ ଅତ୍ୟନ୍ତ ଉଲ୍ଲସିତ ଆନନ୍ଦରେ ପାନ କରୁଥିଲେ ।

ସେହି ତ୍ରିକୂଟ ପର୍ବତରେ ବୃକ୍ଷରାଜି ପରିପୂର୍ଣ୍ଣ ହୋଇ ରହିଥିଲେ । ଏଣେତେଣେ ନାନା ଜାତି ବୃକ୍ଷ ଶୋଭା ବିକୀରଣ କରୁଥିଲେ । ପର୍ବତ ଉପରେ ପଶ୍ଚିମ ଦିଗର ଲୋକପାଳ ଜଳର ସ୍ୱାମୀ ଭଗବାନ ବରୁଣଙ୍କର ଋତୁମାନ ନାମକ କ୍ରୀଡ଼ାକାନନ ଥିଲା । ସେଠାକାର ଶୋଭା ଅବର୍ଣ୍ଣନୀୟ । ଦେବାଙ୍ଗନାମାନଙ୍କର ଗତି, ବିଳାସ ଏବଂ ମନ୍ଦ ହାସ୍ୟଧ୍ୱନିରେ ତା'ର

Digitized by srujanika@gmail.com

ଶୋଭା ନୃତ୍ୟ କରନ୍ତର ହାସ୍ୟସିକ୍ତ ମନେ ହେଉଥିଲା । ସେଠାକାର ପକ୍ଷୀମାନେ ସେମାନଙ୍କର କଳ କୂଜିତ କଣ୍ଠରେ କ୍ରୀଡ଼ା-କାମିନୀମାନଙ୍କର କାମ-କ୍ରୀଡ଼ାର ସମର୍ଥନ କଲାଭଳି ପ୍ରତୀତ ହେଉଥିଲେ । ସେଠାକାର ଦ୍ରୁମ ଶାଖାରୂପୀ ହସ୍ତ ଚାଳନାରେ ସତେ ଯେପରି କ୍ରୀଡ଼ା-ପ୍ରେମୀମାନଙ୍କୁ ପାଖକୁ ଆସିବାକୁ ନିମନ୍ତ୍ରିତ କରୁଥିଲେ । ସେହି ବୃକ୍ଷମାନେ ସର୍ବଦା ଦିବ୍ୟ ପୁଷ୍ପ-ଫଳରେ ଶୋଭିତ ଥିଲେ । ସେହି କାନନରେ ଅସଂଖ୍ୟ ପ୍ରକାର ବୃକ୍ଷ ଥିଲେ । ଶାଳ, ତାଳ, ତମାଳ, ମନ୍ଦାର, ପାରିଜାତ, ପାଟଳ, ପଣସ, ଖର୍ଜୁର, ମହୁଲ, ଆମ୍ର, ବାନ୍ଧୁପୁରକ, ଅର୍ଜୁନ, ଅଶ୍ୱତ୍ଥ, ପିପ୍ପଲ, ପର୍କଟୀ, ପିଚୁମନ୍ଦ, ତିନ୍ତିଳ, ବାହାଡ଼ା, ବଟ, ବରଟକୋଳି, ବିଲ୍ୱ, କାନ୍ଦକ, କୋବିଦାର, କଦଳୀ, କର୍ପୂର, କପିତ୍ଥ ଚନ୍ଦନ, ଗୁରବାଜ, ଶିଂଶୁ, ଶାଳ୍ମଳୀ, ଦେବଦାରୁ, ଅଁଳା, ଅଗ୍ରୋଟ, ଅଶୋକ, ଡ଼ାଳିମ୍ବ, ନାରଙ୍ଗ, ଲେମ୍ବୁ, ଲିମ୍ବୁ, ନାରିକେଳ ଆଦି ବିଭିନ୍ନ ବୃକ୍ଷ ସେହି ଦେବୋଦ୍ୟାନର ଶୋଭାବର୍ଦ୍ଧନ କରୁଥିଲେ । କମଳ ପୁଷ୍ପରେ ସେଠାକାର ସରୋବର ପରିପୂର୍ଣ୍ଣ ଥିଲା । ଗିରିଶୃଙ୍ଗର ଯେଉଁ ପ୍ରାନ୍ତ ସର୍ବଦା ହିମ ଆବୃତ ହୋଇ ରହୁଥିଲା ସେଠାରେ ସ୍ଥଳପଦ୍ମ ଆପଣାର ତୀବ୍ର ସୁଗନ୍ଧ ସହିତ ସେହି ଦ୍ରୁମରହିତ ସ୍ଥାନକୁ ଶୋଭାଯୁକ୍ତ କରୁଥିଲେ । ସରୋବରମାନଙ୍କରେ ପ୍ରସ୍ଫୁଟିତ ହୋଇଥିବା ପଦ୍ମମାନେ କେଉଁଠାରେ ରକ୍ତାଭ, କେଉଁଠି ଶୁଭ୍ର, କେଉଁଠାରେ ନୀଳାଭ, ତଥା ଅଷ୍ଟପତ୍ରୀ, ଷୋଡ଼ଶ ପତ୍ରୀ, ଶତଦଳ, ସହସ୍ରଦଳ ଥିଲେ । କୁମୁଦ, ଉତ୍ପଳ, କହ୍ଲାର, ଆଦି କମଳରାଜି ରହିଥିଲେ । ସେହି ସରୋବରମାନଙ୍କରେ ରଙ୍ଗବେରଙ୍ଗ ମୀନ ଶ୍ରେଣୀ ଏଣେତେଣେ କ୍ରୀଡାସ୍ଥିତ ଗତିରେ ସନ୍ତରଣ ପୂର୍ବକ ବେଳେବେଳେ ଜଳାସ୍ତରଣର ଊର୍ଦ୍ଧ୍ୱକୁ ଉଲ୍ଲାସରେ ଲମ୍ଫ ପ୍ରଦାନ କରି ପୁନଶ୍ଚ ସେହି ଜଳରେ ପତିତ ହେଉଥିଲେ । ସେମାନଙ୍କର ଗତିହେତୁ ସ୍ପର୍ଶଲାଭ କରି କମଳ ଦଳ ଦୋଳନରେ ପୁଷ୍ପରାଜି ସେଭଳି ରୋମାଞ୍ଚ ଚଞ୍ଚଳ ହେଉଥିଲେ, ଯେଭଳି କାମୀ-କାମିନୀଙ୍କର ଚିତ୍ତ ପାରସ୍ପରିକ ସ୍ପର୍ଶରେ ଚଞ୍ଚଳ ହୋଇଉଠେ । ସେହି ସରୋବରମାନଙ୍କର ସମୀପରେ ହଂସ, କାରଣ୍ଡବ, ଚକ୍ରବାକ, ସାରସ, ଜଳକୁକ୍କୁଟ, ଆଦି ଜଳାଶ୍ରିତ ପକ୍ଷୀମାନେ ସ୍ୱଚ୍ଛନ୍ଦରେ ବିହାର କରୁଥିଲେ ।

ସେଠାରେ ଝରଣା, ନଦ, ନଦୀ, ସର, ସରୋବର, ଅନେକ ଥିଲେ । ମାତ୍ର ସେମାନଙ୍କ ମଧ୍ୟରେ ଏକ ବିରାଟ ସରୋବର ଥିଲା । ତାର ସମୀପରେ କଦମ୍ବ, ବେତସ, ନୀପ, କରବୀର ଆଦି ମଞ୍ଜୁଳ ସୁଗନ୍ଧଯୁକ୍ତ ପୁଷ୍ପବୃକ୍ଷ ରହିଥିଲେ । ଯେତେବେଳେ ସେମାନଙ୍କର ପରାଗରେଣୁ ଜଳସ୍ଥିତ କମଳ ସୁଗନ୍ଧ ସହିତ ମିଶି ଏକ ହୋଇ ଯାଉଥିଲା, ସେତେବେଳେ ସେହି ଜଳ ଅମୃତବତ୍ ସ୍ୱାଦିଷ୍ଟ ଓ ସୁଗନ୍ଧିତ ହୋଇ ଯାଉଥିଲା । ସେହି ସରୋବରର ତଟବର୍ତ୍ତୀ ପ୍ରଦେଶରେ ହିଁ ସଘନ କମନୀୟ ଲତାକୁଞ୍ଜମାନ ରହିଥିଲେ । ଜାତି, ମଲ୍ଲିକା, ମାଳତୀ, ମାଧବୀ ଆଦି ଲତା ତରୁମାନଙ୍କୁ ଆବିଷ୍ଟ ଆଲିଙ୍ଗନାବଦ୍ଧ କରି ରଖିଥିଲେ । ସେମାନଙ୍କ ବ୍ୟତୀତ ନାଗ, ପୁନ୍ନାଗ, କୁଳ, କୁରୁବଳ, ସୁବର୍ଣ୍ଣ, ଯୂଥିକା, ପୀତ ମଲ୍ଲିକା, ବିଭିନ୍ନ ରଙ୍ଗର ପାଟଳୀ ଆପଣା ଆପଣାର ପୁଷ୍ପରାଜିରେ ସେହି ଭୂମିକୁ ପୁଷ୍ପାବୃତ କରି ରଖିଥିଲେ । ଅଧିକ

Digitized by srujanika@gmail.com

ନିଷ୍ପ୍ରୟୋଜନ । ସେହି ସରୋବର ପ୍ରତ୍ୟେକ ଋତୁରେ ସୁଖକର, ଏବଂ ସେଠାକାର ସରମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ଥିଲା । ସେହି ସରୋବରରେ ଏକ ଅତ୍ୟନ୍ତ ବଳବନ୍ତ ଗ୍ରାହ ନିବାସ କରୁଥିଲା । ପ୍ରଚାରିତ ହୋଇଥିଲା, ତାହା ଯେପରି କୌଣସି ପୁଣ୍ୟକ୍ଷୀଣ ଶାପଗ୍ରସ୍ତ ସିଦ୍ଧ । ସେ ଅତି ବିରାଟକାୟ ଥିଲା । ତା'ର ଶରୀର ଯୋଜନ ପ୍ରାୟ ବିସ୍ତୃତ ଥିଲା । ସେ ସେହି ସରୋବରରେ ଏଭଳି ବାସ କରି ରହିଥିଲା ଯେପରି ସେ ସେଠାକାର ସମ୍ରାଟ ।

ସେହି ବନରେ ଏକ ଯୂଥପତି ଗଜରାଜ ମଧ୍ୟ ବାସ କରୁଥିଲା । ସେ ହସ୍ତୀ ସତେ ଯେପରି ଚଳମାନ ପର୍ବତ । ସିଂହ ତାକୁ ଦେଖି ପଳାୟନ କରୁଥିଲେ । ବ୍ୟାଘ୍ର ତା'ର ସମୀପ ପର୍ଯ୍ୟନ୍ତ ଆସିବାକୁ ସାହସ କରୁନଥିଲେ । ଗଣ୍ଡାର ତାକୁ ଦେଖି ମାର୍ଗ ପରିବର୍ତ୍ତନ କରୁଥିଲେ । ହସ୍ତୀମାନେ ତାକୁ ଆସୁଥିବା ଦେଖିଲେ ମାର୍ଗରୁ ଅପସରି ଯାଉଥିଲେ । ତା'ର ସେହି ବଣରେ ରହିଥିବା ହେତୁ ହରିଣ, ଶୂକର, ମହିଷ, ଭଲ୍ଲୁକ, ମର୍କଟ, ହରିଣ, ଶଶକ, ପ୍ରଭୃତି କ୍ଷୁଦ୍ର ଜୀବମାନେ ନିର୍ଭୟ ତଥା ଆନନ୍ଦ ମନରେ ବିଚରଣ କରୁଥିଲେ । ଯେଉଁପରି ଗ୍ରାହ ସେହି ସରୋବରର ସମ୍ରାଟ୍ ଥିଲା, ସେଇଭଳି ହାତୀ ମଧ୍ୟ ସେଇ ସମ୍ପୂର୍ଣ୍ଣ ଅରଣ୍ୟର ସମ୍ରାଟ୍ ଥିଲା । ତାର ଶତାଧିକ ହସ୍ତିନୀ ଏବଂ ସହସ୍ରାଧିକ ପୁତ୍ରକନ୍ୟା ଥିଲେ । ସେମାନଙ୍କ ସହିତ ସେ ଆନନ୍ଦରେ କାଳାତିପାତ କରୁଥିଲା । ତା ପ୍ରତି ସମସ୍ତଙ୍କର ଭୟଥିଲା ଏବଂ ତାର କେହି ହେଲେ ପ୍ରତିଦ୍ୱନ୍ଦ୍ୱୀ ନଥିଲେ । ସିଂହମାନେ ତା'ର ଭୟରେ ଅଭିଭୂତ ରହୁଥିଲେ । କୌଣସି ଶ୍ରେଷ୍ଠ ଜନ୍ତୁକୁ ବି କବଳିତ କରିବାକୁ ସାହସ କରୁ ନଥିଲେ । ସେ ସର୍ବଦା ଗର୍ବ ପ୍ରମତ୍ତ ରହୁଥିଲା । ତା'ର ବିଶ୍ୱାସ ଥିଲା, ଯେ କେହି ବି ତାର ସମ୍ମୁଖୀନ ହୋଇ ପାରିବ ନାହିଁ ।

ଶ୍ରୀ ଶୁକଦେବ କହୁଛନ୍ତି, "ରାଜନ୍ ! ମଦହାରୀ ହରି ସବୁରି ଗର୍ବ ଚୂର୍ଣ୍ଣ କରିଥାନ୍ତି । 'ମଦ'ହିଁ ତାଙ୍କର ଆହାର । ବିଶେଷ କରି ଯିଏ କେବେ ତାଙ୍କର ଭକ୍ତ ଥିଲା, ମାତ୍ର ଏବେ ମଦ-ଗର୍ବିତ ହୋଇଛି, ସେ ବି ମଧ୍ୟ କ୍ଷମଣୀୟ ନୁହେଁ । ଏହି ଗଜ ଏବଂ ଗ୍ରାହ ଉଭୟଙ୍କର ଆପଣା ଆପଣାର ଶାରୀରିକ ବଳ ନିମନ୍ତେ ଗର୍ବଥିଲା ଏବଂ ସେଥି ନିମନ୍ତେ ସେମାନେ ନିଜକୁ ସଂସାରରେ ଅଜେୟ ମନେ କରୁଥିଲେ । ସେମାନେ ପୂର୍ବଜନ୍ମରେ ଶ୍ରୀ ହରିଙ୍କର ଭକ୍ତ ଥିଲେ । ତେଣୁ ଶ୍ରୀହରି ପରିଶେଷରେ ସେମାନଙ୍କର ଗର୍ବ ଖଣ୍ଡନ କରି ଉଦ୍ଧାର କଲେ ।"

ଏହାଶୁଣି ମହାରାଜା ପରୀକ୍ଷିତ ପ୍ରଶ୍ନକଲେ, "ପ୍ରଭୁ, କେଉଁପରି ପ୍ରଭୁ ତାଙ୍କର ଉଦ୍ଧାର କଲେ ସେ ପ୍ରସଙ୍ଗ ଦୟାକରି କହିବା ହୁଅନ୍ତୁ ।"

ଏହାଶୁଣି ପ୍ରସନ୍ନ ଚିତ୍ତରେ ଶ୍ରୀ ଶୁକ କହିଲେ, "ରାଜନ୍, ମୁଁ ତାହା କହିବି, ଆପଣ ପ୍ରୀତିପୂର୍ବକ ଶ୍ରବଣ କରନ୍ତୁ ।"

Digitized by srujanika@gmail.com

## ଛପ୍‌ପୟ୍‌

ତହ ସୁନ୍ଦର ସର ସ୍ୱଚ୍ଛ ସଲିଲ ଯୁତ ସୁଖକର ସୁନ୍ଦର ।
ଖିଲେ ଅରୁନ ବନ କମଲ ନୀଲ କହ୍‌ଲାର ମନୋହର ॥
ଲତା ତୀର କେ ନିକଟ ଲିପଟି ଦ୍ରୁମ ନେହ ଦିଖାବେଁ ।
ପୁଷ୍ପିତ ଶାଖା ହିଲହିଁ ମନହୁ କର ପଥିକ ବୁଲାବେଁ ॥
ରହେଁ ଜନ୍ତୁ ଜଲ କେ ବହୁତ, ମତ୍ସ୍ୟ, ସର୍ପ, କଚ୍ଛପ, ମଗର ।
ତହୀଁ ଗ୍ରାହ ବଲବାନ ଇକ, ବିପୁଲକାୟ୍ ନିବସୈ ନିଡ଼ର ॥



Digitized by srujanika@gmail.com

# ଗ୍ରାହଦ୍ୱାର ଗଜବନ୍ଧନ

ତଂ ତତ୍ର କଶ୍ଚିନ୍ନୃପ ଦୈବଚୋଦିତୋ
ଗ୍ରାହୋ ବଲୀୟାଂଶ୍ଚରଣେ ରୁଷାଗ୍ରହୀତ ।
ଯଦୃଚ୍ଛୟୈବଂ ବ୍ୟସନଂ ଗତୋ ଗଜୋ
ଯଥାବଲଂ ସୋଽତିବଲୋ ବିଚକ୍ରମେ ॥
(ଶ୍ରୀ ଭା. ୮।୨।୨୭)

## ଛପ୍ପୟ

ତହୀ ବନ ମହଁ ଗଜରଜ ବସେ ଜନୁ ଜୀବିତ ଗିରବର ।
ସିଂହ ବ୍ୟାଘ୍ର ଭଗି ଜାହୁଁ ଗନ୍ଧ ତେଁ ମୃଗ, ଅହି ସୂକର ॥
ଛୋଟେ ବଡ଼େ ଅନେକ ପୁତ୍ର ପୌତ୍ରାଦିକ ତହି ସଁଗ ।
କ୍ରୀଡ଼ା କରେଁ ଅନେକ ସୁଁଡ଼ ତେଁ ସୂଁଧେ ପିତୁ ଅଁଗ ॥
ଇନ ଧନ ସବକଁ ସଁଗଲୈ, ଜଲ ପୀବନ ସର ତିଁଗ ଗୟୋ ।
ଘୁସେୟା ସରୋବର ସଲିଲ ମହ ହଥିନନ ସଙ୍ଗ ଖେଲତ ଭୟୋ ॥

ଜୀବ ଯେତେବେଳେ ଅନ୍ଧକାରରେ ବ୍ୟାକୁଳ ହୁଏ, ଅଜ୍ଞାନ ସାଗରରେ ବୁଡ଼ି ଉଦ୍ଧାର ପାଇବାର ଉପାୟ ଚିନ୍ତାକରେ, ସେତେବେଳେ ସେ ଭାଗ୍ୟଶାଳୀ ହୋଇଥିଲେ କୌଣସି ଭକ୍ତର ଚରଣ ଦୈବ-ସଂଯୋଗକୁ ତାକୁ ମିଳିଥାଏ । ନିଜେ ଚେଷ୍ଟାକଲେ ଭକ୍ତ ଚରଣ ପ୍ରାପ୍ତ ହୁଏ ନାହିଁ । ହରି କୃପାକଲେ ଘରେ ଆସି ଅନୁଗ୍ରହ କରିବାକୁ ସନ୍ଥ ଉପସ୍ଥିତ ହୁଅନ୍ତି । ଘରେ ଆସି ପହଞ୍ଚିଲେ ମଧ୍ୟ ସେମାନେ କେବଳ ପାଣି ପିଇ ଚାଲି ଯାଆନ୍ତି । ଯେଉଁ ଦିନ ଜୀବ ହରିଭକ୍ତର ଚରଣ ଏତେ ଦୃଢ଼ତାରେ ଧରିନିଏ

Digitized by srujanika@gmail.com

ଯେ ତାକୁ ଗ୍ରହଣ କରନ୍ତି ନାହିଁ, ସେତେବେଳେ ସେ ଅନାୟାସରେ ସଂସାର ସାଗରରୁ ବାହାରି ଆସେ । ଭଗବାନ ତାକୁ ଦର୍ଶନ ଦିଅନ୍ତି ଏବଂ ତାକୁ ଦେହବନ୍ଧନରୁ ମୁକ୍ତ କରି ନିଜଧାମକୁ ନେଇ ଯାଆନ୍ତି ।

ଶୁକଦେବ ମହାରାଜ ପରୀକ୍ଷିତଙ୍କୁ କହୁଛନ୍ତି, "ରାଜନ୍, ସେ ଯୂଥପତି ଆପଣାର ଶତାଧିକ ହସ୍ତିନୀମାନଙ୍କ ସହିତ ସହସ୍ରାଧିକ ପୁତ୍ର ପୌତ୍ରାଦି ନେଇ ସେଇ ସମୁଦ୍ର ସଦୃଶ ବିସ୍ତୀର୍ଣ୍ଣ ସରୋବରରେ ଜଳପାନ ତଥା କ୍ରୀଡା କରିବାକୁ ଗଲା । ହାତୀମାନଙ୍କୁ ତୃଷ୍ଣାରେ ଅନେକ କଷ୍ଟ ହୁଏ । ଯୂଥପତିର ତ କାହାରିକୁ ଭୟ ନଥିଲା । ସିଂହ, ବ୍ୟାଘ୍ର ତାକୁ ଦେଖି ପଳାୟନ କରୁଥିଲେ, ଗଣ୍ଡାରମାନେ ତାର ରୂପ ଦେଖି ଡରୁଥିଲେ । ତାର ପ୍ରବଳ ପ୍ରତାପରେ ଶ୍ରେଷ୍ଠ ହାତୀ, ମୃଗ, ଶଶକ, ହେଣ୍ଟାବାଘ, ମଇଁଷି, ଶୂକର, ଚମରୀ ଗାଈ, ଭାଲୁ, କୁକୁର, ମାର୍ଜାର ଓ ଅନ୍ୟାନ୍ୟ ପଶୁପକ୍ଷୀ ଓ ସର୍ପ ତଥା ଅପର ଜୀବଜନ୍ତୁ ନିର୍ଭୟରେ ଏଣେ ତେଣେ ବିଚରଣ କରୁଥିଲେ ।

ସେ ଯୂଥପତି ମଦୋନ୍ମତ୍ତ ହୋଇ ଚାଲୁଥିଲା । ବିରାଟ ବୃକ୍ଷମାନଙ୍କର ଶାଖା ପ୍ରଶାଖା-ବାଟରେ ଭାଙ୍ଗି ପକାଉ ଥିଲା, ଲତା ଏବଂ ଅନ୍ୟାନ୍ୟ ଶ୍ରେଷ୍ଠ ଶ୍ରେଷ୍ଠ ପାଦପମାନଙ୍କୁ ଦଳି ଚକଟି ପକାଉ ଥିଲା, ବାଉଁଶ ବଣ ଭାଙ୍ଗିରୁଜି ସେ ଚାଲୁଥିଲା । ସେଦିନ ପଦ୍ମଗନ୍ଧ ହେତୁ ତା'ର ଉତ୍ସୁକତା ଆହୁରି ବଢିଗଲା । ତା'ର ଗଣ୍ଡସ୍ଥଳରୁ ମଦ ଝରି କପାଳ ଆର୍ଦ୍ର କରି ଭୂମିରେ ପଡୁଥିଲା । ତା'ରି ଗନ୍ଧରେ ହସ୍ତିନୀମାନେ ଅଧିକ ମଦୋନ୍ମତ୍ତ ହେଉଥିଲେ । ଆପଣାର ହସ୍ତିନୀ, ପୁତ୍ର ପୁତ୍ରୀ, ପୌତ୍ରପୌତ୍ରୀଙ୍କ ଗହଣରେ ସେ ଶତଶୃଙ୍ଗବନ୍ତ ଚଳମାନ ପର୍ବତ ସଦୃଶ ଦେଖାଯାଉଥିଲା । ପିଲାମାନେ ଆପଣାର ଚଞ୍ଚଳ ପ୍ରକୃତି ହେତୁ ଆଗେ ଆଗେ ଦଉଡ଼ି ଯାଉଥିଲେ, ହାତୀମାନେ ସେମାନଙ୍କର ପଛେପଛେ ଚାଲୁଥିଲେ । କେତେକ ଯୁବା ପୁତ୍ର ଏବଂ ପୁତ୍ରୀ ତାର ପାଖେ ପାଖେ ଥିଲେ । ସେ ସମସ୍ତଙ୍କୁ ନେଇ ଦ୍ରୁତ ଗତିରେ ସରୋବର ଆଡ଼କୁ ଅଗ୍ରସର ହେଉଥିଲା । ଶୋଷ ଏବଂ ସ୍ୱେଦ ହେତୁ ତାର ମୁଖମଣ୍ଡଳ କ୍ଲାନ୍ତ ମନେ ହେଉଥିଲା ।

କିଛିକ୍ଷଣପରେ ସେ ସରୋବର ସମୀପରେ ଉପସ୍ଥିତ ହେଲା । ସ୍ୱଚ୍ଛ ନିର୍ମଳ କାଚ-ସଦୃଶ ଚକ୍‌ଚକ୍, ଶୀତଳ ସୁଗନ୍ଧିତ ପଦ୍ମ-କେଶର-ସୁବାସିତ ଜଳ ମଧ୍ୟରେ ପ୍ରବେଶକରି ସେ ଯଥେଷ୍ଟ ସ୍ନାନକଲା । ଉଦର ପୂର୍ତ୍ତି କରି ଜଳପାନ କଲା । ତାର ତୃପ୍ତି ଆସିବା ପରେ ତା ମନରେ କ୍ରୀଡା ନିମନ୍ତେ ଭାବ ଜାଗ୍ରତ ହେଲା । କୌଣସି ଶାବକକୁ ଉଠେଇ ଜଳରେ ନିକ୍ଷେପ କରୁଥିଲା ତ କାହାକୁ ଠେଲି ଦେଉଥିଲା । କାହା ଉପରେ ଶୁଣ୍ଢରେ ପାଣି ନେଇ ଅଜାଡ଼ି ଦେଉଥିଲା । ଶୁଣ୍ଢରେ ପାଣି ଭରି ସେ ଆପଣାର ହସ୍ତିନୀମାନଙ୍କୁ ଗାଧୋଇ ଦେବା ଆରମ୍ଭ କଲା । କେତେବେଳେ କାହା ଶୁଣ୍ଢରେ ଶୁଣ୍ଢ ଦେଇ ଅନେକ ଜଳ ଭରି ଦେଉଥିଲା, ତ କେତେବେଳେ କାହା ଆଖିକୁ ପାଣି ଛାଟି ଦେଉଥିଲା । ହସ୍ତିନୀମାନେ ତାକୁ ଘେରିପଡ଼ି

Digitized by srujanika@gmail.com

ଘେରିରହି ତାହା ଉପରେ ଜଳ ବର୍ଷା କରୁଥିଲେ । ସେ ସବୁ ସହନ କରି ସମସ୍ତଙ୍କୁ ଆପଣାର ବିଚିତ୍ର କ୍ରୀଡ଼ାରେ ଆମୋଦିତ କରୁଥିଲା । ସମସ୍ତେ ହସୁଥିଲେ, ଖେଳୁଥିଲେ, ଆନନ୍ଦ ସାଗରରେ ଜୁଆର ଅସୁଥିଲା । ସମସ୍ତେ ଆପଣାକୁ ଯେଉଁପରି ଭୁଲି ଯାଇଥିଲେ ଏବଂ ଆତ୍ମବିସ୍ମୃତ ହୋଇ ଜଳକ୍ରୀଡ଼ାର ଆନନ୍ଦରେ ନିମଗ୍ନ ହୋଇ ରହିଥିଲେ, ସେମାନେ ପାଶୋରି ଦେଇଥିଲେ ଯେ ହସିବାର ପରିଣାମ କାନ୍ଦିବା ବି ହୋଇପାରେ । ସୁଖର ଶେଷ ଦୁଃଖରେ ହୋଇପାରେ । ଉତ୍ଥାନର ଅନ୍ତ ପତନ ଅଟେ । ଯେଉଁପରି ଅନେକ ଯୌବନବନ୍ତ ଗୃହସ୍ଥ ଭଗବାନଙ୍କର ମାୟା ମୋହିତ ହୋଇ ସେହିମାନଙ୍କର ଚିନ୍ତା ହିଁ କରେ, ସେପରି ସେ ଯୂଥପତି ମଧ୍ୟ ଆସନ୍ନ କଷ୍ଟ ପ୍ରତି ସଚେତନ ନଥିଲା । ସେ ହସ୍ତିନୀମାନଙ୍କୁ ହସେଇବା, ସେମାନଙ୍କ ଉପରେ ଜଳ ନିକ୍ଷେପ କରିବା, ପିଲାମାନଙ୍କୁ ଖେଳେଇ ଆମୋଦିତ କରିବା ଆଦି କାର୍ଯ୍ୟରେ ନିମଜ୍ଜିତ ହୋଇ ରହିଥିଲା ।

ସେଇ ସମୟରେ ସେହି ମହା ସରୋବରରେ ରହୁଥିବା ଦ୍ୱୀପ ସଦୃଶ ବୃହଦାକାର କୁମ୍ଭୀର ସେଠାରେ ଆସି ଉପସ୍ଥିତ ହେଲା ଏବଂ ସେହି ପର୍ବତ ସଦୃଶ ହସ୍ତୀର ପାଦ ଧରିନେଲା । ହାତୀର ତ ଗର୍ବ ଥିଲା । ମୋତେ କିଏ ଧରିରଖି ପାରିବ ବୋଲି ଭାବୁଥିଲା । ମୋର ସମ୍ମୁଖୀନ ହେବାକୁ କେହି ସମର୍ଥ ନୁହନ୍ତି ବୋଲି ମନେ କରୁଥିଲା । ଅବଶ୍ୟ ସ୍ଥଳ ହୋଇଥିଲେ ହୋଇ-ପାରେ ତାହା ସମ୍ଭବ, ମାତ୍ର ଜଳରେ ତାର ଗର୍ବ ଚୂର ହେଲା । ଗଜ ଗ୍ରାହ କବଳରୁ ମୁକ୍ତ ହେବା ନିମନ୍ତେ ଯଥାସାଧ୍ୟ ଚେଷ୍ଟା କଲା । ତାର ଆପଣାର ବଳ, ପରିବାର, ପ୍ରେମ, ପ୍ରଭାବ, ପୁରୁଷାର୍ଥ, ପ୍ରତିଭା ତଥା ଅନ୍ୟାନ୍ୟ ଗୁଣ ଉପରେ ଯଥେଷ୍ଟ ଭରସା ଥିଲା । ଗୋଟି ଗୋଟି କରି ସେ ସବୁର ପରୀକ୍ଷା କଲା । ପ୍ରଥମେ ସେ ଗ୍ରାହକୁ ଅବଜ୍ଞାକରି ଆପଣାର ସମସ୍ତ ଶକ୍ତି ଖଟେଇ ମୁକ୍ତ ହେବାର ଚେଷ୍ଟାକଲା । ମାତ୍ର ଗ୍ରାହ, ସାମାନ୍ୟ ବିଚଳିତ ମଧ୍ୟ ହେଲା ନାହିଁ ଏବଂ ହାତୀ ଆପଣାକୁ ମୁକ୍ତ କରିପାରିଲା ନାହିଁ । ପାଖରେ ଠିଆ ହୋଇ ତା'ର ହସ୍ତିନୀମାନେ ଏବଂ ବାଳକମାନେ ଚିତ୍କାର କରୁଥିଲେ, କାନ୍ଦୁଥିଲେ, ବ୍ୟାକୁଳ ହେଉଥିଲେ । ମାତ୍ର ସେମାନଙ୍କର ସମସ୍ତ ବ୍ୟାକୁଳତା ଓ ବିଳାପ ନିରର୍ଥକ ହେଉଥିଲା । ଗଜରାଜ ସାହସ ସଞ୍ଚୟ କରି ଆପଣା ଭାଷାରେ ସମସ୍ତଙ୍କୁ ଧମକେଇ କହିଲା, "କନ୍ଦାକଟାରୁ କଣ ମିଳିବ । କିଛି ଉଦ୍ୟମ କରିବା କଥା । ଗୋଟିଏ କାମ କର । ପାଣି ଭିତରେ ଠିଆହୋଇ ପୂରା ବଳ ଲଗେଇବା ମୋ ପକ୍ଷରେ ଆଦୌ ସମ୍ଭବ ନୁହେଁ । ପିଲାମାନେ ବାହାରେ ଥାଆନ୍ତୁ । କେହିଜଣେ ଯୁବକ ମୋର ଶୁଣ୍ଢକୁ ତା ଶୁଣ୍ଢରେ ଗୁଡ଼େଇ ଧରୁ, ତା'ର ଲାଞ୍ଜ ସେଇଭଳି ଜଣେ ଶୁଣ୍ଢରେ ଧରୁ; ସେଇ କ୍ରମରେ ଶୃଙ୍ଖଳାବଦ୍ଧ ହୋଇ ସରୋବର ତଟର ସ୍ଥଳଭାଗକୁ ବଳ ଲଗାଅ । ମୁଁ ମୋର ଶକ୍ତି ଖଟେଇବି । ଏପରି ଭାବରେ ଆମେ ଆମର ସମ୍ମିଳିତ ଶକ୍ତିଦ୍ୱାରା ବାହାରି ଆସିବା ଏବଂ ବାହାରେ ଗ୍ରାହକୁ ମାରିଦେବା ।"

ଅନ୍ୟ ହସ୍ତୀ ଓ ହସ୍ତିନୀମାନେ ସେଇଭଳି କଲେ । ସେମାନେ ସମସ୍ତେ ମିଶି ଗ୍ରାହକୁ ଟାଣି ଆଣିବାକୁ ଚେଷ୍ଟାକଲେ । ମାତ୍ର ଆଶ୍ଚର୍ଯ୍ୟ କଥା ଗ୍ରାହର ବାହାରକୁ ଆସିବା ତ ଦୂରର

Digitized by srujanika@gmail.com

କଥା, ସେ ବରଂ ଏମାନଙ୍କ ଅଧିକରୁ ଅଧିକ ଗମ୍ଭୀରତାକୁ ଟାଣି ନେବାକୁ ଲାଗିଲା । ଯେତେବେଳେ ଅନ୍ୟ ହାତୀମାନେ ଦେଖିଲେ ଯେ ତା' ସାଙ୍ଗରେ ସେମାନେ ମଧ୍ୟ ଟାଣି ହୋଇଯାଉଛନ୍ତି, ସେମାନେ ସମସ୍ତେ ଆପଣା ଆପଣା ପ୍ରାଣଭୟରେ ତାକୁ ଛାଡ଼ିଦେଇ ପଳାୟନ କଲେ । ଗଜ ତା'ପରେ ଏକାକୀ ରହିଗଲା । ତା'ର ସ୍ଥିର ଏତେ ହାତୀ ଏପରି ଏକ ବିପତ୍ତି କାଳରେ କୌଣସି କାମକୁ ଆସିଲେ ନାହିଁ । ସେ ମୃତ୍ୟୁର ମୁହୂର୍ତ୍ତ ଗଣିବାକୁ ଲାଗିଲା । ତା'ର ବୁଦ୍ଧି କୁଣ୍ଠିତ ଏବଂ ପୁରୁଷାର୍ଥ ନଷ୍ଟ ହୋଇଗଲା । ଉତ୍ସାହ ଶିଥିଳ ହେଲା । କର୍ତ୍ତବ୍ୟାକର୍ତ୍ତବ୍ୟର ନିର୍ଣ୍ଣୟ କରିବାକୁ ସେ ଏକାନ୍ତ ଭାବରେ ଅସମର୍ଥ ହେଲା । ଗ୍ରାହ ତ ଜଳଜନ୍ତୁ, ତା'ର ଜଳମଧ୍ୟରେ ନିବାସ । ତେଣୁ ତା'ର ବଳ କ୍ରମେ କ୍ରମେ ଅଧିକ ହେଉଥିଲା । ମାତ୍ର ଗଜ ସ୍ଥଳ-ଜୀବ ଏବଂ ସେଠାରେ ତା'ର ଜଳ ବ୍ୟତୀତ ଅନ୍ୟ କୌଣସି ଆଧାର ନଥିଲା । ଦ୍ୱିତୀୟତଃ ସେ ଗ୍ରାହର କବଳରେ କବଳିତ ହୋଇ ରହିଥିଲା । ତାର ବଳ କ୍ରମଶଃ କ୍ଷୀଣତର ହୋଇ ଯାଉଥିଲା । ଏପରି ଗ୍ରାହ ସହିତ ଯୁଦ୍ଧ କରିବାରେ ସହସ୍ର ବର୍ଷ ବିତିଗଲା । ଦେବତା, ଦାନବ, ଜୀବଜନ୍ତୁ ବିପତ୍ତି କାଳରେ ମଧ୍ୟ ତା'ର ଏପରି ସାହସ ଦେଖି ବିସ୍ମିତ ହେଲେ ।

ଗଜର ଯେତେବେଳେ ପୂର୍ଣ୍ଣ ବିଶ୍ୱାସ ହେଲା ଯେ, ତା'ର କୌଣସି ପୁରୁଷାର୍ଥ ସହାୟକ ହେବ ନାହିଁ, ସେତେବେଳେ ପୂର୍ବଜନ୍ମର ସଂସ୍କାର ହେତୁ ତାହା ମଧ୍ୟରେ ସଦ୍‌ବୁଦ୍ଧି ଜାଗରିତ ହେଲା । ସେ ଭାବିଲା, "ମୁଁ ମୋର ପୂର୍ଣ୍ଣ ଶକ୍ତି ବିନିଯୋଗ କରି ସାରିଛି । ଯେଉଁ ସାଥୀ, ସହଚର, ପୁତ୍ରପୌତ୍ରାଦିଙ୍କର ଭରସା ଥିଲା ସେମାନେ ମଧ୍ୟ ମୋତେ ବିପଦାପନ୍ନ ଦେଖି ପଳାୟନ କଲେ । ମୁଁ ବର୍ତ୍ତମାନ ପୂର୍ଣ୍ଣରୂପରେ ଅସମର୍ଥ । ବର୍ତ୍ତମାନ ପର୍ଯ୍ୟନ୍ତ ମୁଁ ନିଜକୁ ସବଳ ବୋଲି ମନେ କରୁଥିଲି । କିନ୍ତୁ ଏବେ ମୁଁ ବଳହୀନ ହୋଇଯାଇଛି । ଶୁଣିଛି ନିର୍ବଳର ବଳ ହେଉଛନ୍ତି ହରି । କାହିଁକି ସେହି ହରିଙ୍କର ଶରଣାପନ୍ନ ହେବି ନାହିଁ ? କାହିଁକି ତାଙ୍କର ଗୁଣଗାନ କରିବି ନାହିଁ ? କାହିଁକି ତାଙ୍କୁ ସ୍ତୁତିପାଠକରି ସନ୍ତୁଷ୍ଟ କରିବି ନାହିଁ ? କାହିଁକି ତାଙ୍କୁ ସାହାଯ୍ୟ କରିବେ ବୋଲି କାନ୍ଦି କାନ୍ଦି ଡ଼ାକିବି ନାହିଁ ?"

ପରମହଂସ ଚୂଡ଼ାମଣି ଭଗବାନ ଶ୍ରୀଶୁକଦେବ ମହାରାଜ ପରୀକ୍ଷିତଙ୍କୁ କହୁଛନ୍ତି, "ରାଜନ୍, ଏଭଳି ସଦ୍‌ବୁଦ୍ଧି ଉତ୍ପନ୍ନ ହେବାମାତ୍ରେ ଗଜର ନବୀନ ସ୍ଫୁର୍ତ୍ତି ଜାତହେଲା । ତାହା ମନରେ ଉତ୍ସାହର ଅଭିବୃଦ୍ଧି ଘଟିଲା । ସେ ତା'ର ବଳ ଓ ପୁରୁଷାର୍ଥର ଭରସା ତ୍ୟାଗ କଲା । ଜୀବନ ମରଣର ଆଶାରେ ସମଭାବ ପୋଷଣ କରି ସେ ଦେବାଧିଦେବ ଭଗବାନଙ୍କୁ ଭକ୍ତିଭାବରେ ପ୍ରାର୍ଥନା କରିବାକୁ ଲାଗିଲା । ସମସ୍ତ ଆଶା ପରିତ୍ୟାଗ କରି ସେ ଏକମାତ୍ର ଶ୍ରୀହରିଙ୍କ ନିକଟରେ ଆପଣାର ସକଳ ଚିତ୍ତବୃତ୍ତି କେନ୍ଦ୍ରିତ କରିଦେଲା । ସେ ଗଦ୍‌ଗଦ୍ କଣ୍ଠରେ ଅଶ୍ରୁ ବିମୋଚନ ପୂର୍ବକ ଭବ-ଭୟହାରୀ ଭଗବାନଙ୍କର ସ୍ତୁତି ପାଠ କରିବାକୁ ଲାଗିଲା ।"

Digitized by srujanika@gmail.com

## ଛପ୍‌ପୟ୍

କବହୁଁ ଜଲ ଭରି ସୂଁଡ ବହୁନ କେ ଅଙ୍ଗ ଉଡ଼େଲୈ ।
କବହୁଁ ମାରୈ ହୁଡ଼୍‌ଡ଼ ପକରୀ କୈ ଦୂରୀ ଡକେଲୈ ॥
ଯ୍ୟୋଁ ହ୍ୱୈ କୈଁ ମଦମତ୍ତ ଜ୍ଞାନ ବିଜ୍ଞାନ ବିସାରୟ୍ୟୋ ।
କୁଞ୍ଜର କରତ କଲୋଲ କାଲ ନହି ନିକଟ ନିହାର୍‌ୟ୍ୟୋ ॥
ଚଟ ଆୟ୍ୟୌ ତହଁ ଗ୍ରାହ ଇକ, ପଟ୍ଟ ପୈର ପକର୍‌ୟ୍ୟୌ ଜକଡ଼ି ।
କଛୁ ନ ଗିନ୍ୟୌ ବଲ ଦର୍ପ ତୈଁ, ଖୀଁଚେ ତହି ପୁନି ପୁନି ଅକଡ଼ି ॥

—*—

Digitized by srujanika@gmail.com

# ଗଜେର ଭଗବତ୍ ସ୍ତୁତି

ଯଃ କଶ୍ଚନେଶୋ ବଲିନୋଽନ୍ତକୋରଗାତ୍

ପ୍ରଚଣ୍ଡ ବେଗାଦଭିଧାବତୋ ଭୃଶମ୍ ।

ଭୀତଂ ପ୍ରପନ୍ନଂ ପରିପାତି ଯଦ୍‌ଭୟାତ୍

ମୃତ୍ୟୁଃ ପ୍ରଧାବତ୍ୟରଣଂ ତମୀମହି ॥

—ଶ୍ରୀ. ଭା. ୮ । ୨ । ୩୩

## ଛପ୍‌ପୟ

ପୂରେ କର୍‌ୟୋ ପ୍ରୟନ୍ନ ଯଥାମତ ଶକ୍ତି ଲଗାଇ ।

କର ଅନେକୋଁ ଯୁକ୍ତି ଏକହୁଁ କାମ ନ ଆଇ ॥

ଗ୍ରାହ ସଲିଲ କୋ ଜନ୍ତୁ ବଢ଼େଁ ନିତନିତ ବହି ବଲ ମହି ।

ଭଗେ ସଙ୍ଗ କେ ଛୋଡ଼ ଦୋହି ଗଜ ନିର୍ବଲ ଜଲ ମହଁ ॥

ଅନ୍ୟ ଶରନ ଜବ ନହୀଁ ଲଖୀ, ଶରଣ ଗହୀ ଘନଶ୍ୟାମ କୀ ।

କରେ ଶିଥିଲ ସାଧନ ସବହିଁ . ଟେର୍ କରୀ ହରି ନାମ କୀ ॥

ଜୀବ ଯେତେବେଳ ପର୍ଯ୍ୟନ୍ତ ଆପଣାର ବଳର ଭରସାରେ ରକ୍ଷା ପାଇବାର ପ୍ରୟାସ କରୁଥାଏ ସେତେବେଳ ପର୍ଯ୍ୟନ୍ତ ସେ ପ୍ରକୃତ ରକ୍ଷାପ୍ରାପ୍ତ ହୋଇନଥାଏ । ଯେତେବେଳେ ସବୁକିଛୁ ଭୁଲି ଯାଇ ଅନ୍ୟ ଉପାୟ ନଦେଖି ଅଶରଣ-ଶରଣଙ୍କର ଶରଣାପନ୍ନ ହୁଏ, ଯେତେବେଳେ ସର୍ବାତ୍ମ ଭାବରେ ସବୁ ତାଙ୍କର ନିକଟରେ ସମର୍ପଣ କରିଦିଏ, ସେତେବେଳେ ସେ ନିର୍ଭୟ ହୋଇଯାଏ । ସଂସାର ଜୀବର କେବଳ ମାତ୍ର ମୃତ୍ୟୁଭୟ ହିଁ ରହିଛି । ଯେ ସ୍ୱୟଂ ମରଣଧର୍ମୀ, ସ୍ୱୟଂ ଯାହାଙ୍କର ବିନାଶ ଅବଶ୍ୟମ୍ଭାବୀ ସେ ଅନ୍ୟର ରକ୍ଷା କେଉଁପରି କରିପାରିବେ ? ଅମୃତତ୍ୱର ପ୍ରାପ୍ତି ତ କେବଳମାତ୍ର ଅଜନ୍ମା ଅଖିଳେଶ ଶ୍ରୀହରିଙ୍କର ଶରଣରେ ହିଁ ହୋଇଥାଏ ।

Digitized by srujanika@gmail.com

ଶ୍ରୀ ଶୁକଦେବ କହୁଛନ୍ତି, "ରାଜନ୍, ଯେତେବେଳେ ସବୁ ଆଡ଼ରୁ ନିରାଶ ହୋଇ ଗଜ ଆପଣା ହୃଦୟ ମଧ୍ୟରେ ହୃଦୟେଶ ଶ୍ରୀହରିଙ୍କର ହିଁ ଧ୍ୟାନ କରିବାକୁ ସ୍ଥିର କଲା ସେତେବେଳେ ସେ ଦିବ୍ୟ ସ୍ତୋତ୍ର ଦ୍ୱାରା ଶ୍ରୀହରିଙ୍କର ପ୍ରାର୍ଥନା କରିବାକୁ ଲାଗିଲା ।

ଏହାଶୁଣି ମହାରାଜ ପରୀକ୍ଷିତ ପଚାରିଲେ, "ପ୍ରଭୁ, ହାତୀ କପରି ସ୍ତୁତି କରି ପାରିବ ? ସେ କଣ ପାଠ ପଢ଼ିଛି ? ପଶୁହୋଇ ସେ ଶୁଦ୍ଧ ସଂସ୍କୃତରେ କପରି ସ୍ତୁତି ପାଠ କରିବ ? ଏକଥା ଅସମ୍ଭବ ଭଳି ମନେ ହେଉଛି ?"

ଏହାଶୁଣି ଶ୍ରୀ ଶୁକଦେବ କହିଲେ, "ମହାରାଜ, ଅସମ୍ଭବ ବୋଲି କୌଣସି କଥା ନାହିଁ । ଭଗବାନଙ୍କର ସୃଷ୍ଟିରେ ସବୁକିଛି ସମ୍ଭବ । ଶୁକ କେତେ ଶୁଦ୍ଧ ମନୁଷ୍ୟ ବାଣୀ ଉଚ୍ଚାରଣ କରିଥାଏ । ତା'ଠାରୁ ଅଧିକ ସୁନ୍ଦର ବହୁରଙ୍ଗୀ ବଡ଼ ଶୁକପକ୍ଷୀ କହିଥାଏ । ଆପଣ ଯାହା କହିବେ ସେ ତାହା ତୁରନ୍ତ ଶୁଣେଇ ଦେବ । ଏ ହାତୀ ଯଦ୍ୟପି ଏଇ ଜନ୍ମରେ ପଢ଼ି ନଥିଲା ସେ ପୂର୍ବଜନ୍ମରେ ଭଗବାନଙ୍କର ଉପାସନା କରିଥିଲା । ରାଜନ୍, ଶୁଭକର୍ମର ଫଳ କଦାପି ନଷ୍ଟହୁଏ ନାହିଁ । ତେଣୁ ଏହି ବିପତ୍ତି କାଳରେ ନିଜର ପୂର୍ବଜନ୍ମର ବିଦ୍ୟା ସ୍ମରଣ ହେଲା । ପୂର୍ବଜନ୍ମରେ ସେ ଯେଉଁପରି ଭଗବାନଙ୍କର ସ୍ତୁତି କରୁଥିଲା ସେ ସେଭଳି ସ୍ତୁତି କରିବାକୁ ଲାଗିଲା ।" ଏହାଶୁଣି ମହାରାଜ ପରୀକ୍ଷିତ ପଚାରିଲେ, "ମହାଭାଗ, ତା'ର ସ୍ମୃତି କାହିଁକି ପ୍ରଥମରୁ ଜାଗରିତ ହେଲା ନାହିଁ ।"

ଏହାଶୁଣି ଭଗବାନ ଶୁକଦେବ କହିଲେ, "ରାଜନ୍, ପ୍ରଥମେ ସେ ଆପଣାର ବଳ, ପୁରୁଷାର୍ଥ, ପ୍ରଭାବର ମଦରେ ଉନ୍ମତ୍ତ ଥିଲା । ପୂର୍ବଜନ୍ମର ସ୍ମରଣ ତପସ୍ୟା ଫଳରେ ହୋଇଥାଏ । ଏକ ସହସ୍ର ବର୍ଷ ପର୍ଯ୍ୟନ୍ତ ଅନାହାର ହୋଇ ଜଳମଧ୍ୟରେ ଠିଆହୋଇ ରହିବା ମହାନ୍ ତପସ୍ୟା ସଦୃଶ ହେଲା । ତା'ପରେ ସେ ତା'ର ସମସ୍ତ ବଳ ପୁରୁଷାର୍ଥ ପ୍ରଭୁପାଦ ପଦ୍ମରେ ସମର୍ପିତ କରିଦେଲା । ସର୍ବତୋଭାବେ ସେ ଆତ୍ମସମର୍ପଣ କରିଦେଲା । ତା'ପରେ ତ ତା'ର ପୂର୍ବ ଜନ୍ମର ସ୍ମୃତି ଜାଗରିତ ହେବା ଉଚିତ । ତେଣୁ ସେ ସେଭଳି ଅଦ୍ଭୁତ ସ୍ତୋତ୍ରରେ ପ୍ରଭୁଙ୍କର ସ୍ତୁତି ପାଠ କଲା । ଯେ କୌଣସି ଦୁଃଖ କବଳିତ ପ୍ରାଣୀ ସ୍ୱଚ୍ଛ ହୃଦୟରେ ପ୍ରଭୁଙ୍କୁ ପ୍ରାର୍ଥନା କଲେ ତାର ଦୁଃଖ ଅବଶ୍ୟ ଦୂର ହେବ ।"

ଏହା ଶୁଣି ଶ୍ରୀ ଶୌନକ କହିଲେ, "ହେ ସୂତ ! ଦୟାକରି ସେ ଦିବ୍ୟ ସ୍ତୋତ୍ର ଆମକୁ ଶୁଣାଇବା ହୁଅନ୍ତୁ ।"

ଏହାଶୁଣି ଶ୍ରୀ ସୂତ କହିଲେ, "ମୁଁ ସମସ୍ତ ଭାଗବତୀ ଦିବ୍ୟ ସ୍ତୋତ୍ରକୁ ଏକାଥରକେ ଶୁଣେଇବାକୁ ଚାହୁଁଛି, । ତେଣୁ ବର୍ତ୍ତମାନ ଆପଣ ସେହି ଅଦ୍ଭୁତ ସ୍ତୋତ୍ର ଶ୍ରବଣର ଲୋଭ ସମ୍ବରଣ କରନ୍ତୁ । ଏହା ପର ପ୍ରସଙ୍ଗ ଶୁଣନ୍ତୁ । ସେ ନିତ୍ୟ ପଠନୀୟ ସ୍ତୋତ୍ର ।"

Digitized by srujanika@gmail.com

ଏହାଶୁଣି ଶୌନକ କହିଲେ, "ଯାହା ଆପଣଙ୍କର ଇଚ୍ଛା, ସେ ପ୍ରସଙ୍ଗ କହନ୍ତୁ । ପ୍ରସଙ୍ଗ ମଧ୍ୟ ଅମୃତ ତୁଲ୍ୟ ।"

ସୂତ କହିଲେ, "ହେ ମୁନିଗଣ ! ଗଜ ଆପଣା ଶୁଣ୍ଢରେ ନାଳ ସହିତ ଏକ କମଳ ପୁଷ୍ପ ନେଇ ଅତ୍ୟନ୍ତ ଆର୍ତ୍ତିକଣ୍ଠରେ ସର୍ବାନ୍ତର୍ଯାମୀ ଅଖିଳେଶ ଶ୍ରୀହରିଙ୍କର ସ୍ତୁତି କଲା ଏବଂ ତା'ପରେ କହିଲା, "ପ୍ରଭୋ ! ଆପଣ ଏହା ମନେ କରନ୍ତୁ ନାହିଁ ଯେ ମୁଁ ଜୀବିତ ରହିବା ନିମନ୍ତେ ଏ ସ୍ତୁତି କରୁଛି । ପ୍ରଭୋ ! ତାହାମୋର ଅଭିପ୍ରାୟ ନୁହେଁ । ଏହି ତମୋମୟ ଅଜ୍ଞାନାବୃତ ହସ୍ତୀଯୋନିରେ ମୋତେ କେଉଁ ସୁଖ ଅବା ପ୍ରାପ୍ତ ହେଉଛି ? ଏ ଯୋନିରେ ତ ମୋର ଜ୍ଞାନ ପର୍ଯ୍ୟନ୍ତ ନଷ୍ଟ ହୋଇ ଯାଇଛି । ଆତ୍ମ-ପ୍ରକାଶ-ହୀନ ହୋଇ ମୁଁ ପଶୁ ଯୋନିରେ ବଞ୍ଚି ରହି କଣ ବା କରିବି ? ହେ ସର୍ବାନ୍ତର୍ଯାମୀ, ମୁଁ ଅଜ୍ଞାନ ମୁକ୍ତ ହେବାକୁ ଚାହୁଁଛି । ଆପଣ ଏ ବିଶ୍ୱର କର୍ତ୍ତା, ଭର୍ତ୍ତା, ସଂହର୍ତ୍ତା, ସର୍ବାନ୍ତର୍ଯାମୀ । ଏଣୁ ମୁଁ ଆପଣଙ୍କର ସ୍ତୁତି କରୁଛି । ଆପଣ ବିଶ୍ୱରୂପ ହୋଇ ମଧ୍ୟ ବିଶ୍ୱାତୀତ । ଏ ବିଶ୍ୱ ଯା'ର କ୍ରୀଡ଼ାର ଉପକରଣ ମାତ୍ର, ଯେ ଅଜନ୍ମା ହୋଇ ମଧ୍ୟ ବିଶ୍ୱାତ୍ମା, ସେହି ପରାତ୍ପର ପ୍ରଭୁଙ୍କୁ ମୁଁ ସ୍ମରଣ କରୁଛି । ଯାହାଙ୍କର ମାୟାରେ ଆବୃତ ହୋଇ ଅହଂତା ଓ ଅସ୍ମିତାର ବଶୀଭୂତ ହୋଇ, ଜୀବ ଯାହାଙ୍କର ଯଥାର୍ଥ ରୂପକୁ ଜାଣି ପାରେ ନାହିଁ, ସେହି ଅପରମେୟ ଶକ୍ତିବନ୍ତ ମହାମହିମ ମହେଶ୍ୱରଙ୍କର ପାଦପଦ୍ମରେ ମୁଁ ପୁନଃପୁନଃ ପ୍ରଣାମ କରୁଛି ।"

ଶ୍ରୀ ଶୁକଦେବ କହୁଛନ୍ତି, "ରାଜନ୍, ଗଜେନ୍ଦ୍ର କୌଣସି ଜଣେ ଦେବତାଙ୍କର ନାମ ନେଲା ନାହିଁ । ସେ ନିର୍ବିଶେଷ ଭାବରେ ଭଗବାନଙ୍କର ସ୍ତୁତି କଲା । ଇନ୍ଦ୍ର ତ୍ରିଲୋକେଶ ବୋଲାନ୍ତି । ତେଣୁ ଦେବତାମାନେ କହିଲେ "ପ୍ରଭୁ ! ଆପଣ ଯାଇ ସେହି ଭୟଗ୍ରସ୍ତ ଗଜର ଉଦ୍ଧାର କରନ୍ତୁ ।"

ଇନ୍ଦ୍ର କହିଲେ, "ଭାଇ, ସେ ମୋର ବୃତ୍ରହନ୍ତା, ବଜ୍ରଧାରୀ, ଶଚୀପତି, ନାକପତି, ଶତକ୍ରତୁ ଆଦି ନାମମାନଙ୍କ ମଧ୍ୟରୁ ଥରେ ହେଲେ ଗୋଟିଏ ବି ନାମୋ-ଚ୍ଚାରଣ କଲା ନାହିଁ । ମୁଁ କେଉଁ ଭଳି ତାଙ୍କୁ ରକ୍ଷା କରିବାକୁ ଯାଇପାରିବି ?"

ତାହାଶୁଣି ଦେବତାମାନେ ପ୍ରଜାପତି ବ୍ରହ୍ମାଙ୍କୁ କହିଲେ । ବ୍ରହ୍ମା କହିଲେ, "ସେ ଥରେ ହେଲେ କମଳାସନ, ଚତୁର୍ମୁଖ, ବ୍ରହ୍ମା କିମ୍ବା ବିଧି କୌଣସି ନାମ ଉଚ୍ଚାରଣ କଲା ନାହିଁ । ମୁଁ କିପରି ତା'ର ରକ୍ଷା କରିବାକୁ ଯାଇପାରିବି ?"

ଦେବତାମାନଙ୍କ ନିମନ୍ତେ ଏହା ଏକ କୌତୁହଳର ବିଷୟ ହୋଇ ଉଠିଲା । ସେମାନେ ଯାଇ ଶିବଙ୍କୁ କହିଲେ । ଦେବାଧିଦେବ ମହାଦେବ କହିଲେ, "ମୁଁ ଯଦ୍ୟପି

Digitized by srujanika@gmail.com

ମହାଦେବ, ତେବେ ଜଣାଗଲା ନାହିଁ ସେ କେଉଁ ଦେବତାଙ୍କୁ ଡ଼ାକୁଛୁ । ମୁଁ ଶିବ ଏବଂ କେହି ଅନ୍ୟ ଦେବତା ସେଠାରେ ଉପସ୍ଥିତ ଥିଲେ ବୃଥା ବରସା ହେବ । ସେ ତ ନିର୍ବିଶେଷ ଦେବଙ୍କର ସ୍ତୁତି କରୁଛୁ ।''

ଦେବତାମାନେ ଦଉଡ଼ି ଯାଇ ଭଗବାନ ଶ୍ରୀହରିଙ୍କ ନିକଟରେ ପହଞ୍ଚିଲେ । ସେମାନେ ସେଠାରେ ପହଞ୍ଚି ଭଗବାନଙ୍କର ସ୍ତୁତି କରିବାକୁ ଲାଗିଲେ । ସେମାନେ ଦେଖିଲେ ଭଗବାନ ଅତ୍ୟନ୍ତ ବ୍ୟଗ୍ର । ସେ ସମୟରେ ଗରୁଡ଼ର ଆବାହନ କରିଥିଲେ । ଗରୁଡ଼ ମଧ୍ୟ ଉଡ଼ିଯିବାକୁ ସମୁତ୍ସୁକ ହୋଇ ରହିଥିଲେ । ଭଗବାନଙ୍କୁ ଏବଂ ତାଙ୍କର ବାହନ ବିନତାନନ୍ଦନ ଗରୁଡ଼ ଦେବଙ୍କୁ ଏପରି ବ୍ୟଗ୍ର ଦେଖି ଦେବତା ମାନଙ୍କର କୌଣସି କଥା କହିବାକୁ ସାହସ ହେଲା ନାହିଁ । ସେମାନେ ଗୋଟିଏ ପଟେ ଠିଆ ହୋଇ ହରିଣୀ-ନନ୍ଦନ ଭଗବାନ ହରିମେଧା ଆନନ୍ଦବର୍ଦ୍ଧନଙ୍କର ସ୍ତୁତି କରିବାକୁ ଲାଗିଲେ ତାଙ୍କର ସ୍ତୁତି ପ୍ରତି ଧ୍ୟାନ ନ ଦେଇ ଭଗବାନ ଶୀଘ୍ର ଗରୁଡ଼ାରୂଢ଼ ହେଲେ । ଗରୁଡ଼ ବାୟୁର ବେଗକୁ ତିରସ୍କାର କରି ମନୋବେଗ ସଦୃଶ ଯାତ୍ରାକଲେ । ଦେବତାମାନେ ମଧ୍ୟ ପଛେପଛେ ସ୍ତୁତି କରିକରି ବନ୍ଦୀମାନଙ୍କ ସଦୃଶ ଆପଣା ଆପଣା ବିମାନରେ ପ୍ରଭୁଙ୍କର ଅନୁଗମନ କରିବାକୁ ଲାଗିଲେ ।

## ଛପ୍ପୟ

ହେ ହରି ଅଶରନ ଶରନ ଦୀନ ଦୁଖ ମେଟନ ହାରେ ।
ହେ କରୁନା କେ ଅୟନ ! ପ୍ରନତ ପ୍ରନ ପାଲନ ବାରେ ॥
ଆଇ ଗ୍ରସୋ ତମ ଗ୍ରାହ ସଚ୍ଚିଦାନନ୍ଦ ଉବାରୋ ।
କୈସେ ହୂ କରି କୃପା କଷ୍ଟ ହରି ହରେ ହମାରୋ ॥
ନିର୍ବିଶେଷ ବିନତୀ ସୁନୀ, ନାହିଁ ଆୟେ ସୁର ଅନ୍ୟ ଜବ ।
ଗରୁଡ଼ଧ୍ୱଜ ଚଢି ଗରୁଡ଼ ପୈ, ଆୟେ ଗଜ ଢିଂଗ ତୁରତ ତବ ॥

—✻—

Digitized by srujanika@gmail.com

# ଗଜ-ଗ୍ରାହ-ଉଦ୍ଧାର

ତଂ ବୀକ୍ଷ୍ୟ ପୀଡ଼ିତମଜଃ ସହସାବତୀର୍ଯ୍ୟ
ସଗ୍ରାହମାଶୁ ସରସଃ କୃପୟୋଜ୍ଜହାର ।
ଗ୍ରାହାଦ୍‌ବିପାଟିତମୁଖାଦରିଣା ଗଜେନ୍ଦ୍ରମ୍
ସଂପଶ୍ୟତାଂ ହରିରମୂମୁଚଦୁସ୍ତ୍ରିୟାଣାମ୍ ॥

—ଶ୍ରୀ. ଭା. ୮ । ୩ । ୩୩

## ଛପ୍‌ପୟ

ବିନୀତ ଗଦ୍‌ଗଦ କଣ୍ଠ କରେ ନୟନ କୂଁ ମୂଁଦେ ।
ଗଜକୁଁ ନିରଖ୍ୟୋ ବିକଲ ଗରୁଡ଼ ତେଁ ଶ୍ରୀହରି କୂଦେ ॥
ଏକ ହାଥ ତେଁ ପକରି ଗ୍ରାହ ସଁଗ ଗଜହୁଁ ଉବାରୌ ।
ଜଲ ତେଁ ବାହାର କରୌ ଚକ୍ର ତେଁ ମୁହଁଡ଼ୌ ଫାରୌ ॥
ନୟନାନନ୍ଦ ନିହାରି ହରି, ଶାନ୍ତ ହୃଦୟ ଗଜ କେ ଭଈ ।
ଭବଭୟହାରୀ ବିଷ୍ଣୁନେ, ମୁକ୍ତି ଗ୍ରାହ ହୁ କୋଁ ଦଈ ॥

ହରି ଯେତେବେଳ ପର୍ଯ୍ୟନ୍ତ ପ୍ରକଟିତ ହୁଅନ୍ତି ନାହିଁ, ସେତେବେଳ ଯାଏ ଜୀବ ଆପଣାର ପରର ବା ଅନ୍ୟ କାହାର ବଳ ଓ ପୌରୁଷ ଉପରେ ଆଶା ରଖିଥାଏ । ଭଗବାନ ସେତେବେଳେ ପ୍ରକଟିତ ହୁଅନ୍ତି, ଯେତେବେଳେ ମନୁଷ୍ୟ ଅନନ୍ୟ ହୋଇଯାଏ । ଶ୍ୱେତଦ୍ୱୀପକୁ ଯେ ଯାଏ, ତାହାକୁ ହିଁ ଭଗବାନ ଦର୍ଶନ ଦେଇଥାନ୍ତି । କାରଣ ସେଠାରେ ଭଗବାନ ନିତ୍ୟ ଆପଣାର ଦିବ୍ୟ ରୂପରେ ନିବାସ କରନ୍ତି । ଥରେ ଏକତ, ଦ୍ୱିତ ଏବଂ ତ୍ରିତ ନାମକ ତିନିଜଣ ମହର୍ଷି ଆପଣାର ତପସ୍ୟା ପ୍ରଭାବରେ ଶ୍ୱେତଦ୍ୱୀପରେ ପହଞ୍ଚିଲେ । ସେଠାର ଅଧିବାସୀ ସମସ୍ତେ ଚତୁର୍ଭୁଜ । ସମସ୍ତଙ୍କର ହାତରେ ଶଙ୍ଖ, ଚକ୍ର, ଗଦା ଏବଂ ପଦ୍ମ ଥାଏ । ସେହି

Digitized by srujanika@gmail.com

ତିନ ଜଣ ମହାପୁରୁଷ ଶ୍ୱେତଦ୍ୱୀପର ସେଇ ଅଧିବାସୀମାନଙ୍କର ଦର୍ଶନ ତ କଲେ । ମାତ୍ର ଶ୍ୱେତଦ୍ୱୀପରେ ପହଞ୍ଚିଲା ପରେ ମଧ୍ୟ ସେମାନଙ୍କୁ ଭଗବାନଙ୍କର ଦର୍ଶନ ମିଳିଲା ନାହିଁ । ସେତେବେଳେ ସେମାନେ ଚକିତ ହୋଇ ତା'ର କାରଣ ପଚାରିଲେ । କୌଣସି ପ୍ରକାର ଉତ୍ତର ନପାଇ ସେମାନେ ଚିନ୍ତିତ ହେଲେ । ସେତେବେଳେ ଆକାଶବାଣୀ ହେଲା— "ତୁମର ମୋ ପ୍ରତି ଅନନ୍ୟ ଅନପାୟିନୀ ଭକ୍ତି ନାହିଁ । ତୁମେ ମୋର ଏହି ଲୋକରୁ ଫେରି-ଯାଅ । ଏହି ଲୋକ ଏବଂ ଏଠାକାର ଅଧିବାସୀମାନଙ୍କର ଦର୍ଶନ ହୋଇଗଲା । ଏହା ତୁମର ତପସ୍ୟା ଫଳ ନିମନ୍ତେ ପର୍ଯ୍ୟାପ୍ତ ହୋଇଛି । ଏହା ଶୁଣି ସେମାନେ ଫେରି ଆସିଲେ । ତା'ପରେ ସେଠାରେ ନାରଦ ପହଞ୍ଚିଲେ । ସେ ପହଞ୍ଚିବା ମାତ୍ରକେ ତାଙ୍କୁ ଈଶ୍ୱରଙ୍କ ଦର୍ଶନ ପ୍ରାପ୍ତ ହେଲା । ସେ ଏଥିର କାରଣ ପଚାରିଲେ । ଈଶ୍ୱର କହିଲେ, "ତୁମର ମୋ ପ୍ରତି ଅନନ୍ୟ ଭାବ ରହିଛି । ତେଣୁ ତୁମକୁ ସରଳଭାବରେ ମୋର ଦର୍ଶନର ଲାଭ ହେଲା । ସେହି ଋଷିମାନଙ୍କର କିଛି ଅନ୍ୟ ଇଚ୍ଛା ମଧ୍ୟ ରହିଛି । କିଛି ମୋର ମଧ୍ୟ ଇଚ୍ଛା ଅଛି । ଏଭଳି ମିଳାମିଶା ଭକ୍ତିଦ୍ୱାରା ମୋର ପ୍ରସାଦ ପ୍ରାପ୍ତ ହେବା ଦୁର୍ଲ୍ଲଭ କଥା । ଅହେତୁକ, ଅବ୍ୟଭିଚାରିଣୀ ଅନନ୍ୟ ଭକ୍ତିଦ୍ୱାରା ମୁଁ ପ୍ରସନ୍ନ ହୋଇଥାଏ ।"

ଶ୍ରୀ ଶୁକଦେବ କହୁଛନ୍ତି, "ରାଜନ୍, ଗଜେନ୍ଦ୍ରକୁ ପୂର୍ବଜନ୍ମର ଜ୍ଞାନ ଲାଭ ହୋଇଥିଲା । ସେତେବେଳେ ସେ କୁଟୁମ୍ବ, ପରିବାର, ପୁତ୍ର, ପୌତ୍ର ଏପରିକି ସେହି ଶରୀର ପ୍ରତି ମଧ୍ୟ ବିରକ୍ତ ହୋଇ ସାରିଥିଲା । ତାର ଚିତ୍ତ ଶ୍ୟାମସୁନ୍ଦରଙ୍କର ଚରଣରେ ଲାଗି ସାରିଥିଲା । ଧୀରେ ଧୀରେ ତା'ର ସମସ୍ତ ବାସନା କ୍ଷୀଣ ହୋଇ ଯାଇଥିଲା । ସବୁ ଦିଗରୁ ଆଶା ତୁଟି ସାରିଥିଲା । ଯେତେବେଳେ ବଳ ହ୍ରାସ ହୋଇଗଲା ଏବଂ ତାକୁ ବଳହୀନ ମନେକରି ଗ୍ରାହ ତାକୁ ଅତଳ ଜଳ ମଧ୍ୟକୁ ଟାଣି ନେବାକୁ ବସିଲା, ସେତେବେଳେ ଗଜର ସମ୍ପୂର୍ଣ୍ଣ ଶରୀର ପାଣିରେ ବୁଡ଼ି-ଗଲା । କେବଳ ମାତ୍ର ଶୁଣ୍ଢ ହିଁ ଟେକା ହୋଇ ରହିଲା । ହାତୀର ଯେତେବେଳେ ଯାଏ ଶୁଣ୍ଢ ବୁଡ଼ିଯାଏ ନାହିଁ, ସେତେବେଳ ପର୍ଯ୍ୟନ୍ତ ସେ ଯେତେ ଜଳ ମଧ୍ୟକୁ ଗଲେ ମଧ୍ୟ ତା'ର କୌଣସି ଭୟ ନଥାଏ । ତା'ପରେ ଶୁଣ୍ଢ ମଧ୍ୟ ବୁଡ଼ିବାକୁ ଲାଗିଲା । ଅନନ୍ୟତା ବୃତ୍ତି ପରାକାଷ୍ଠାର ସୀମା ସ୍ପର୍ଶ କଲା । ଶୁଣ୍ଢ ବୁଡ଼ି ଯିବାକୁ ସାମାନ୍ୟ ଟିକିଏ ବାକି ଥିଲା । ଗଜ-ରାଜ ମନେକଲା ଯେ ଏଇନେ ତା'ର ପ୍ରାଣ ଯିବ ଏବଂ ଅନ୍ତିମ ସମୟରେ ଅନ୍ତତଃ ଭଗବାନଙ୍କର ନାମୋଚ୍ଚାରିତ ହେଉ । ଏବଂ ସମସ୍ତ ସାଧନା ସଫଳ ହେଉ । ଏହା ଭାବି ସେ କମଳ ପୁଷ୍ପ ଉଠେଇ ନାରାୟଣଙ୍କର ନାମ ନେବା ମାତ୍ରକେ ତାକୁ ଆକାଶରେ ଗରୁଡ଼ାରୂଢ଼ ଭଗବାନ ଶ୍ରୀହରିଙ୍କର ଦର୍ଶନ ଲାଭ ହେଲା । ଗଜର ହୃଦୟ ପୁଲକିତ ହୋଇ ଉଠିଲା । ସେ ଭାବିଲା ଭଗବାନ ତ ବର୍ତ୍ତମାନ ଆକାଶରେ ଅନେକ ଦୂରରେ ଅଛନ୍ତି, ଗରୁଡ଼ ଉତୁରିବା ପରେ ହିଁ ଓହ୍ଲେଇବେ ଓ ସେତେବେଳକୁ ମୁଁ ପୂରା ବୁଡ଼ିଯାଇଥିବି । କାରଣ ବୁଡ଼ିଯିବାକୁ ମୋର ଆଉ ଡେରି ନାହିଁ । ସର୍ବାନ୍ତର୍ଯ୍ୟାମୀ ପ୍ରଭୁ ତା'ର ଏଭାବ ଜାଣିଗଲେ । ଗରୁଡ଼ଙ୍କ ପିଠିରେ ଦାରମ୍ବାର ଟିପା ମାରିଲେ । ଗରୁଡ଼ ଅତ୍ୟନ୍ତ ବେଗରେ ଉଡ଼ି ଆସିଥିବା ହେତୁ ଥକି

Digitized by srujanika@gmail.com

ଯାଉଥିଲେ । ତେଣୁ ଗରୁଡ଼ଙ୍କ ପିଠିରୁ ସେଇ ସରୋବର ମଧ୍ୟକୁ ଡେଇଁ ପଡ଼ିଲେ ଏବଂ ଗଜର ପଛ ଗୋଡ଼ ଧରି ଏତେ ଜୋରରେ ଟାଣିନେଲେ ଯେ ଗଜ ସମେତ ଗ୍ରାହ ମଧ୍ୟ ପଦାକୁ ବାହାରି ଆସିଲା । ସେ ସେଠାରେ ଚକ୍ର ପେଷି ଗ୍ରାହର ମୁହଁ ଚିରିଦେଲେ । ମୁହଁ ଚିରି ହୋଇଯିବା ପରେ ଆପେ ଗଜର ଗୋଡ଼ ବାହାରି ଆସିଲା । ଗଜର ବନ୍ଧନ ଛିନ୍ନ ହୋଇଗଲା । 'ବୋଲ ବନ୍ଧନହାରୀ ହରି ଜୀ କି ଜୟ' ଜୟ ଜୟକାର ଧ୍ୱନିରେ ନଭୋମଣ୍ଡଳ ଗୁଞ୍ଜରିତ ହୋଇ ଉଠିଲା । ଦେବତାମାନେ ପୁଷ୍ପ ବୃଷ୍ଟି କଲେ, ଦୁନ୍ଦୁଭି ବଜେଇଲେ । ଅପ୍ସରା ନୃତ୍ୟ କରିବାକୁ ଲାଗିଲେ । ଗନ୍ଧର୍ବ ଗାନ କଲେ । ସର୍ବତ୍ର ଆନନ୍ଦ ଧ୍ୱନି ମୁଖରିତ ହୋଇଉଠିଲା । ଋଷି, ମୁନି, ସିଦ୍ଧ ତଥା ଚାରଣ ଆଦି ଆସି ଭଗବାନଙ୍କର ପ୍ରବଳ ପରାକ୍ରମ ଏବଂ ଭକ୍ତ-ବତ୍ସଳତା ଆଦି ଗୁଣଗାନ କରି ସ୍ତୁତି କଲେ ।

ରାଜା ପଚାରିଲେ, "ପ୍ରଭୁ ! ଗଜ ତ ଭଗବାନଙ୍କର ଭକ୍ତ ଥିଲା । ତା'ର ତ ଉଦ୍ଧାର ହେବା କଥା, ମାତ୍ର ମୁଁ ଜାଣିବାକୁ ଚାହୁଁଛି,ଯେ ଭଗବତ୍ ଭକ୍ତର ପାଦ ଧରିଥିଲା ତା'ର କ'ଣ ଦଶା ହେଲା ? କ'ଣ ଭକ୍ତର ପାଦ ଧରିଥିବା ନକ୍ର ମରି ନର୍କକୁ ଗଲା ?"

ଏହା ଶୁଣି ଶୁକଦେବ ହସି ଉଠିଲେ । କହିଲେ, "ରାଜନ୍, ଭଗବନ୍ତ ଭକ୍ତର ପାଦ ଧରିଥିବା ବ୍ୟକ୍ତିର କ'ଣ ଦୁର୍ଗତି କେବେହେଲେ ସମ୍ଭବ ହୋଇପାରେ ? ସେ ସେଇ ମୁହୂର୍ତ୍ତରେ ଦିବ୍ୟରୂପ ଧାରଣ କରି ସୁବର୍ଣ୍ଣ ସଦୃଶ ଝଟକୁଥିବା ବିମାନରେ ଚଢି ତୁରନ୍ତ ନିଷ୍ପାପ ହୋଇ ଗନ୍ଧର୍ବ ଲୋକକୁ ଚାଲିଗଲା ।"

ଏହାଶୁଣି ମହାରାଜ ପରୀକ୍ଷିତ ପଚାରିଲେ, "ପ୍ରଭୁ, ସେ ଗ୍ରାହ କିଏ ଥିଲା ? କେଉଁ କାରଣରୁ ତାକୁ ଗ୍ରାହଯୋନି ପ୍ରାପ୍ତ ହେଲା ? ସେ ନିଷ୍ପାପ ହୋଇ ଗନ୍ଧର୍ବ ଲୋକକୁ ଗଲା କାହିଁକି ? ମୁଁ ତା'ର ପୂର୍ବଜନ୍ମର ବୃତ୍ତାନ୍ତ ଶୁଣିବାକୁ ଚାହୁଁଛି ।"

ଏହା ଶୁଣି ଶ୍ରୀ ଶୁକଦେବ କହିଲେ, "ରାଜନ୍, ଏ ଗ୍ରାହ ପୂର୍ବଜନ୍ମରେ ଗନ୍ଧର୍ବ ମାନଙ୍କ ମଧ୍ୟରେ ଶ୍ରେଷ୍ଠ ହୂହୂ ଗନ୍ଧର୍ବ ଥିଲା । ହାହା ଏବଂ ହୂହୂ ଏ ଦୁହେଁ ଗାୟନରେ ସର୍ବଶ୍ରେଷ୍ଠ ବିବେଚିତ ହେଉଥିଲେ । ଦିନେ ହୂହୂ ଗଙ୍ଗାରେ ଆପଣାର ସ୍ତ୍ରୀମାନଙ୍କ ସହିତ ଜଳବିହାର କରୁଥିଲା । ମଦମତ୍ତ ହୋଇ ସେ ନିଜକୁ ପାଶୋରି ଦେଇଥିଲା । ନାନାପ୍ରକାର ମୁଖଭଙ୍ଗୀ କରି ସେ ସ୍ତ୍ରୀମାନଙ୍କୁ ହସାଉଥିଲା । ନାନାପ୍ରକାର ଜଳ ଫିଙ୍ଗି ସେ ସେମାନଙ୍କୁ ପ୍ରସନ୍ନ କରୁଥିଲା । ତା'ର ଗନ୍ଧର୍ବିଣୀମାନେ ମଧ୍ୟ ମଦୋନ୍ମତ୍ତ ହୋଇ ତାହା ସହିତ ହସ କୌତୁକ କରୁଥିଲେ । ତାହା ସହିତ ନାନାପ୍ରକାର କାମକ୍ରୀଡ଼ା କରୁଥିଲେ । ସମୀପରେ ଜଣେ ମହର୍ଷି ସନ୍ଧ୍ୟା ବନ୍ଦନା କରୁଥିଲେ । ସେହି କାମୀ ମନରେ କୌତୁହଳ ଜାତ ହେଲା ; ସେ ମନେ ମନେ ଭାବିଲା; ଜଳ ମଧ୍ୟରେ ଯାଇ ମୁନିଙ୍କର ପାଦ ଦୁଇଟିକୁ ଧରିନେବ । ଏହା ଫଳରେ ସେ ଦାଢ଼ୀ ଜଟା ହଲେଇ ଚମକି ପଡ଼ିବେ । ତାଙ୍କୁ ଚମକା

Digitized by srujanika@gmail.com

ପଡ଼ିବା ଦେଖି ମୋର ପ୍ରିୟତମାମାନେ ଖିଲ୍‌ଖିଲ୍ ହସି ଉଠିବେ, ଆନନ୍ଦିତ ହେବେ, ବିନୋଦିତା ହେବେ । ଏହାଭାବି ସେ ଜଳ ଭିତରେ ବୁଡ଼ି ବୁଡ଼ି ଗଲା ଏବଂ ମୁନିଙ୍କର ଗୋଡ଼ ଟାଣିକରି ଧରିନେଲା । ମୁନି ସୂର୍ଯ୍ୟ-ଉପାସନା କରୁଥିଲେ । ଆକସ୍ମିକ ଭାବରେ ଜଳ ମଧ୍ୟରେ କେହି ଗୋଡ଼ ଟାଣି ଧରିବା ଫଳରେ ଚମକି ପଡ଼ିଲେ । ସେ ଚମକି ପଡ଼ିବା ମାତ୍ରକେ ଗନ୍ଧର୍ବ ଜଳରୁ ବାହାରି ଆସିଲା । ସେ ସ୍ୱୟଂ ବିନୋଦରେ ହସି ଉଠିଲା ଏବଂ ଗନ୍ଧର୍ବିଣୀମାନେ ମଧ୍ୟ ହସିଉଠିଲେ ।

ଏହି ଅବଜ୍ଞା ହେତୁ ମୁନିଙ୍କର କ୍ରୋଧ ଜାତ ହେଲା । ସେ ଅଭିଶାପ ଦେଲେ, "ତୁ କୁମ୍ଭୀର ଭଳି ଆସି ମୋର ଗୋଡ଼ ଟାଣିଛୁ । ତେଣୁ କୁମ୍ଭୀର ହୋଇଯାଆ ।"

ଏଥର ସବୁ ହସ ଉଭେଇ ଗଲା । ସବୁ ରଙ୍ଗବ୍ୟଙ୍ଗ ଭୟରେ ପରିଣତ ହୋଇଗଲା । ଗନ୍ଧର୍ବ ତା'ର ଭୁଲ ବୁଝିପାରିଲା । କିନ୍ତୁ ଆଉ କରିବ କ'ଣ ? ଧନୁରୁ ତୀର ତ ଛୁଟି ସାରିଛି । ସେ ଲକ୍ଷ୍ୟଭେଦ କରିବ ହିଁ କରିବ । ଗନ୍ଧର୍ବର ମୁହଁ କଳା ପଡ଼ିଗଲା । ସେ ହାତ ଯୋଡ଼ି ପ୍ରାର୍ଥନା କଲା, "ପ୍ରଭୁ ! ମୁଁ ଏହା ବିନୋଦରେ କରିଛି, ମୋତେ ଆପଣ କ୍ଷମା ଦିଅନ୍ତୁ ।"

ମୁନି ଶୁଖିଲା ହସ ହସି କହିଲେ, "ବିନୋଦ ଆପଣାର ସମକକ୍ଷ ବ୍ୟକ୍ତି ସାଙ୍ଗରେ କରାଯାଏ । ଯେ ସନ୍ଧ୍ୟାମଗ୍ନ, ଜ୍ୟେଷ୍ଠ, ତାଙ୍କ ସହିତ ଏଭଳି ଅସମୟ ବିନୋଦ କଦାପି ଗ୍ରହଣୀୟ ନୁହେଁ । ମୁଁ କେବେ ମିଛ କହିନାହିଁ । ତେଣୁ ମୋର କଥା କଦାପି ଅସତ୍ୟ ହେବନାହିଁ ।"

ଦୀନତାପୂର୍ଣ୍ଣ କଣ୍ଠରେ ଗନ୍ଧର୍ବ କହିଲା, "ମୋର ଉଦ୍ଧାରର କୌଣସି ଉପାୟ କହନ୍ତୁ ।"

ସେତେବେଳକୁ ମୁନିଙ୍କର କ୍ରୋଧ ଶାନ୍ତ ହୋଇ ସାରିଥିଲା । ବ୍ରାହ୍ମଣଙ୍କର ବଚନ ବଜ୍ର ଭଳି ହୋଇଥାଏ । ହୃଦୟ ସର୍ବଦା ନବନୀତ କୋମଳ । କ୍ରୋଧ ସେମାନଙ୍କର ପାଣିର ଗାର ଭଳି । ଆସିଲା, ଆଉ ଚାଲିଗଲା । ମୁନି ତା'ର ପ୍ରାର୍ଥନାରେ ପ୍ରସନ୍ନ ହେଲେ ଏବଂ କହିଲେ, "ତୁମକୁ ଗ୍ରାହ ହେବାକୁ ହିଁ ପଡ଼ିବ । ମାତ୍ର ଶେଷରେ ଯେତେବେଳେ ତୁମେ କୌଣସି ଗଜର ପାଦ ଧରି ନେବ ସେତେବେଳେ ଭଗବାନ ତୁମକୁ ଚତୁର୍ଭୁଜ ରୂପରେ ଦର୍ଶନ ଦେବେ । ସେତେବେଳେ ତୁମେ ତାଙ୍କର ଦର୍ଶନ ଲାଭ କରି ନିଷ୍ପାପ ହେବ । ତମୋଗୁଣୀ ଯୋନି ତ୍ୟାଗ କରି ପୁନଶ୍ଚ ଆପଣାର ଦିବ୍ୟ ରୂପ ପ୍ରାପ୍ତ ହେବ ।"

ଶ୍ରୀ ଶୁକଦେବ କହୁଛନ୍ତି, "ରାଜନ, ହେହେ ହୂହୂ ଗନ୍ଧର୍ବ ଭଗବାନଙ୍କର ଚକ୍ରର ସ୍ପର୍ଶରେ, ପାପମୁକ୍ତ ହୋଇ ଆଶ୍ଚର୍ଯ୍ୟମୟ ଦିବ୍ୟ ଶରୀରବନ୍ତ ଗନ୍ଧର୍ବ ହେଲା ଓ ଉତ୍ତମ ଶ୍ଳୋକ,

Digitized by srujanika@gmail.com

କୀର୍ତ୍ତିଧାମ, ଅବିନାଶୀ, କୀର୍ତ୍ତିମାୟ, ଜଗଦୀଶଙ୍କର ପାଦପଦ୍ମରେ ପ୍ରଣାମ କରି ତାଙ୍କର ସ୍ତୁତିଗାନ କଲା । ଭଗବାନ ତା'ର ଗାୟନରେ ଅତ୍ୟନ୍ତ ପ୍ରସନ୍ନ ହୋଇ ଅଭୀଷ୍ଟ ବର ପ୍ରଦାନ କଲେ । ସେ ମଧ୍ୟ ପ୍ରଭୁ ପ୍ରସାଦ ଏବଂ ଦିବ୍ୟରୂପ ପାଇ ନିଷ୍ପାପ ହୋଇ ନିଜ ଧାମକୁ ଗଲା । ରାଜନ୍, ମୁଁ ଗ୍ରାହର ପୂର୍ବ ଜନ୍ମ କଥା କହିଲି, ବର୍ତ୍ତମାନ ଆପଣ ଆଉ କ'ଣ ଶୁଣିବାକୁ ଚାହାନ୍ତି ?

## ଛପ୍ପୟ

ଗ୍ରାହ ଯୋନି ତଜି ଭୟୋ ତୁରତ ଗନ୍ଧର୍ବ ମନୋହର ।
ପୂର୍ବ ଜନ୍ମ ମହଁକରତ ରହ୍ୟୋ କ୍ରୀଡ଼ା ଜଲ ଅନ୍ଦର ॥
ଦେବଲ ମୁନି କୋ ଚରନ ହଁସୀ ମହଁ ହୂହୂ ପକରେ୍ୟା ।
ରୌଁ କେ ମୁନି ହ୍ୱୈ ଭୀତ ତବହିଁ ହଁସି ବାହର ନିକରେ୍ୟା ॥
ସମୁଝି ଅବଜ୍ଞା ଶାପ ତବ, ଗ୍ରାହ ବନନ କୋ ଦୈ ଦୟୋ ।
ସୁରଗାୟକ ଗନ୍ଧର୍ବ ସୋ ନକ୍ର ଶାପ ବଶ ହ୍ୱୈ ଗୟୋ ॥



Digitized by srujanika@gmail.com

# ଗଜେନ୍ଦ୍ରର ପୂର୍ବ-ଜନ୍ମ ବୃତ୍ତାନ୍ତ

ଗଜେନ୍ଦ୍ରୋ ଭଗବତ୍‌ସ୍ପର୍ଶାଦ୍ ବିମୁକ୍ତୋଽଜ୍ଞାନ ବନ୍ଧନାତ୍ ।
ପ୍ରାପ୍ତୋ ଭଗବତୋ ରୂପଂ ପୀତବାସଶ୍ଚତୁର୍ଭୁଜଃ ॥
ସ ବୈ ପୂର୍ବମଭୂତ୍ ରାଜା ପାଣ୍ଡ୍ୟୋ ଦ୍ରବିଡ଼ସତ୍ତମଃ ।
ଇନ୍ଦ୍ରଦ୍ୟୁମ୍ନ ଇତି ଖ୍ୟାତୋ ବିଷ୍ଣୁବ୍ରତପରାୟଣଃ ॥
(ଶ୍ରୀ ଭା. ୮ । ୪ । ୬ । ୭, )

## ଛପ୍‌ପୟ

ପୂର୍ବ ଜନ୍ମ ଗଜ ଚରିତ ସୁନୌ ଶ୍ରଦ୍ଧାତେଁ ଅବ ତୁମ ।
ଇନ୍ଦ୍ରଦ୍ୟୁମ୍ନ ଦ୍ରବିଡ଼େଶ ହତୋ ରାଜା ସୁରପତି ସମ ॥
ଧ୍ୟାନ ମଗ୍ନ ଇକ ଦିବସ ରହ୍ୟୋ ମଳୟାଚଲ ମାହିଁ ।
ଶିଷ୍ୟନି ସହିତ ଅଗସ୍ତ୍ୟ ଗୟେ ନୃପ ନିରଖେ ନାହିଁ ॥
କରୈ ତପସ୍ୟା ମୌନ ହ୍ୱୈ, ବାଲ ବଢ଼େ ବ୍ରତ ମହଁ ନିରତ ।
ଅତିଥି ଧର୍ମ ତେଁ ଚ୍ୟୁତ ନିରଖି, ମୁନି ଅଗସ୍ତ୍ୟ କୋପେ ତୁରତ ॥

ଶାସ୍ତ୍ରକାରମାନେ ଅତିଥିଧର୍ମର ଅନେକ ପ୍ରଶଂସା କରିଛନ୍ତି । ଅତିଥିଙ୍କୁ ସାଧାରଣ ମନୁଷ୍ୟ ଜ୍ଞାନ କରିବା ପାପ, ଅତିଥି ଭଗବାନଙ୍କର ସ୍ୱରୂପ ଅଟନ୍ତି । ଭଗବତ୍ ବୁଦ୍ଧିରେ ତାଙ୍କର ପୂଜା କରିବା ଉଚିତ । ଯେଉଁମାନେ ଗର୍ବ କରି ଆପଣାର ତପ, ତେଜ, ପ୍ରଭାବ, ବଡ଼ପଣ ଆଦି କାରଣରୁ ଅତିଥିଙ୍କର ଅପମାନ କରନ୍ତି, ସେମାନେ ଅଧୋଗତି ପ୍ରାପ୍ତ ହୋଇଥାନ୍ତି । ଅତିଥି ଯେତେବେଳେ ବି ଆସନ୍ତୁ ନା କାହିଁକି ତାଙ୍କର ସତ୍କାର କରିବା ଉଚିତ । ଜପ, ତପ, ପୂଜା, ପାଠ, ସବୁ ଅତିଥିଙ୍କ ନିମନ୍ତେ କରଣୀୟ । ଯଦି ସେ ଆମର ସେବାଦ୍ୱାରା ସନ୍ତୁଷ୍ଟ ହେବେ, ତାହାହେଲେ ଆମର ସମସ୍ତ ସାଧନା ସାର୍ଥକ ହୋଇ-

Digitized by srujanika@gmail.com

ଯିବ ଏବଂ ଯଦି ଆମର କୌଣସି ବ୍ୟବହାର ଫଳରେ ଅସନ୍ତୁଷ୍ଟ ହୁଅନ୍ତି; ତା'ହେଲେ ବୁଝିନିଅ ଯେ ଆମର ସବୁକିଛି ବ୍ୟର୍ଥ ହେଲା ।

ଶ୍ରୀ ଶୁକଦେବ ରାଜା ପରୀକ୍ଷିତଙ୍କୁ କହୁଛନ୍ତି, "ରାଜନ୍, ମୁଁ ତୁମକୁ ଗ୍ରାହର ପୂର୍ବ-ଜନ୍ମର ବୃତ୍ତାନ୍ତ କହି ସାରିଛି । କେବଳ ମୁନିଙ୍କର ଅଭିଶାପ ଫଳରେ ହୁ ହୁ ଗନ୍ଧର୍ବ ଗ୍ରାହ ହୋଇଥିଲା । ଭଗବାନଙ୍କର ସ୍ପର୍ଶଲାଭକରି ସେ ଅଧମ ଯୋନି ତ୍ୟାଗ କରି ଦିବ୍ୟରୂପ ପ୍ରାପ୍ତ ହେଲା ।

ଏହାଶୁଣି ରାଜା କହିଲେ, "ଗ୍ରାହର ପୂର୍ବ ଚରିତ ତ ଆପଣ କହିଛନ୍ତି, ମାତ୍ର ଏହା କହିଲେ ନାହିଁ ଯେ ସେ ଭଗବତ୍‌ପ୍ରାଣ ଗଜ ପୂର୍ବଜନ୍ମରେ କିଏ ଥିଲା । ସେ ମଧ୍ୟ କୌଣସି ସୁକୃତ-ସମ୍ପନ୍ନ ମହାତ୍ମା ହୋଇଥିବ, ନହେଲେ ମହା ତମୋମୟ ଗଜଯୋନିରେ ଏଭଳି ଅନ୍ୟ ଭାବନା କେଉଁପରି ସମ୍ଭବ ?"

ଏହାଶୁଣି ଶ୍ରୀ ଶୁକଦେବ କହିଲେ, "ରାଜନ୍ ! ମୁଁ ଗଜେନ୍ଦ୍ରର ପୂର୍ବଜନ୍ମର ବୃତ୍ତାନ୍ତ ଆପଣଙ୍କୁ ଶୁଣେଇବି, ଆପଣ ତାହା ସାବଧାନ ହୋଇ ଶ୍ରବଣ କରନ୍ତୁ । ଏହା ପରମ ପୁଣ୍ୟପ୍ରଦ ଯଶବର୍ଦ୍ଧନକାରୀ ଭଗବତ୍-ଭକ୍ତି-ବର୍ଦ୍ଧକ ଆଖ୍ୟାନ ଅଟେ । ମହାରାଜ, ପୂର୍ବକାଳରେ ଦକ୍ଷିଣ ଦେଶର ପାଣ୍ଡ୍ୟ ନାମକ ରାଜ୍ୟରେ ଜଣେ ଅତ୍ୟନ୍ତ ଯଶସ୍ୱୀ ରାଜାଥିଲେ । ଦ୍ରାବିଡ଼ ଦେଶର ସେହି ନରପତି ଅତ୍ୟନ୍ତ ଯଶସ୍ୱୀ, ତେଜସ୍ୱୀ, ତପସ୍ୱୀ ଏବଂ ବିଷ୍ଣୁଭକ୍ତ ଥିଲେ । ତାଙ୍କର ନାମ ଥିଲା ଇନ୍ଦ୍ରଦ୍ୟୁମ୍ନ । ସେ ଅନେକ କାଳ ପର୍ଯ୍ୟନ୍ତ ଆପଣାର ପ୍ରଜାମାନଙ୍କୁ ପୁତ୍ରବତ୍ ପାଳନ କରିଥିଲେ । ସେ ଯେତେବେଳେ ଦେଖିଲେ ଯେ ଆୟୁଃ ଶେଷ ପ୍ରାୟ ସେତେବେଳେ ପୁତ୍ର ହସ୍ତରେ ରାଜ୍ୟଭାର ଅର୍ପଣ କରି ସେ ମଳୟାଚଳର ପୁଣ୍ୟ ପ୍ରଦେଶରେ ତପସ୍ୟା ନିମନ୍ତେ ଉପନୀତ ହେଲେ । ଯେଉଁଠାରେ ଭଗବାନଙ୍କର ନିତ୍ୟନିବାସ, ଯାହା ଦକ୍ଷିଣଦେଶରେ ପରମ ପୁଣ୍ୟପ୍ରଦ ତୀର୍ଥ ବୋଲି ଧରାଯାଏ, ସେହି ପର୍ବତରେ ପତ୍ନୀଙ୍କ ପୃଥ୍ୱୀପତି ବାନପ୍ରସ୍ଥାଶ୍ରମ ଅନୁମୋଦିତ ତପସ୍ୟା କରିବାକୁ ଲାଗିଲେ । ମଳୟା-ଚଳର ମନୋହର ପ୍ରଦେଶରେ ଯେଉଁଠାରେ ସୁନ୍ଦର ସୁସ୍ୱାଦୁ ଝରଣାମାନ ଝରୁଥିଲେ, ଯେଉଁଠାରେ ପକ୍ଷୀ ମଧ୍ୟ ମଧୁର, ସେଠାରେ ରହି ସେ ଘୋର ତପସ୍ୟା କରିବାକୁ ଲାଗିଲେ । ସେ ଗ୍ରାମ୍ୟ ଆହାରାଦି ପରିତ୍ୟାଗ କରିଥିଲେ । କନ୍ଦମୂଳ ଫଳାଦିରେ ଜୀବନ ନିର୍ବାହ କରୁଥିଲେ । କ୍ଷୌର ହେଉ ନଥିବା ହେତୁ ତାଙ୍କର କେଶ ଏବଂ ଜଟା ଅତ୍ୟନ୍ତ ବଢ଼ିଯାଇଥିଲା । ସେ ମୌନୀ ହୋଇ ନିରନ୍ତର ଜପ କରୁଥିଲେ ।

ଦିନେ ମହାରାଜା ପ୍ରାତଃକାଳୀନ ନିତ୍ୟକର୍ମରୁ ନିବୃତ୍ତ ହୋଇ ଏକାନ୍ତରେ ବସି ବାଣୀ-ସଂଯମ କରି ସର୍ବାନ୍ତର୍ଯ୍ୟାମୀ ଶ୍ରୀହରିଙ୍କର ଆରାଧନା କରୁଥିଲେ । ସେ ସମୟରେ ଦୈବାତ୍ କୁଳକୁଳ ସମୁଦ୍ର ଆଚମନକାରୀ ମହାତପସ୍ୱୀ ଭଗବାନ ଅଗସ୍ତ୍ୟ ମୁନି ଆପଣାର

Digitized by srujanika@gmail.com

ଶିଷ୍ୟମାନଙ୍କ ସହିତ ସେଠାରେ ପଦାର୍ପଣକଲେ । ରାଜା ଆଗମନ କରିଥିବା ମୁନିଙ୍କୁ ଦେଖି ମଧ୍ୟ ଦେଖିଲେ ନାହିଁ । ମହାରାଜଙ୍କୁ ଏହା ବିଦିତ ହେଲା ଯେ କେତେଜଣ ଋଷି ପଦାର୍ପଣ କରିଛନ୍ତି, ମାତ୍ର ସେ ଏହା ଭାବିଲେ ଯେ ମୁଁ ତ ଭଗବାନଙ୍କର ଆରାଧନା କରୁଛି, ଏପରି ସମୟରେ ମୋର ଉଠିବା ଉଚିତ ହେବ ନାହିଁ । ଏହାଭାବି ସେ ନୀରବରେ ବସି ରହିଲେ । ମନେ ହେଉଛି, ମୁନି ଶିଷ୍ୟାଧିକ୍ୟ ହେତୁ ଥକି ଯାଇଥିଲେ ଏବଂ ଭାବିଥିଲେ ଯେ ରାଜା ସତ୍କାର କରିବେ । ଫଳାମୂଳାଦି ଅର୍ପଣ କରି ସମ୍ମାନ ପ୍ରଦର୍ଶନ କରିବେ । ସେ ସବୁ ତ ଦୂରର କଥା, ରାଜା ମଧୁର ବାଣୀରେ ସୁଦ୍ଧା ସତ୍କାର କଲେ ନାହିଁ । ଏହା ଫଳରେ ମୁନି ଅତ୍ୟନ୍ତ କ୍ରୋଧିତ ହେଲେ । ସେ କ୍ରୋଧରେ ଅଭିଶାପ ଦେଲେ, "ଆରେ ମୂଢ଼, ମୋର ଆଗମନ କାଳରେ ତୁ ଯେଉଁଭଳି ହସ୍ତୀବତ୍ ବସି ରହିଛୁ, ସେଭଳି ହସ୍ତୀ ଯୋନି ପ୍ରାପ୍ତ ହେବୁ ।" ଏହାକହି ଅଗସ୍ତ୍ୟ ମୁନି ସେଠାରେ କ୍ଷଣେମାତ୍ର ରହିଲେ ନାହିଁ । ଆପଣାର ସାଥୀମାନଙ୍କ ସହିତ ସେ ସେସ୍ଥାନରୁ ଅନ୍ୟ ସ୍ଥାନକୁ ଚାଲିଗଲେ ।

ରାଜା ମୁନିଙ୍କର ଅଭିଶାପ ବଚନ ଶୁଣିଲେ, କ୍ରୋଧରେ ଚାଲି ଯାଉଥିବାର ଦେଖିଲେ, କିନ୍ତୁ ରାଜା ନା ତାଙ୍କୁ ଅଟକେଇ ନେଲେ, ନା ଶାପ ବିମୋଚନ ନିମନ୍ତେ ଅନୁନୟ ବିନୟ କଲେ । ରାଜା ଭାବିଲେ, "ଦେଖ, ଏ ଲୋକୋକ୍ତି ସତ୍ୟ ଅଟେ ଯେ 'ହବନ କଲେ ହାତ ଜଳିଥାଏ' । ମୁଁ ଘରଦ୍ୱାର, କୁଟୁମ୍ବ, ପରିବାର, ରାଜକାର୍ଯ୍ୟ ପରିତ୍ୟାଗ କରି ଏହି ବଣକୁ କେବଳ ଆରାଧନା ନିମନ୍ତେ ଆସିଥିଲି ଏବଂ ଏଠାରେ ମଧ୍ୟ ମୋ ମସ୍ତକରେ ଅଭିଶାପର ବଜ୍ରପାତ ହେଲା । ସତ କଥା, ପ୍ରାରବ୍ଧକୁ ଟାଳି ଦେବାର ସାମର୍ଥ୍ୟ କାହାରି ହେଲେ ନାହିଁ । ଏଥିରେ ମଧ୍ୟ ମଙ୍ଗଳମୟ ଭଗବାନଙ୍କର କୌଣସି ଶୁଭ ବିଧାନ ନିଶ୍ଚୟ ଥିବ ।"

ଏହାଶୁଣି ଶୌନକ କହିଲେ, "ହେ ସୂତ, ଆପଣ ଏହା ଏକ ଅଦ୍ଭୁତ ପ୍ରସଙ୍ଗ ଶୁଣାଇଲେ । ମହାଭାଗ ମହାରାଜା ଇନ୍ଦ୍ରଦ୍ୟୁମ୍ନଙ୍କର କଣ ବା ଅପରାଧ, ଭଗବାନଙ୍କର ଆରାଧନା କରୁଥିଲେ । ଏହି କାରଣରୁ ମୁନିବର କ୍ରୋଧକରି ଅଭିଶାପ ଦେଲେ ।"

ଏହାଶୁଣି ସୂତ କହିଲେ, "ଭଗବାନ, ଆପଣ ସବୁ ଜାଣନ୍ତି । କିଏ କାହାକୁ ଦୁଃଖ ଦେଇ ପାରିବ ? ଅଭିଶାପ ଓ ଅନୁଗ୍ରହର ସାମର୍ଥ୍ୟ କା'ର ଅଛି ? ପ୍ରାରବ୍ଧର ଯେଉଁପରି ବିଧାନ ଥାଏ ସେଭଳି କାର୍ଯ୍ୟ କାରଣ ଆସି ଉପସ୍ଥିତ ହୁଏ । ରାଜାଙ୍କର ସେଭଳି କିଛି ଅଦୃଷ୍ଟ ରହିଥିଲା । ଅଗସ୍ତ୍ୟମୁନି ତ ଏକ ନିମିତ୍ତମାତ୍ର ହୋଇଥିଲେ । ରାଜାଙ୍କୁ ଯେତେବେଳେ ମୁନିଙ୍କର ଆଗମନ ବିଷୟ ଅବଗତ ହେଲା, ସେତେବେଳେ ନିୟମାନୁସାରେ ଭଜନରୁ ଉଠି ସେ ମୁନିଙ୍କର ସତ୍କାର କରିବା ଉଚିତ ହୋଇଥାନ୍ତା । ଭୁଲକ୍ରମେ ହେଉ ପଛକେ ତାଙ୍କଦ୍ୱାରା ଏକ ଗୁରୁତର ଅପରାଧ ହୋଇଗଲା । ଯେଉଁଭଳି ଭବିତବ୍ୟ ଥାଏ ସେଭଳି ବିଧାନ ହୋଇଥାଏ ।

Digitized by srujanika@gmail.com

ଏହା ଶୁଣି ଶୌନକ ପଚାରିଲେ, "ତା'ହେଲେ ହେ ସୂତ ! ଏତେ ଦିନର ଜପ ତପ, ପୂଜାପାଠ, ଆରାଧନା ଉପାସନା, ସବୁ ବ୍ୟର୍ଥ ହୋଇଗଲା । ହାତୀ ଯୋନିରେ କଣ ସାଧନ ଥାଇପାରେ ?"

ଉତ୍ତରରେ ସୂତ କହିଲେ, "ନା ମହାଶୟ, ଶୁଭକାର୍ଯ୍ୟ କଦାପି ବ୍ୟର୍ଥ ହୁଏ ନାହିଁ । ଭଗବାନଙ୍କର ଉପାସନା ଅମୋଘ । ଭଗବାନଙ୍କ ପ୍ରାପ୍ତି ସହଜ ନୁହେଁ । ଅନେକ ଜନ୍ମର ଘୋର ତପସ୍ୟା ଅନନ୍ତର ଭଗବତ୍ ପ୍ରାପ୍ତି ହୋଇଥାଏ । କୋଟି ଜନ୍ମର ପୁଣ୍ୟବଳରେ ପୁରୁଷର ପ୍ରଭୁପାଦପଦ୍ମରେ ଭକ୍ତି ଆସେ । ମହାରାଜ ଇନ୍ଦ୍ରଦ୍ୟୁମ୍ନ ତ ଆପଣାର ଭଗବଦ୍ଭକ୍ତିର କାରଣରୁ ସେହି ଜନ୍ମରେ ହିଁ ପ୍ରଭୁପ୍ରାପ୍ତ ହୋଇଥାନ୍ତେ । ମାତ୍ର କୌଣସି ଜନ୍ମାନ୍ତରର ଦୁଷ୍କୃତ ଉଦୟ ହେଲା, ତେଣୁ ତାଙ୍କୁ କିଛି କାଳ ନିମନ୍ତେ ତମୋମୟୀ ଗଜଯୋନିରେ ଅତିବାହିତ କରିବାକୁ ହୋଇଥିଲା । ପଶୁଯୋନି ପ୍ରାପ୍ତ ହୋଇ ମଧ୍ୟ ତାଙ୍କର ଜ୍ଞାନ ଅକ୍ଷୁଣ୍ଣ ରହିଥିଲା ! ତେଣୁ ସିନା ସେ ପଶୁଯୋନିରେ ଥାଇ ମଧ୍ୟ ଦିବ୍ୟ ସ୍ତୁତି କଲେ । ଏହା ତାଙ୍କର ଆରାଧନାର ଫଳ ଯେ ସ୍ମରଣ କରିବା ମାତ୍ରକେ ସ୍ୱୟଂ ସାକ୍ଷାତ୍ ଶ୍ରୀହରି ଚତୁର୍ଭୁଜ ରୂପରେ ତାଙ୍କ ସମ୍ମୁଖରେ ଉପସ୍ଥିତ ହେଲେ ଏବଂ ତାଙ୍କୁ ଘୋର ସଙ୍କଟରୁ ଉଦ୍ଧାର କଲେ । ଭଗବାନଙ୍କର ତ୍ରୈଲୋକ୍ୟ ବନ୍ଦିତ ମନୋହର ମୁଖାରବିନ୍ଦ ଦେଖି ଦେଖି ଏବଂ ତାଙ୍କର ସୁମଧୁର ନାମକୀର୍ତ୍ତନ କରିକରି ସେ ଗଜଶରୀର ତ୍ୟାଗ କଲେ ।"

ଗଜ-ଶରୀର ତ୍ୟାଗ କଲା ମାତ୍ରକେ ତାଙ୍କର ରୂପ ଚତୁର୍ଭୁଜ ହୋଇଗଲା । ଚାରି ହାତରେ ଶଙ୍ଖ ଚକ୍ର ଗଦା ପଦ୍ମ ଶୋଭମାନ ହେଲା । ପୀତାମ୍ବର ଧାରଣକରି ସେ ଭଗବାନଙ୍କର ନିତ୍ୟ ପାର୍ଷଦ ହେଲେ । ତତ୍‌କ୍ଷଣାତ୍ ସେ ଭଗବାନଙ୍କର ସାରୂପ୍ୟ ପ୍ରାପ୍ତ ହେଲେ । ମନୁଷ୍ୟ-ଯୋନିରେ ମଧ୍ୟ ଯାହା ଦୁର୍ଲ୍ଲଭ ଅଟେ ସେ ତାହା ପୂର୍ବଜନ୍ମର ଆରାଧନାର ପ୍ରଭାବରେ ପଶୁଯୋନିରେ ପ୍ରାପ୍ତ ହେଲେ ।

ଶ୍ରୀ ଶୁକଦେବ ରାଜା ପରୀକ୍ଷିତଙ୍କୁ କହୁଛନ୍ତି, "ରାଜନ୍, ମୁଁ ଆପଣଙ୍କୁ ଚତୁର୍ଥ ମନ୍ୱନ୍ତରାବତାର ଭଗବାନ ଶ୍ରୀହରିଙ୍କର ପରମ ପାବନ ଚରିତ୍ର ସମ୍ବନ୍ଧରେ କହିଲି । ଗଜ ଏବଂ ଗ୍ରାହ ଉଭୟଙ୍କର ଉଦ୍ଧାର କରି ବୈକୁଣ୍ଠ-ପତି ଭଗବାନ ଶ୍ରୀହରି ଗରୁଡ଼ାରୂଢ଼ ହୋଇ ଆପଣା ଧାମକୁ ବିଜେ ହେଲେ । ତାଙ୍କର ପଛେ ପଛେ ଗନ୍ଧର୍ବ ଗାଇଗାଇ ଗଲେ, ଋଷି ମୁନିମାନେ ଏବଂ ନିତ୍ୟ ପାର୍ଷଦଗଣ ତାଙ୍କର ସ୍ତୁତିପାଠ କରି କରି ଗଲେ ।

ମହାରାଜ, ଗଜେନ୍ଦ୍ର ମୋକ୍ଷଣ ନାମକ ଶ୍ରୀହରିଙ୍କର ଏ ଚରିତ୍ର ପରମ ପାବନ ଓ ଯଶବୃଦ୍ଧିକାରୀ । ଯେ ଏହା ଶ୍ରଦ୍ଧାରେ ଶୁଣିବେ ବା ଶୁଣେଇବେ, ତାଙ୍କର ସକଳ ମନୋରଥ ପୂର୍ଣ୍ଣ ହେବ ଏବଂ ତାଙ୍କର ପ୍ରଭୁ-ପାଦପଦ୍ମରେ ଅହେତୁକୀ ଭକ୍ତି ହେବ । ତେଣୁ ମଙ୍ଗଳକାମୀ ବ୍ୟକ୍ତି ମାନଙ୍କ ପକ୍ଷରେ ଏହା ନିତ୍ୟ ପଠନୀୟ ।

Digitized by srujanika@gmail.com

## ଛପ୍ପୟ

ବୋଲେ ମୁନିବର 'ଅଧମ' ! କରେ ତୁ ଅତିଥି ନିରାଦର ।
ହୈ କେ କ୍ଷତ୍ରିୟ ନହୀଁ କରୈ ବିପ୍ରନି କୋ ଆଦର ॥
ଗଜ ସମ ବୈଖ୍ୟୋ ରହ୍ୟୋ ହୋଇ ତୁ ଜଡ଼ ମତି ଗଜଈ ।
ଦୈ କେଁ ଦାରୁନ ଶାପ ଗୟୋ ତତ୍କ୍ଷଣ ମୁନି ତବ ଈ ॥
ହର୍ଷ ନ ବିସ୍ମୟ ନୃପତି କୁଁ, ସମୁଝି ଦୈବଗତି ରହି ଗୟୋ ।
ତେ ଈ ଦୂସର ଜନ୍ମ ମହଁ, ବାରଣେନ୍ଦ୍ର ନୃପତି ଭୟୋ ॥



Digitized by srujanika@gmail.com

# ଗଜ-ଗ୍ରାହ ଚରିତ ସମାପ୍ତି

ଏତନ୍ମହାରାଜ ତବେଶରିତୋ ମୟା
　　　　କୃଷ୍ଣାନୁଭାବୋ ଗଜରାଜମୋକ୍ଷଣମ୍ ।
ସ୍ୱର୍ଗ୍ୟ ଯଶସ୍ୟଂ କଳି କଲ୍ମଷାପହମ୍
　　　　ଦୁଃସ୍ୱପ୍ନନାଶଂ କୁରୁବର୍ଯ ଶୃଣ୍ୱତାମ୍ ॥
　　　　　　　　(ଶ୍ରୀ ଭା. ୮।୪।୧୪)

## ଛପ୍ପୟ

କରି ଗଜ କୋ ଉଦ୍ଧାର ଭୟେ ଆନନ୍ଦିତ ଶ୍ରୀହରି ।
ବୋଲେ କରୁନାସିନ୍ଧୁ ସବନ କୂଁ ସଂବୋଧିତ କରି ॥
ଜ୍ୟେ ମେରେ ହୈଁ ରୂପ କନ୍ଦରା ବନ ଗଜ ସରବର ॥
ବଧି ହରିହର କେ ଧାମ ବାଁସ ପର୍ବତ ଗିରି ଗହ୍ୱର ॥
ଶେଷ ଶାରଦା ସପ୍ତଋଷି, ସୂର୍ଯ୍ୟ ଚନ୍ଦ୍ର ଧ୍ରୁବ ଧର୍ମ ହୈଁ ।
ଗଙ୍ଗା ଯମୁନା ସୁରସତୀ, ଯଜ୍ଞ ଆଦି ଶୁଭ କର୍ମ ହୈଁ ॥

ଯେଉଁଠାରେ ଶ୍ରୀହରି ଅବତାର ଧାରଣ କରି କ୍ରୀଡ଼ା କରନ୍ତି, ସେ ସ୍ଥଳ ପବିତ୍ର ହୋଇଯାଏ । ସେଠାକାର ଧୂଳିକଣା ପର୍ଯ୍ୟନ୍ତ ପବିତ୍ର ହୋଇଯାଏ । ସେଠାର ବୃକ୍ଷ, ଗୁଳ୍ମଲତା, ସରୋବର, ପର୍ବତ, ବନ, ଗିରିଗହ୍ୱର ତଥା ସମସ୍ତ ସ୍ଥାନ ପୁଣ୍ୟପ୍ରଦ ହୋଇଯାଏ । ଯେଉଁମାନଙ୍କର ଭଗବାନଙ୍କର ସହିତ ସମ୍ପର୍କ ହୋଇଥାଏ, ସେମାନେ ପ୍ରାତଃସ୍ମରଣୀୟ ହୋଇଥାନ୍ତି । ଜୀବ ଭଗବାନଙ୍କର ସାକ୍ଷାତ୍କାର ବିନା ହିଁ ତ ଏଣେତେଣେ ଭ୍ରାନ୍ତ ହେଉଥାଏ । ତାକୁ ଭଗବତ୍ ଦର୍ଶନ ମିଳିବା ମାତ୍ରକେ ସେ କୃତ୍ୟକୃତ୍ୟ ହୋଇଯାଏ ।

Digitized by srujanika@gmail.com

ଶ୍ରୀ ଶୁକଦେବ କହୁଛନ୍ତି, "ରାଜନ୍, ଏଭଳି ଭାବରେ ଭଗବାନ ଗଜ ଏବଂ ଗ୍ରାହ ଉଭୟଙ୍କର ଉଦ୍ଧାର କଲେ ଏବଂ ସେମାନେ ଦୁହେଁ ଦିବ୍ୟଧାମ ପ୍ରାପ୍ତ ହୋଇ କୃତାର୍ଥ ହୋଇଗଲେ ।

ଏହା ଶୁଣି ଶୌନକ ପ୍ରଶ୍ନକଲେ, "ହେ ସୂତ, ମୁଁ ତ ଏପରି ଶୁଣିଛୁ ଯେ ଗଜ ଏବଂ ଗ୍ରାହ ଉଭୟଙ୍କୁ ଗରୁଡ଼ ଭକ୍ଷଣ କଲେ ଏବଂ ଏ ଦୁହେଁ ସହୋଦର ଭାଇ ଥିଲେ । ମାତ୍ର ଆପଣ କହିଲେ ଗ୍ରାହ ହୁହୁ ଗନ୍ଧର୍ବ ଥିଲା ଏବଂ ଗଜ ଦ୍ରାବିଡ଼ ଦେଶର ନରପତି ଇନ୍ଦ୍ରଦ୍ୟୁମ୍ନ ଥିଲା । ଏ ଉଭୟ କଥା ମଧ୍ୟରେ କେଉଁଟା ସତ୍ୟ ?"

ଏହା ଶୁଣି ଶ୍ରୀ ସୂତ ଉତ୍ତର ଦେଲେ, "ମହାରାଜ, ଉଭୟ କଥା ସତ୍ୟ । କୌଣସି ଏକ କଳ୍ପରେ ଗଜ ଓ ଗ୍ରାହ ଉଭୟଙ୍କୁ ଗରୁଡ଼ ଭକ୍ଷଣ କରି ନେଇଥିବେ, ମାତ୍ର ମୁଁ ତ ଚତୁର୍ଥ ମନ୍ୱନ୍ତରର କଥା କହୁଛି । ଏହି ମନ୍ୱନ୍ତରରେ ତ ଭଗବାନ ହରିଣୀନନ୍ଦନ ହରି ସେମାନଙ୍କର ଉଦ୍ଧାର କଲେ । ଗରୁଡ଼ ଗଜ କଚ୍ଛପଙ୍କୁ ଭକ୍ଷଣ କରିଥିଲେ । ସେ କାହାଣୀ ମଧ୍ୟ ଅତି ରୋଚକ । ସେଠାରେ ଲଢ଼ିବା ଲୋକ ଥିଲା କଚ୍ଛପ, ଗ୍ରାହ ନୁହେଁ ।"

ଏହାଶୁଣି ଶୌନକ କହିଲେ, "ହେ ସୂତ, ଆପଣ ସେ କଥା ମଧ୍ୟ କହନ୍ତୁ । ଗରୁଡ଼ ଏବଂ ଗରୁଡ଼ଧ୍ୱଜ ଉଭୟଙ୍କର ପ୍ରସଙ୍ଗ ସମାନ ମହତ୍ତ୍ୱପୂର୍ଣ୍ଣ ।"

ଏହା ଶୁଣି ଶ୍ରୀ ସୂତ ହସି ହସି କହିଲେ, "ହେ ମୁନିଗଣ, ଏକଥା ଅତି ବିସ୍ତୃତ । ମୁଁ ତାହା ସଂକ୍ଷେପରେ କହୁଛି । ଆପଣମାନେ ଏକାଗ୍ର ଚିତ୍ତରେ ଶ୍ରବଣ କରନ୍ତୁ ।"

ଗରୁଡ ଏବଂ ଅରୁଣଙ୍କର ମାତା ବିନତା ଏବଂ ସର୍ପମାତା କଦ୍ରୁ । ଏମାନେ ସହୋଦରା ଭଗିନୀ ଏବଂ କଶ୍ୟପଙ୍କର ପତ୍ନୀ ହୋଇଥିବା ହେତୁ ସପତ୍ନୀ ମଧ୍ୟ । ଦିନେ ଉଚ୍ଚୈଃଶ୍ରବାଙ୍କର ପୁଚ୍ଛ ନେଇ ଉଭୟଙ୍କ ମଧ୍ୟରେ ବିବାଦ ହେଲା । ବିନତା କହୁଥିଲେ ପୁଚ୍ଛ ଶୁଭ୍ର, ମାତ୍ର କଦ୍ରୁ କହୁଥିଲେ କୃଷ୍ଣ ବର୍ଣ୍ଣ । କଥା ଏତେ ଦୂର ବଢ଼ିଗଲା ଯେ ଯାହା କଥା ସତ ହେବ ଅପର ତାର ଜୀବନ ସାରା ଦାସୀ ହୋଇ ରହିବ । ବାସ୍ତବରେ ଉଚ୍ଚୈଃଶ୍ରବାଙ୍କର ପୁଚ୍ଛ ଶୁଭ୍ର ଥିଲା, ମାତ୍ର କଦ୍ରୁ ସେଇ ପୁଚ୍ଛରେ ଆପଣାର ନାଗପୁତ୍ର ମାନଙ୍କୁ ଗୁଡେଇ ଦେବା ଫଳରେ ତାହା କଳା ଦେଖାଗଲା । ଏଭଳି ଭାବରେ କପଟ କରି କଦ୍ରୁ ବିନତାକୁ ଦାସୀ କରିନେଲେ । ଯେତେବେଳେ ବିନତାଙ୍କର ପୁତ୍ରଭାବରେ ଗରୁଡ ଜନ୍ମହେଲେ ସେ ସବୁକଥା ଶୁଣିଲେ । ନାଗମାନଙ୍କୁ ପଚାରିଲେ 'ତୁମମାନଙ୍କର କେଉଁକାମ ଆମେ କରିଦେଲେ ତୁମେ ଆମକୁ ଦାସତ୍ୱମୁକ୍ତ କରିଦେଇ ପାରିବ ?"

ନାଗମାନେ କହିଲେ, "ଆପଣ ଆମମାନଙ୍କ ନିମନ୍ତେ ସ୍ୱର୍ଗରୁ ଅମୃତ ଆଣି ଦିଅନ୍ତୁ । ତା'ହେଲେ ଆମେ ଆପଙ୍କର ମାତା ଏବଂ ଆପଣଙ୍କୁ ଦାସତ୍ୱମୁକ୍ତ କରିଦେବୁ ।" ଗରୁଡ଼ଙ୍କ

Digitized by srujanika@gmail.com

ସମସ୍ତେ ତ କୌଣସି କଥା ଅସମ୍ଭବ ନୁହେଁ, ସେ ଅମୃତ ଆଣିବାକୁ ପ୍ରସ୍ଥାନ କଲେ । ଯିବା ସମୟରେ ସେ ମାତାଙ୍କୁ ପଚାରିଲେ, "ମା, ମୋତେ ଇନ୍ଦ୍ରଲୋକ ଯିବାକୁ ହେବ । ଭୋକ ଅନେକ ହେଉଛି । କଣ ଖାଇବି ?"

ମାତା କହିଲେ, "ବାବୁ, ଏ ପୃଥିବୀରେ ତ ତୋର ପେଟ ପୂରିବା ଅସମ୍ଭବ କଥା । ତୁ ଗୋଟିଏ କାର୍ଯ୍ୟ କର । ସମୁଦ୍ର ମଝିରେ ଅନେକ ନିଷାଦ ଅଛନ୍ତି । ସେମାନେ ଘୋର ହିଂସୁକ, କ୍ରୂର ଏବଂ ନିର୍ଦ୍ଦୟ । ତୁ ସେଇମାନଙ୍କୁ ଭକ୍ଷଣ କରିଯିବୁ । କିନ୍ତୁ କୌଣସି ବ୍ରାହ୍ମଣକୁ ଭୁଲରେ ସୁଦ୍ଧା ଖାଇଦେବୁ ନାହିଁ ।"

ଗରୁଡ ହଁ କଲେ । ମାତାଙ୍କୁ ପ୍ରଣାମ କରି ସର୍ବ ପ୍ରଥମେ ସେହି ଦ୍ୱୀପରେ ପହଞ୍ଚିଲେ । ସେଠାକାର ମ୍ଳେଚ୍ଛ ଅନାର୍ଯ୍ୟମାନେ ଦେଖିବାକୁ ସୁନ୍ଦର, ମାତ୍ର ସେମାନଙ୍କର ହୃଦୟ ଅତ୍ୟନ୍ତ କଳୁଷିତ ଓ ହିଂସା ତତ୍ପର ଥିଲା । ଗରୁଡ଼ ସେମାନଙ୍କୁ ଭକ୍ଷଣ କରିବା ଆରମ୍ଭ କରିଦେଲେ । ସର୍ବତ୍ର ହଇଚଇ ଆରମ୍ଭ ହୋଇଗଲା । ସେହି ହଇଚଇରେ ସେମାନଙ୍କର ପୁରୋହିତ ମଧ୍ୟ ଗିଳି ହୋଇଗଲେ । ମାତ୍ର ପରେ ଗରୁଡଙ୍କର କଣ୍ଠ ଜଳିବାକୁ ଲାଗିଲା । ସେତେବେଳେ ସେ ମାତାଙ୍କର କଥା ମନେ ପକାଇଲେ ଏବଂ ତାଙ୍କୁ ତତ୍‌କ୍ଷଣାତ୍ ଉଦ୍‌ଗାର କଲେ ଓ ପରେ ପରେ ତାଙ୍କ ନିଷାଦ ପତ୍ନୀକୁ ମଧ୍ୟ । ସେଭଳି ଭାବରେ ସେ ସହସ୍ରଙ୍କୁ ଭକ୍ଷଣ କଲେ, ମାତ୍ର ତାଙ୍କର ଜଳଖିଆ ପରି ବି ପେଟ ପୂରିଲା ନାହିଁ । ସେ ଅଧାପେଟରେ ପୁଣି ଉଡ଼ିବା ଆରମ୍ଭ କଲେ । ବାଟରେ ସୁମେରୁ ପର୍ବତରେ ସେ ପିତା କଶ୍ୟପଙ୍କୁ ଭେଟିଲେ । ପିତାଙ୍କ ଚରଣରେ ପ୍ରଣାମ କଲେ । ପୁତ୍ରକୁ ଦେଖି ମୁନି ଅତ୍ୟନ୍ତ ପ୍ରସନ୍ନ ହେଲେ । କହିଲେ, "ସବୁ କୁଶଳ ତ ! ମର୍ତ୍ତ୍ୟଲୋକରେ ତୁମର କୌଣସି କଷ୍ଟ ହେଉ ନାହିଁ ତ ? ଗରୁଡ଼ କହିଲେ, "ବାପା, ଆମର କୌଣସି କଷ୍ଟ ନାହିଁ । ମାତ୍ର 'କଷ୍ଟାତ୍ କଷ୍ଟତରା କ୍ଷୁଧା ।' ମର୍ତ୍ତ୍ୟଲୋକରେ ମୋର ପେଟ ପୂରୁନାହିଁ । ବର୍ତ୍ତମାନ ମଧ୍ୟ ମୋତେ କ୍ଷୁଧା ଅସ୍ଥିର କରୁଛି । ମୋର ଅନୁରୂପ କୌଣସି ଆହାର କହନ୍ତୁ ଯାହା ଖାଇ ମୁଁ କ୍ଷୁଧା ଶାନ୍ତ କରିପାରିବି ।"

ଏହା ଶୁଣି କଶ୍ୟପ କିଛି କାଳ ଧ୍ୟାନସ୍ଥ ହେଲେ ଏବଂ କହିଲେ, "ହଁ ତୋର ଯୋଗ୍ୟ ଏକ ଆହାର ଅଛି । ଏହାର ସମୀପରେ ଦେବତାମାନଙ୍କର ଏକ ସିଦ୍ଧ ସରୋବର ଅଛି । ସେଥିରେ ଏକ ବାରଣେନ୍ଦ୍ର ହାତୀ ଅଛି ଏବଂ ଏକ ଜଳ ଜନ୍ତୁ କଚ୍ଛପ ରହିଛି । ସେମାନେ ଦୁହେଁ ଅନବରତ ଲଢ଼ି ଥାଆନ୍ତି । ସେମାନଙ୍କର ଲଢ଼େଇ କରିବା ସହସ୍ର ବର୍ଷ ହେଲା । ତୁ ସେ ଦୁହିଁଙ୍କୁ ଖାଇ କ୍ଷୁଧା ଶାନ୍ତ କର ।"

ଏହା ଶୁଣି ଗରୁଡ଼ କହିଲେ, "ଗୋଟିଏ ମାତ୍ର ଗଜ ଓ ଗୋଟିଏ କଚ୍ଛପରେ ମୋର ପେଟ ପୂରିବ ? ସେମାନେ କେତେ ବଡ ଯେ ?"

Digitized by srujanika@gmail.com

କଶ୍ୟପ ବିସ୍ମିତ ହୋଇ କହିଲେ, "ସେମାନେ କେତେ ବଡ଼ କ'ଣ ପଗ୍ଭରୁଛୁ ? ହାତୀର ପୃଷ୍ଠ ତ ଚବଶ କୋଶ ଓ ଉଚ୍ଚତା ଅଠଗ୍ଭଳିଶ କୋଶ । କଚ୍ଛପ ବାର କୋଶ ଉଚ୍ଚ ଏବଂ ତା'ର ଘେର ନେବ ଗ୍ଭଳିଶ କୋଶ । କଚ୍ଛପ ଏକ ପ୍ରାୟ ଦ୍ୱୀପ ଏବଂ ଗଜ ଏକ ବିରାଟ ପର୍ବତ । ମୁଁ ଭାବୁଛି ଏ ଦୁହିଁଙ୍କୁ ଖାଇନେବା ପରେ ଅବଶ୍ୟ ତୋର ତୃପ୍ତି ଆସିଯିବ ।"

ପ୍ରସନ୍ନ ହୋଇ ଗରୁଡ଼ କହିଲେ, "ହଁ, ସେଥିରେ ମୋର ତୃପ୍ତି ଆସିଯିବ । ମୁଁ ଯାଉଛି ।" ଏହା କହି ସେ ତତ୍‌କ୍ଷଣାତ୍ ସରୋବର ସମୀପକୁ ଉଡ଼ିଗଲେ ।

ଏହା ଶୁଣି ଶୌନକ କହିଲେ; "ହେ ସୂତ, ଆପଣ ଥରେ ଥରେ ଏପରି ବିଚିତ୍ର କଥା କହନ୍ତି ଯେ ବୁଦ୍ଧି କାମ କରେ ନାହିଁ । କହନ୍ତୁ ଅଠଗ୍ଭଳିଶ କୋଶ ହାତୀ, ଗ୍ଭଳିଶ କୋଶ ଘେରର କଚ୍ଛପ ! ଏପରି ଜୀବ ତ ଅସମ୍ଭବ । ଯଦି ବି ହେଲେ, ଗରୁଡ଼ଙ୍କର ପେଟ କ'ଣ ପାତାଳଗହ୍ୱର ! ସେଥିରେ ପୁଣି ଏତେ ବଡ଼ ବଡ଼ ଜନ୍ତୁ ରହିଯିବେ ?"

ଏହାଶୁଣି ଶ୍ରୀ ସୂତ କହିଲେ, "ଭଗବନ୍, ସୀମିତ କ୍ଷୁଦ୍ର ବୁଦ୍ଧିବନ୍ତ ଅହଂକାରୀ, ଓ ଆପଣାକୁ ପଣ୍ଡିତ ବୋଲି ମନେ କରୁଥିବା ମନୁଷ୍ୟ ଏଭଳି କଥା କହିଲେ ଉଚିତ ମନେ ହେବ । ମାତ୍ର ଆପଣଙ୍କ ପରି ପ୍ରାଜ୍ଞ ଏପରି ଶଙ୍କା କିପରି କରୁଛନ୍ତି ? ପ୍ରଭୁଙ୍କ ଏ ସୃଷ୍ଟିରେ ବିଭିନ୍ନ ପ୍ରକାରର ଜୀବ ଅଛନ୍ତି । ଅନେକ ପ୍ରକାରର ସମୁଦ୍ର ଦ୍ୱୀପ ଏବଂ ବର୍ଷ ରହିଛି । ମନୁଷ୍ୟକୁ ତ ଜମ୍ବୁଦ୍ୱୀପର ନବଖଣ୍ଡ ମଧ୍ୟରୁ କେବଳମାତ୍ର ଭାରତବର୍ଷ ହିଁ ଦିଶୁଛି । ଏହାକୁ ହିଁ ଏ କ୍ଷୁଦ୍ରପ୍ରାଣୀ ସଂସାର ବୋଲି କହେ । ସପ୍ତସାଗର ମଧ୍ୟରୁ କେବଳମାତ୍ର ଲବଣ ସାଗର ହିଁ ଦିଶୁଛି । ଶେଷ ଛଅଗୋଟି ସମୁଦ୍ରକୁ ଦେଖିବା ତ ଦୂରର କଥା ଲୋକେ ଏହାର କଳ୍ପନା ସୁଦ୍ଧା କରିପାରନ୍ତି ନାହିଁ । ଜଳଜନ୍ତୁ ମାନଙ୍କ ମଧ୍ୟରେ ବର୍ତ୍ତମାନ ପର୍ଯ୍ୟନ୍ତ ତିମିଙ୍ଗଳ ନାମକ ମାଛକୁ ହିଁ ସବୁଠାରୁ ବଡ଼ ବୋଲି ମନେ କରିଥାନ୍ତି । ସେଭଳି ମାଛଟିଏ ମରିଗଲେ ଦ୍ୱୀପ ଭଳି ମନେହୁଏ । ଯଦି ଏହି ଛୋଟିଆ ଖଣ୍ଡରେ ଏଭଳି ଜନ୍ତୁ ଥାଇପାରନ୍ତି ତା'ହେଲେ ଅନ୍ୟ ଯେଉଁମାନେ କ୍ରମଶଃ ଦଶ କୋଡ଼ିଏ ଗୁଣ ପରିମାଣରେ ଅଧିକ, ସେଠାରେ କେଜାଣି କେତେ ବଡ଼ବଡ଼ ଜନ୍ତୁ ଥିବେ । ଭଗବନ୍, ମନୁଷ୍ୟ ମାତ୍ର ଆପଣାର ବୁଦ୍ଧିରେ ଭାବୁଛି । ପର୍ବତର ଅଧିବାସୀ ପର୍ବତ ଉପରେ ପଥର ଆଡ଼େଇ ଆଡେଇ ଦୁଇଦୁଇ, ଗ୍ଭରିଗ୍ଭରି ହାତଆ କ୍ଷେତ ତିଆରି କରି ସେଥିରେ ଗ୍ଭଷ କରିଥାନ୍ତି । ସେମାନେ ଏ କଥାର କଳ୍ପନା ସୁଦ୍ଧା କରନ୍ତି ନାହିଁ ଯେ ଗଙ୍ଗା-ଯମୁନାର ସମଭୂମିରେ ହଜାର ହଜାର ଏକର କ୍ଷେତ ଅଛି । ସେମାନଙ୍କୁ ଦୁଇ ଏକରର ଜମି ଅଛି ବୋଲି କିଏ କହିଲେ ସେମାନେ ବିଶ୍ୱାସ ପର୍ଯ୍ୟନ୍ତ କରିପାରିବେ ନାହିଁ । କାରଣ ସେମାନଙ୍କର ଧାରଣାରେ ସେହି ଦୁଇଗ୍ଭରି ହାତଆ କ୍ଷେତ ଅଛି । ଗରୁଡ଼ଙ୍କର ଖାଇବା କଥା; ଗରୁଡ ତ କୌଣସି ସାଧାରଣ ପ୍ରାଣୀ ନୁହନ୍ତି । ସେ ଇନ୍ଦ୍ରଙ୍କର ମଧ୍ୟ ଗର୍ବ ଚୂର

Digitized by srujanika@gmail.com

କରିଦେବା ଲୋକ । ଅସଂଖ୍ୟ ବ୍ରହ୍ମାଣ୍ଡ ଯାର ଉଦରରେ ଅଛି ସେହି ଶ୍ରୀହରିଙ୍କର ବହନକାରୀ ବାହନ ସେ । ଆପଣ ଅନୁମାନ କରନ୍ତୁ ସହସ୍ର ନିଷାଦ ଯାହାଙ୍କର ଜଳପାନ ନିମନ୍ତେ ପର୍ଯ୍ୟାପ୍ତ ନୁହନ୍ତି, ତାଙ୍କ ପକ୍ଷରେ ଏଭଳି କାଆଁର ହାତୀ ଏବଂ କଚ୍ଛପ ଖାଇନେବା କୋଉ ବଡ଼ କଥା ! କିଏ ପିମ୍ପୁଡ଼ି କଳ୍ପନା କରି ପାରିବ ଯେ ଜଣେ ଲୋକ ଗୋଟିଏ ଦିନରେ ଦଶସେର ଲଡ଼ୁ ଖାଇ ଦେଇ ପାରିବ ? ଭୀମସେନ ମହାଶେ ଦଶସେର ଓଜନର ଜଳ-ଯୋଗ କରନ୍ତି । ଏହା ଶୁଣା କଥା । ଏଇନେ ବି ତ ଦଶସେର ଲଡ଼ୁ ଏକା ଯାଗାରେ ବସି ଖାଇ ଦେବା ଲୋକ ଅଛନ୍ତି । ଭଗବାନ, ଯା'ର ଯେଭଳି ଶରୀର ଆହାର ମଧ୍ୟ ସେଭଳି । ଏଥିରେ ବିସ୍ମିତ ହେବାର କାରଣ ନାହିଁ ।"

ହସିହସି ଶୌନକ ପଚାରିଲେ, "ଆପଣଙ୍କ କଥାରେ ବିଶ୍ୱାସ କରୁଛି । ଆପଣ ତା ପର କଥା କହନ୍ତୁ ।"

ସୂତ କହିଲେ, "ମହାଭାଗ, ଗଲାବେଳେ ଗରୁଡ଼ ପିତା କଶ୍ୟପଙ୍କୁ ପଚାରିଲେ, "ପ୍ରଭୁ ! ଏ ଦୁହେଁ କିଏ ଏବଂ କାହିଁକି ନିରନ୍ତର ଏଭଳି ଲଢ଼େଇ କରୁଛନ୍ତି । ଏମାନଙ୍କୁ ଭକ୍ଷଣ କଲେ ମୁଁ ପାପଭାଗୀ ହେବିନାହିଁ ତ ?"

ଏହାଶୁଣି କଶ୍ୟପ କହିଲେ, "ପୁତ୍ର, ଏ ଉଭୟେ ପୂର୍ବଜନ୍ମରେ ବିଭାବସୁ ଓ ସୁପ୍ରତୀକ ନାମକ ସହୋଦର ଭାଇ ଥିଲେ । ବଡଭାଇ ବିଭାବସୁ ଅତ୍ୟନ୍ତ କ୍ରୋଧୀ । ସେମାନଙ୍କର ପିତା ଅତ୍ୟନ୍ତ ଧନୀ ଥିଲେ । ଶ୍ରେଷ୍ଠଭାଇ ସୁପ୍ରତୀକ ବଡ଼ଭାଇ ସାଙ୍ଗରେ ରହିବାକୁ ଚାହୁଁ ନଥିଲା । କ୍ରୋଧୀ ସାଙ୍ଗରେ ରହିବାକୁ କାହାକୁ ବା ଭଲ ଲାଗିବ । ସେ ଆପଣା ବଡଭାଇକୁ ବାରମ୍ବାର ଭାଗ ବଣ୍ଟା ଆସିପାଇଁ କହୁଥିଲା । ଶ୍ରେଷ୍ଠ ଭାଇର କଥା ବଡ଼ କୌଣସି ପ୍ରକାରେ ଟାଳଟିଳ କରିଦେଉ ଥିଲା । ସୁପ୍ରତୀକ କେବେହେଲେ ମାନୁ ନଥିଲା ।

ଏଥିରେ କ୍ରୋଧିତ ହୋଇ ବଡ଼ଭାଇ ବିଭାବସୁ କହିଲା, "ଦେଖ୍, ତୁ ପୈତୃକ ସମ୍ପତ୍ତିପାଇଁ ଲଢୁଛୁ । ମୁଁ ତୋତେ ବାରମ୍ବାର ବାରଣ କରୁଛି, ମାତ୍ର ତୁ ମାନୁନାହୁଁ । ଏଣୁ ତୁ ବାରଣ (ହାତୀ) ହୋଇ ଯା' ।

ସୁପ୍ରତୀକ ମଧ୍ୟ କମ ନଥିଲା । ସେ ମଧ୍ୟ ମୁନିପୁତ୍ର । ସେ ମଧ୍ୟ ଅଭିଶାପ ଦେଲା, "ତୁ ମଧ୍ୟ ଧନ ଲୁଚେଇ ବସିଛୁ । କଚ୍ଛପ ଭଳି ଲୁଚେଇ ହେଉଛୁ । ତୁ କଚ୍ଛପ ହୋଇ ଯାଆ ।"

କଶ୍ୟପ କହିଲେ, "ପୁତ୍ର ଗରୁଡ଼ ! ସେ ଉଭୟ ମୁନିପୁତ୍ର ହାତୀ ଓ କଇଁଛ ହୋଇଛନ୍ତି । ପୂର୍ବ ଜନ୍ମର ବୈରଭାବ ସ୍ମରଣ କରି କ୍ରୋଧରେ ସେମାନେ ନିରନ୍ତର

Digitized by srujanika@gmail.com

ଲଢ଼େଇ କରୁଛନ୍ତି । ସର୍ବଦା ସେମାନଙ୍କର ଯୁଦ୍ଧ ଗ୍ଲୁଛି । ଭଗବାନ ତୋର ପ୍ରବୃତ୍ତି କରିଛନ୍ତି ଜୀବମାନଙ୍କୁ ଖାଦ୍ୟଭାବରେ ଗ୍ରହଣ କରିବୁ । ତୋ'ର ଆହାର ସେମାନେ । ତାପରେ ଯେ କ୍ରୋଧୀ, ଯାହାଦ୍ୱାରା ଜୀବମାନଙ୍କର ଅପକାର ହେଉଛି ସେଭଳି ଲୋକଙ୍କୁ ମାରିବାରେ କୌଣସି ଦୋଷ ନାହିଁ । ଏହି ଉଭୟଙ୍କ କାରଣରୁ ସରୋବରରେ ରହୁଥିବା ସମସ୍ତ ଜୀବଜନ୍ତୁ ଦୁଃଖୀ । ତେଣୁ ତୁ ଏ ଉଭୟଙ୍କୁ ଭକ୍ଷଣ କରି କ୍ଷୁଧା ଶାନ୍ତ କର ।''

ସୂତ କହୁଛନ୍ତି, ''ହେ ମୁନିଗଣ, ପିତାଙ୍କର ଆଜ୍ଞାପାଇଁ ଗରୁଡ଼ ଗଲେ ଏବଂ ମୁହୂର୍ତ୍ତିକ ମଧ୍ୟରେ ସରୋବର ସମୀପରେ ପହଞ୍ଚିଲେ । ଗୋଟିଏ ନଖପଞ୍ଝାରେ ଗୋଟିଏ ମୁଠାରେ ଗଜ ଏବଂ ଅନ୍ୟ ମୁଠାରେ କଚ୍ଛପକୁ ଟେକିନେଇ ଉଡ଼ିଗଲେ । ତାଙ୍କର ଦୁଇହାତରେ ଦୁଇ ଗ୍ରାସ ରହିଥିଲେ । ବର୍ତ୍ତମାନ ସେ ସେମାନଙ୍କୁ ନେଇ କେଉଁଠାରେ ବସି ଖାଇବେ ତାହାହିଁ ଥିଲା ଚିନ୍ତାର ବିଷୟ । ପୃଥିବୀ ଥରଥର କମ୍ପି ଥିଲା । ବୃକ୍ଷମାନେ ଶାଖା ଦୋଳାୟିତ କରି ମନା କରୁଥିଲେ । ଆମ ଉପରେ ବସ ନାହିଁ କହୁଥିଲେ । ସମସ୍ତଙ୍କୁ ଭୟଭୀତ ହେଉଥିବା ଦେଖି ସୁମେରୁ ପର୍ବତ ଉପରେ ଥିବା ଏକ ବିରାଟ ବଟବୃକ୍ଷ, ଯା'ର ଶାଖାମାନଙ୍କର ବିସ୍ତାର ଶତଶତ ଯୋଜନ ଥିଲା, କହିଲା, ''ହେ ଗରୁଡ, ଆପଣ ମୋ ଶାଖାରେ ବସି ଭୋଜନ କରନ୍ତୁ ।''

ଗରୁଡ଼ କହିଲେ, ''ଭଲ କଥା'' । ମାତ୍ର ସେ ଯେମିତି ଏକ ଦୃଢ଼ ବିଶାଳ ଶାଖାରେ ବସିଗଲେ ସେମିତି ସେ ଶାଖା ବୋଝ ସମ୍ଭାଳି ନପାରି କଡ଼ମଡ଼ କରି ଭାଙ୍ଗିଗଲା । ତାପରେ ଗରୁଡ ଧର୍ମ ସଙ୍କଟରେ ପଡ଼ିଲେ । ସେହି ଶାଖାରେ ଷାଠିଏ ହଜାର ବାଲଖିଲ୍ୟ ମୁନି ଓଲଟା ରହି ତପସ୍ୟା କରୁଥିଲେ । ତାଙ୍କର ଶରୀରର ଆକାର ତାଙ୍କର ବୁଢ଼ା ଆଙ୍ଗୁଠିର ପରି ଭଳି ଥିଲା । ଗରୁଡ଼ ଭାବିଲେ ଏ ଡାଳ ଯଦି ତଳେ ପଡ଼ିଯାଏ, ତା'ହେଲେ ଏ ମୁନିମାନେ ଦଳି ଚକଟି ହୋଇ ମରିଯିବେ । ଏହା ଭାବି ସେ ଡ଼ାଳକୁ ତଳେ ପଡ଼ିବା ପୂର୍ବରୁ ଧରି ନେଲେ । ଗୋଟିଏ ହାତରେ ହାତୀ, ଅନ୍ୟ ହାତରେ କଚ୍ଛପ ଏବଂ ଚଞ୍ଚୁରେ ସେହି ବିଶାଳ ବୃକ୍ଷ ଶାଖା ଧରି ସେ ଉଡ଼ିଲେ । ସେହି ବୃକ୍ଷଶାଖା ଶହଶହ କୋଶ ଦୀର୍ଘ ଥିଲା । ସେତେବେଳେ ଗରୁଡ ଆପଣାର କ୍ଷୁଧା ତୃଷା ଭୁଲି ଯାଇଥିଲେ । କେବଳ ହେଉ ଏକମାତ୍ର ଚିନ୍ତାଥିଲା ସେହି ଆଙ୍ଗୁଠି ପରିଭଳି ଷାଠିଏ ହଜାର ମୁନିମାନଙ୍କର ରକ୍ଷା କିପରି କରିବେ ! ଏ ଶାଖା ଯେଉଁଠାରେ ବି ରଖିବ ଏମାନେ ଦଳିହୋଇ ମରିଯିବେ । ଏହାଭାବି ପରମ ତେଜସ୍ୱୀ, ମହାନ ପରାକ୍ରମୀ, ଅଦ୍ଭୁତ ବଳଶାଳୀ, ମନର ବେଗରୁ ବଳି ତୀବ୍ର ଗତିଶୀଳ ଓ ସୁମେରୁ ସଦୃଶ ବିରାଟକାୟ ଗରୁଡ ଉଡ଼ି ଉଡ଼ି ପୁଣି ପିତାଙ୍କ ନିକଟରେ ଉପସ୍ଥିତ ହେଲେ । ଆପଣାର ଯୋଗ ବଳରେ କଶ୍ୟପ ସବୁ ବୁଝିଗଲେ । ତେଣୁ ସେ ସେହି ବାଲଖିଲ୍ୟ ମୁନିମାନଙ୍କୁ ପ୍ରାର୍ଥନା କରି ସେମାନେ ପୁତ୍ରକୁ ଧର୍ମ ସଙ୍କଟରୁ ଉଦ୍ଧାର କରନ୍ତୁ ବୋଲି ଅନୁରୋଧ କଲେ ।

Digitized by srujanika@gmail.com

ବାଲଖିଲ୍ୟ ମୁନିମାନେ କଶ୍ୟପଙ୍କ ପ୍ରାର୍ଥନା ସ୍ୱୀକାର କରି ସେ ଶାଖା ତ୍ୟାଗ କରି ହିମାଳୟ ପର୍ବତରେ ତପସ୍ୟା କରିବା ନିମନ୍ତେ ଗ୍ଲଲଗଲେ । ତା'ପରେ ଗରୁଡ଼ ପିତାଙ୍କ ଆଜ୍ଞାରେ ସେହି ଶାଖାକୁ ନେଇ ହିମାଳୟର ବରଫାବୃତ୍ତ ଶିଖର ଦେଶରେ ଛାଡ଼ି ଦେଲେ । ସେଠାରେ କୌଣସି ଜୀବ ଜନ୍ତୁ ନିବାସ କରନ୍ତି ନାହିଁ । ସେଠାରେ ବସି ଗରୁଡ ଆନନ୍ଦ ମନରେ ସେହି ଗଜ ଏବଂ କଚ୍ଛପଙ୍କୁ ଭକ୍ଷଣ କଲେ ଏବଂ ନିଶ୍ଚିନ୍ତ ମନରେ ଅମୃତ ଆଣିବାକୁ ଗଲେ ।

ସୂତ କହୁଛନ୍ତି, "ହେ ମୁନିଗଣ, ଏହା କଳ୍ପାନ୍ତରର କଥା । ଏହାର ଗଜ-ଗ୍ରାହ ପ୍ରସଙ୍ଗ ସହିତ କୌଣସି ସମ୍ବନ୍ଧ ନାହିଁ । ଏହା ଗଜ କଚ୍ଛପ କଥା । ହରିଣୀ-ନନ୍ଦନ ଭଗବାନ ହରି ଯେ ହରିମେଧା ମୁନିଙ୍କ ଔରସରୁ ଅବତୀର୍ଣ୍ଣ ହୋଇଥିଲେ, ସେ ଗଜ ଏବଂ ଗ୍ରାହକୁ ଉଦ୍ଧାର କରିଥିଲେ । ଗଜ ଏବଂ କଚ୍ଛପଙ୍କୁ ଭକ୍ଷଣ କରି ସେମାନଙ୍କର ଉଦ୍ଧାର କରିଥିଲେ ତାଙ୍କର ବାହନ ଗରୁଡ ।

ସେହି ଗଜେନ୍ଦ୍ର ଉଦ୍ଧାର କଥା ସକଳ ପାପ ବିମୋଚନକାରୀ । ଏହି କଥାର ପ୍ରସଙ୍ଗକ୍ରମେ ଗଜ, ଗ୍ରାହ, ଗ୍ରାହର ନିବାସସ୍ଥଳୀ ସେହି ସରୋବର, ତା'ର ତଟବର୍ତ୍ତୀ ବୃକ୍ଷ ରାଜି, ବାଉଁଶ୍ରି ଅରଣ୍ୟ, ଲତାଗୁଳ୍ମ, ପର୍ବତ ଓ ଗିରିରାଜ, ଭଗବନ୍ତ ଧାମ ସମୂହ, ତାର ବିଭୂତି, କ୍ଷୀର ସାଗର, ଶ୍ୱେତଦ୍ୱୀପ, ଶ୍ରୀବତ୍ସ, କୌସ୍ତୁଭମଣି, ବନମାଳା, କୌମଦକୀ ଗଦା, ସୁଦର୍ଶନ ଚକ୍ର, ପାଞ୍ଚଜନ୍ୟ ଶଙ୍ଖ, ଗରୁଡ଼, ଲକ୍ଷ୍ମୀ, ନାରଦ, ଶିବ, ପ୍ରହ୍ଲାଦ, ମତ୍ସ୍ୟ, କୂର୍ମ, ବରାହ, ନୃସିଂହ, ବାମନ, ରାମ କୃଷ୍ଣ ଆଦି ଅବତାର, ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନି, ପ୍ରଣବ, ସତ୍ୟ, ଅବ୍ୟକ୍ତ, ଗୋ, ବ୍ରାହ୍ମଣ, ଧର୍ମ, କୀର୍ତ୍ତି ଆଦି ଧର୍ମଙ୍କର ପତ୍ନୀ, ଗଙ୍ଗା, ଯମୁନା, ସରସ୍ୱତୀ, ଭଦ୍ର ଆଦି ପୁଣ୍ୟ ସରିତା, ଐରାବତ, ନାଗ, ଧ୍ରୁବ, ସପ୍ତର୍ଷି, ଅନ୍ୟାନ୍ୟ ମହର୍ଷି, ନଳ ଯୁଧିଷ୍ଠିର ଆଦି ପୁଣ୍ୟଶ୍ଳୋକ ପୁରୁଷଙ୍କର ଯେଉଁମାନେ ନିତ୍ୟ ପ୍ରଭାତରେ ଶଯ୍ୟାତ୍ୟାଗ ପୂର୍ବରୁ ସ୍ମରଣ କରିଥାନ୍ତି ସେମାନେ ନିଶ୍ଚୟ ମୃତ୍ୟୁକାଳରେ ଭଗବାନଙ୍କର ସ୍ମରଣ କରିବେ ଏହା ପ୍ରଭୁଆଜ୍ଞା ।

ଶୁକଦେବ କହୁଚନ୍ତି, "ରାଜନ୍, ମୁଁ ଆପଣଙ୍କୁ ଚତୁର୍ଥ ମନ୍ୱନ୍ତରାବତାର ଭଗବାନ ଶ୍ରୀହରିଙ୍କର ଚରିତ୍ର ସମ୍ବନ୍ଧରେ କହିଲି । ବର୍ତ୍ତମାନ ପଞ୍ଚମ ଓ ଷଷ୍ଠ ମନ୍ୱନ୍ତରାବତାର କଥା ଶ୍ରବଣ କରନ୍ତୁ ।"

Digitized by srujanika@gmail.com

## ଛପ୍‌ପୟ୍

କୌସ୍ତୁଭ ମନି ଶ୍ରୀବତ୍ସ ଔର ମେରୀ ବନମାଲ୍ ।
ପାଞ୍ଚଜନ୍ୟ ଶୁଭ ଶଙ୍ଖ ଗଦାମମ ଦିବ୍ୟ ବିଶାଲ୍ ॥
ଅସୁର୍ ବିନାଶକ ଚକ୍ର ସୁଦର୍ଶନ ମେରେ ଭାରୀ ।
ସୁରମୁନି ଅରୁ ଅବତାର ପୁରୁଷ ସବ ଶୁଭ ବ୍ରତଧାରୀ ॥
ଇନ ସବକୁଁ ଯୋ ପ୍ରାତ ଉଠି, ଶ୍ରଦ୍ଧା ତେଁ ସୁମିରନ କରେଁ ।
ଭବ ସାଗର କୁଁ ମନୁଜ ତେ, ବିନୁ ପ୍ରୟାସ ନିଶ୍ଚୟ ତରେଁ ॥

—※—

Digitized by srujanika@gmail.com

# ପଞ୍ଚମ ଏବଂ ଷଷ୍ଠ ମନ୍ୱନ୍ତରାବତାର

ତତ୍ରାପି ଦେବଃ ସଂଭୂତ୍ୟାଂ ବୈରାଜସ୍ୟା ଭବତ୍ ସୁତଃ ।
ଅଜିତୋ ନାମ ଭଗବାନଂଶେନ ଜଗତଃ ପତିଃ ॥
ପୟୋଧିଂ ଯେନ ନିର୍ମଥ୍ୟ ସୁରାଣାଂ ସାଧିତା ସୁଧା ।
ଭ୍ରମମାଣୋଽମ୍ଭସି ଧୃତଃ କୂର୍ମରୂପେଣ ମନ୍ଦରଃ ॥

—ଶ୍ରୀ. ଭା. ୮ । ୫ । ୯, ୧୦

### ଛପ୍ପୟ

ଭୟେ ପାଂଚବେଁ ରୈବତ ମନୁ ମନ୍ୱନ୍ତର ଅଧିପତି ।
ଲୟୋ ବିଷ୍ଣୁ ଅବତାର ନାମ'ବୈକୁଣ୍ଠ' ରମାପତି ॥
କମଲାହିତ ବୈକୁଣ୍ଠ ରଚ୍ୟୋ ସବ ଲୋକ ନମସ୍କୃତ ।
ମନ୍ୱନ୍ତର ପତି ଭୟେ ଛଟେ, ଚକ୍ଷୁସ ମନୁ ଶ୍ରୀଯୁତ ॥
ସଂଭୂତୀ କେ ଗର୍ଭ ତେଁ ଭୟେ ବିଷ୍ଣୁ ବୈରାଜ ସୁତ ।
'ଅଜିତ' ନାମ ଅଚ୍ୟୁତ ରଖ୍ୟୋ, ମଥ୍ୟୋ ସିନ୍ଧୁ ଶ୍ରୀ ଅମୃତହିତ ॥

ଭଗବାନଙ୍କର ଲୀଳା ଏତେ ଦିବ୍ୟ ଓ ଆଶ୍ଚର୍ଯ୍ୟଜନକ ଯେ ସାଧାରଣ ମନୁଷ୍ୟ ତାର ରହସ୍ୟ ବୁଝିପାରିବ ନାହିଁ । ଯେତେବେଳପର୍ଯ୍ୟନ୍ତ ଈଶ୍ୱର କୃପା କରିନାହାନ୍ତି ସେ ପର୍ଯ୍ୟନ୍ତ ତାଙ୍କର ଅବତାରର ଭେଦ କେହି ବୁଝିପାରିବେ ନାହିଁ ।

ମହାରାଜ ପରୀକ୍ଷିତ ଶ୍ରୀ ଶୁକଦେବଙ୍କୁ କହିଲେ, "ପ୍ରଭୁ, ଚାରୋଟି ମନ୍ୱନ୍ତରର କଥା ତ ଆପଣ କହିଲେ । ପରବର୍ତ୍ତୀ ମନ୍ୱନ୍ତରମାନଙ୍କରେ ଭଗବାନଙ୍କର କେଉଁ କେଉଁ ଅବତାର ହୋଇ ଓ ସେ କେଉଁ କେଉଁ ବିଶିଷ୍ଟ କାର୍ଯ୍ୟ କଲେ ସେକଥା କହିବା ହୁଅନ୍ତୁ ।"

Digitized by srujanika@gmail.com

ଶ୍ରୀ ଶୁକଦେବ କହିଲେ, "ରାଜନ୍, ଚତୁର୍ଥ ମନ୍ୱନ୍ତରର ଅଧିପତି ଯେ ଉତ୍ତମଙ୍କର ଭ୍ରାତା ତାମସ ଥିଲେ, ତାଙ୍କର ଆଉ ଏକ ସହୋଦର ଭ୍ରାତା ଥିଲେ ରୈବତ । ସେହି ରୈବତ ଆପଣାର ପୁଣ୍ୟ ପ୍ରଭାବରେ ପଞ୍ଚମ ମନ୍ୱନ୍ତରାବତାର ନାମରେ ପ୍ରସିଦ୍ଧ ହେଲେ । ତାଙ୍କର ଅର୍ଜୁନ, ବଳି, ବିନ୍ଧ୍ୟ ଆଦି ଅନେକ ପୁତ୍ର ହେଲେ, ଯେଉଁମାନେ ରାଜା ହୋଇ ପୃଥିବୀ ଶାସନ କଲେ । ସେହି ମନ୍ୱନ୍ତରରେ ଇନ୍ଦ୍ରଙ୍କର ନାମ ଥିଲା ବିଭୁ । ଭୂତରୟ ଆଦି ଦେବତାମାନଙ୍କର ଗଣ ହେଲେ । ହିରଣ୍ୟରୋମା, ବେଦଶିରା ଏବଂ ଊର୍ଦ୍ଧ୍ୱବାହୁ ଆଦି ସପ୍ତର୍ଷି ହେଲେ । ସେ ମନ୍ୱନ୍ତରରେ ଭଗବାନ ଶୁଭ୍ରମନୁଙ୍କର ବିକୁଣ୍ଠା ନାମକ ପତ୍ନୀଙ୍କର ଗର୍ଭରେ ଅବତାର ଗ୍ରହଣ କଲେ । ଏଣୁ ସେ ବୈକୁଣ୍ଠ ନାମରେ ପ୍ରସିଦ୍ଧ ହେଲେ ।

ମହାରାଜ ପରୀକ୍ଷିତ ପଚାରିଲେ, "ଭଗବନ୍, ବୈକୁଣ୍ଠ ଭଗବାନ କେଉଁ କେଉଁ କାର୍ଯ୍ୟ କରିଥିଲେ ?"

ଶ୍ରୀ ଶୁକଦେବ କହିଲେ, "ରାଜନ୍, ସେହି ବୈକୁଣ୍ଠ ଭଗବାନ ରମାଦେବୀଙ୍କ ପ୍ରାର୍ଥନାରେ ତାଙ୍କର ପ୍ରସନ୍ନତା ପାଇଁ ସର୍ବୋତ୍ତମ ବୈକୁଣ୍ଠପୁରୀର କଳ୍ପନା କରିଥିଲେ । ସେ ଏଭଳି ଏକ ଲୋକ ନିର୍ମାଣ କଲେ, ଯା'ର ବନ୍ଦନା ପ୍ରତ୍ୟେକ ଲୋକର ଅଧିବାସୀ କରିଥାନ୍ତି ।"

ଏଥିରେ ଶଙ୍କା ପ୍ରକାଶ କରି ଶୌନକ କହିଲେ, "ହେ ସୂତ, ବୈକୁଣ୍ଠ ଲୋକ ତ ଅନାଦି । ତା'ର ପୁଣି ରଚନାର ଅଭିପ୍ରାୟ କଣ ? ସଦା ଅଦୃଶ୍ୟ ଥାଇ ମଧ୍ୟ ତାହା ନିତ୍ୟ । ତା'ହେଲେ ଭଗବାନ ପୁନଶ୍ଚ ବୈକୁଣ୍ଠର ରଚନା କାହିଁକି କଲେ ?

ଏହାଶୁଣି ଶ୍ରୀ ସୂତ କହିଲେ, "ମହାନୁଭବ ! ବୈକୁଣ୍ଠ ନିତ୍ୟଧାମ । ସେଠାରେ ମହାବିଷ୍ଣୁ ଅହର୍ନିଶ ବିରାଜମାନ କରି ଲୋକାତୀତ ଦିବ୍ୟକ୍ରୀଡ଼ା କରିଥାନ୍ତି । ସେଠାକାର ଲୀଳାର କଳ୍ପନା କରିବା ମଧ୍ୟ ମାନବୀୟ ବୁଦ୍ଧିର ବହିର୍ଭୂତ । ଏହି ବୈକୁଣ୍ଠ ଭଗବାନ ସେହି ବୈକୁଣ୍ଠ ଧାମର ପ୍ରତିରୂପ ସଦୃଶ ସେହିଭଳି ଦିବ୍ୟ ବୈକୁଣ୍ଠ ଧାମର ରଚନା କଲେ, ଯା'ର ଲୀଳା-ଆସ୍ୱାଦନ ଭୂତଳର ପ୍ରାଣୀ ମଧ୍ୟ କରି ପାରିବେ । ତାର ଦିବ୍ୟତା ବା ନିତ୍ୟତାରେ କୌଣସି ବ୍ୟାଘାତ ନାହିଁ । କେବଳ ମାତ୍ର ଭକ୍ତମାନଙ୍କ ପ୍ରତି ଲୋକବତ୍ ଲୀଳା ନିମନ୍ତେ ଭଗବାନ ଏହି ଧାମର କଳ୍ପନା କଲେ । ଜୟ ବିଜୟଙ୍କୁ ଏହି ବୈକୁଣ୍ଠରେ ଅଭିଶାପ ମିଳିଥିଲା । ହିରଣ୍ୟକଶିପୁ ଆପଣା ଭାଇର ପ୍ରତିଶୋଧ ନେବାକୁ ଏହି ବୈକୁଣ୍ଠରେ ପହଞ୍ଚିଥିଲା । ଯାହାକୁ ଡରି ଭଗବାନ ତା'ରି ହୃଦୟରେ ପ୍ରବେଶ କରିଗଲେ । ଏହା ଭଗବାନଙ୍କର କେବଳ ବିନୋଦ ମାତ୍ର । ନହେଲେ ତାଙ୍କର କାହାକୁ ଭୟ ? ତାଙ୍କର ପାର୍ଷଦମାନଙ୍କୁ ଅଭିଶାପ ଦେବାର ସାହସ କିଏ କରିବ ? ଏସବୁ ଭକ୍ତ ପ୍ରତି ତାଙ୍କର କୃପା ମାତ୍ର ! ଏଭଳି କୌତୁକ ନକଲେ ଭକ୍ତଙ୍କର ମନୋରଞ୍ଜନ କିପରି ହେବ ? କାହାର

Digitized by srujanika@gmail.com

ଚରିତ ଶୁଣି ସେମାନେ ହସିବେ କାନ୍ଦିବେ ଓ ପ୍ରେମ ବାହ୍ୱାର ହେବେ ? ଏହି ବୈକୁଣ୍ଠ ଭଗବାନଙ୍କର ଲୀଳାର କେତୋଟି ଦୃଷ୍ଟାନ୍ତ ଜୟ ବିଜୟଙ୍କର ଅଭିଶାପ ପ୍ରସଙ୍ଗରେ ପୂର୍ବରୁ ବର୍ଣ୍ଣନା କରି ସାରିଛି । ବର୍ତ୍ତମାନ ଆପଣ ଷଷ୍ଠ ମନ୍ୱନ୍ତରାବତାରଙ୍କର କଥା ଶ୍ରବଣ କରନ୍ତୁ ।''

ଶ୍ରୀ ଶୁକଦେବ କହୁଛନ୍ତି, ''ରାଜନ୍, ଷଷ୍ଠ ମନ୍ୱନ୍ତରର ଅଧିପତି ଚକ୍ଷୁଷଙ୍କର ପୁତ୍ର ହେଲେ ଚାକ୍ଷୁଷ । ତାଙ୍କର ପୁରୁ, ପୁରୁଷ ଓ ସୁଦ୍ୟୁମ୍ନ ଆଦି ପୁତ୍ର ହେଲେ । ତାଙ୍କର ପୁତ୍ରମାନେ ଏହି ପୃଥିବୀର ରାଜାଭାବରେ ଶାସନ କଲେ । ସେହି ମନ୍ୱନ୍ତରର ଇନ୍ଦ୍ରଙ୍କର ନାମ ମନ୍ତ୍ରଦ୍ରୁମ । ଆପ୍ୟ ଆଦି ଦେବତାଙ୍କର ଗଣଥିଲେ । ହବିଷ୍ମାନ୍ ଏବଂ ବୀରକ ଆଦି ସପ୍ତର୍ଷି ଥିଲେ । ଏହି ମନ୍ୱନ୍ତରରେ ଭଗବାନ ବୈରାଜଙ୍କର ପତ୍ନୀ ସମ୍ଭୂତିଙ୍କର ଗର୍ଭରେ ଅବତାର ଗ୍ରହଣ କଲେ । ସେ ସଂସାରରେ ଅଜିତନାମରେ ବିଖ୍ୟାତ ହେଲେ ।''

ଏହାଶୁଣି ମହାରାଜ ପରୀକ୍ଷିତ ପଚାରିଲେ, ''ପ୍ରଭୁ ! ଭଗବାନ ଅଜିତ କେଉଁ କେଉଁ ବିଶେଷ କାର୍ଯ୍ୟ କରିଥିଲେ ?''

ହସି ହସି ଭଗବାନ ଶୁକଦେବ କହିଲେ, ''ରାଜନ୍, ସେ ବହୁରୂପୀ ଭଗବାନଙ୍କର ଲୀଳା ବିଷୟରେ ପଚାରନ୍ତୁ ନାହିଁ । ସେ ତ ଏପରି ଲୀଳା ଭିଆଇଲେ ଯା'ର ପଟାନ୍ତର ନାହିଁ । ଚୂଡ଼ୀ, ଖଡୁ, ବିଛୁ, ନଥ ନାଇଁ ନାରୀରୂ ନାଗ ପାଲଟି ଗଲେ ।''

ଏହାଶୁଣି ବିସ୍ମିତ ହୋଇ ରାଜା ପଚାରିଲେ, ''ଭଗବନ୍, ପୁରାଣ ପୁରୁଷ ପ୍ରଭୁ ନାରୀରୂ ନାରୀ ହେଲେ କାହିଁକି ?''

ଶ୍ରୀ ଶୁକଦେବ ହସିହସି କହିଲେ, ''ରାଜନ୍, ତାଙ୍କର ଗୋଟିଏ ରୂପ ହୋଇଥାନ୍ତା ଯଦି ତେବେ ମୁଁ କିଛି ହେଲେ କହନ୍ତି । ସେ ନା ସ୍ତ୍ରୀ ନା ପୁରୁଷ ନା ନପୁଂସକ । ପଶୁ, ପକ୍ଷୀ, ମନୁଷ୍ୟ, ଦେବ କୌଣସି ଶ୍ରେଣୀର ନୁହନ୍ତି । ସେ କଣ ତାହା କୁହାଯାଇ ପାରିବ ନାହିଁ ।''

ମହାରାଜ ପରୀକ୍ଷିତ ପଚାରିଲେ, ''ପ୍ରଭୁ, ସେ ସେଭଳି କେଉଁ ଲୀଳା କଲେ ଯେ ତାଙ୍କୁ ଖଡୁ ଚୂଡ଼ୀ ପିନ୍ଧିବାକୁ ହେଲା ।''

ଶ୍ରୀ ଶୁକଦେବ କହିଲେ, ''ରାଜନ୍, ସେ ଦେବତାମାନଙ୍କୁ ଅମୃତ ପାନ କରାଇବେ ବୋଲି ଲକ୍ଷ୍ମୀଙ୍କୁ ପ୍ରକଟିତ କରିବାକୁ ସମୁଦ୍ର ମନ୍ଥନ କରାଇଲେ । ଏହା ଏପରି କୁତୂହଳ ପୂର୍ଣ୍ଣ ଲୀଳା ଥିଲା ଯେ ଗୋଟିଏ ଅବତାରରେ କାମ ହେଲା ନାହିଁ । ତାଙ୍କୁ ବହୁତୋଟି ଅବତାର

Digitized by srujanika@gmail.com

ଗ୍ରହଣ କରିବାକୁ ହେଲା । ସ୍ତ୍ରୀ ପାଲଟିବା ତ ଭିନ୍ନେ କଥା, କହିଁଛ ହେଲେ, ବୈଦ୍ୟ ହେଲେ ।"

ଅତ୍ୟନ୍ତ ଆଶ୍ଚର୍ଯ୍ୟାନ୍ୱିତ ହୋଇ ମହାରାଜ ପରୀକ୍ଷିତ ପଚାରିଲେ, "ମହାଭାଗ, ଏକ ସାଙ୍ଗରେ ଚାରୋଟି ଅବତାର ! ତାହେଲେ ତ ଏ ସମୁଦ୍ର ମନ୍ଥନର ଲୀଳା ଅତି ବିଚିତ୍ର । କୃପାକରି ଏହା ବିସ୍ତୃତ କରି ଶୁଣେଇବା ହୁଅନ୍ତୁ । ଭଗବାନଙ୍କୁ କାହିଁକି କଚ୍ଛପ ହେବାକୁ ହେଲା । ସମୁଦ୍ର ମନ୍ଥନର ଆବଶ୍ୟକତା କାହିଁକି ସେ ଅନୁଭବ କଲେ । କେଉଁ ପରି ମନ୍ଥା ଗଲା । କେଉଁମାନେ ମନ୍ଥନ କଲେ । ଭଗବାନ କେବଳମାତ୍ର ଦେବତାମାନଙ୍କୁ ହିଁ କାହିଁକି ଅମୃତ ପିଆଇଲେ । ଲକ୍ଷ୍ମୀ କୁଆଡ଼େ ଯାଇଥିଲେ ? ସ୍ତ୍ରୀ କେଉଁକାରଣରୁ ହେବାକୁ ପଡ଼ିଲା ଭଗବାନଙ୍କୁ ? ଏ ପ୍ରସଙ୍ଗ ବିସ୍ତାର କରି କହନ୍ତୁ ।

ଏହାଶୁଣି ଶ୍ରୀ ଶୁକଦେବ କହିଲେ, "ମହାରାଜ, ଏହାର ସଂକ୍ଷିପ୍ତ ଉତ୍ତର ଏଇଆ ହେବ ଯେ ଏହା ଏକ ଈଶ୍ୱରୀୟ ତରଙ୍ଗ । ସେ ଚେତନାରେ ଯିଏ ବି ଆସିଗଲା । ସ୍ଥଳଭାଗରେ ଥିବାବେଳେ ଭାବିଥିଲେ, କଚ୍ଛପ ହୋଇ ଦେଖାଯାଉ । ବାରମ୍ବାର ପୁରୁଷ ହୋଇ ଲକ୍ଷ୍ମୀଙ୍କ ଠାରୁ ଗାଳି ଖାଇ ଝାଇ ଭାବିଥିବେ, ଥରେ ସ୍ତ୍ରୀ ହୋଇ ଦେଖା ଯାଉ, ସେଥିରେ କେତେ ବା ମୋହକତା ଅଛି ? ସବୁ ତ ଜାଣନ୍ତି, ଜାଣି ନ ଜାଣିଲାଭଳି କ୍ରୀଡ଼ା କରିଥାନ୍ତି । ସେଇ ତାଙ୍କର ଭଗବତ୍ତା । ଆପଣ ଯେଉଁ ସମୁଦ୍ର ସମ୍ବନ୍ଧୀ ପ୍ରଶ୍ନକଲେ ମୁଁ ସେ ସବୁର ସଂକ୍ଷେପରେ ଉତ୍ତର ଦେବି । ପ୍ରଥମରେ ସେଇକଥା କହୁଛି ଯେ ଲକ୍ଷ୍ମୀ କୁଆଡେ଼ ଗଲେ ଓ ତାଙ୍କପାଇଁ ତଥା ଅମୃତ ପାଇଁ କାହିଁକି ସମୁଦ୍ର ମନ୍ଥନ ହେଲା । ଏହି ପ୍ରସଙ୍ଗରେ ଭଗବାନଙ୍କର ଚାରୋଟି ଯାକ ଅବତାର, ଅଜିତ, କଚ୍ଛପ, ମୋହିନୀ ଓ ଧନ୍ୱନ୍ତରୀଙ୍କ ପ୍ରସଙ୍ଗ ଆପେ ଆସିଯିବ । ଆପଣ ତାହା ସାବଧାନ ହୋଇ ଶ୍ରବଣ କରନ୍ତୁ ।

## ଛପ୍‌ପୟ

ଧରି କଛୁଆ କୋ ରୂପ ମନ୍ଦରାଚଲ କୁଁ ଧାରେ୍ୟା ।
ସୁରନି ସଙ୍ଗ ଇକ ଅଜିତ ରୂପ ଧରି ଅମୃତ ନିକାରେ୍ୟା ॥
ଅମୃତ କଲଶ ଲେ ପ୍ରକଟ ଭୟେ ହରି ଧନ୍ୱନ୍ତରୀ ବନି ।
ଦୈତ୍ୟ ଛଲେ ହ୍ୱୈ ନାରୀ ଅମୃତ ଦେ ଦୀୟୋ ଦେବନି ॥
କହେଁ ପରୀକ୍ଷିତ କଥା ସବ, ସିନ୍ଧୁ ମଥନ କୀ କହହୁ ପ୍ରଭୁ ।
ଶ୍ରୀ ଅନ୍ତର୍ହିତ ଭଇ କସ, ଚାରି ରୂପ କୌଁ ଧରେ ବିଭୁ ॥

—※—

Digitized by srujanika@gmail.com

# ଇନ୍ଦ୍ରଙ୍କର ଅପରାଧ ହେତୁ ତ୍ରୈଲୋକ୍ୟ ଶ୍ରୀହୀନ

ଯଦା ଦୁର୍ବାସସଃ ଶାପାତ୍ ସେନ୍ଦ୍ରା ଲୋକାସ୍ତ୍ରୟୋ ନୃପ ।
ନିଃଶ୍ରୀକାଶ୍ଚାଭବଂସ୍ତତ୍ର ନେଶୁରିଜ୍ୟାଦୟଃ କ୍ରିୟାଃ ।
ତତୋ ବ୍ରହ୍ମସଭାଂ ଜଗ୍ମୁର୍ମେରୋର୍ମୂର୍ଧନି ସର୍ବଶଃ ।
ସର୍ବ ବିଜ୍ଞାପୟାଞ୍ଚକ୍ରୁଃ ପ୍ରଣତାଃ ପରମେଷ୍ଠିନେ ॥

—ଶ୍ରୀ. ଭା. ୮ । ୫ । ୧୬, ୧୮

ଛପ୍‌ପୟ

ଶୁକ ବୋଲେ ଏକ ଦିବସ ଗୟେ ବନ ଦୁର୍ବାସା ମୁନି ।
ଶ୍ୟାମ ବିଦ୍ୟାଧରୀ ଖଡ଼ୀ ଚୌଁକି ପଗ ଧୁନି ସୁନି ॥
ସର ସମୀପ ସ୍ରଗ୍‌ଲୟେ ସୁଗନ୍ଧିତ ସୁନ୍ଦରତା ଜନୁ ।
ମୁନିମନ ଚଞ୍ଚଲ ଭୟୋ ନିରଖି ମାଲ ବାଲ ତନୁ ॥
ବୋଲେ ବିଦ୍ୟାଧରୀ ଯୁହ, ମାଲ ମୋକୁଁ ଦୈ ଅବହିଁ ।
ଲଖି ଦୁର୍ବାସା ଡ଼ରୀ ବହ ମାଲ ଦୈ ଭଗୀ ତବହିଁ ॥

ସଂସାରରେ ଧନମଦ, ଐଶ୍ବର୍ଯ୍ୟମଦ, ଜାତିମଦ, ରୂପମଦ, ଯୌବନମଦ ଏବଂ ଅଧିକାର ମଦ ଆଦି ଅନେକ ମଦ ରହିଛି । ଏଥି ମଧ୍ୟରୁ ଧନ ଐଶ୍ବର୍ଯ୍ୟର ମଦ ସବୁଠାରୁ ବଳି । ଐଶ୍ବର୍ଯ୍ୟମଦରେ ମଣିଷ କାହାକୁ କେହିଲେ କିଛି ବୋଲି ମନେ କରେ ନାହିଁ । ସମସ୍ତଙ୍କର ଅପମାନ କରେ । ଆପଣାକୁ ସର୍ବଶ୍ରେଷ୍ଠ ମନେକରେ । ଏସବୁ ମଦ ଯେତେବେଳେ ଅତ୍ୟଧିକ ହୋଇଯାଏ, ସେତେବେଳେ ରୋଗରୂପ ହୋଇ ସମାଜକୁ ପୀଡ଼ା ଦେଇଥାଏ । ସେତେବେଳେ

Digitized by srujanika@gmail.com

ମଣିଷକୁ ଐଶ୍ୱର୍ଯ୍ୟହୀନ କରିଦେବା ହିଁ ହେଉଛି ଏକମାତ୍ର ଔଷଧ । ଯେ ଐଶ୍ୱର୍ଯ୍ୟମଦରେ ମତ୍ତହୋଇ ମଦାନ୍ଧ ହୋଇ ଯାଆନ୍ତି, ସେମାନଙ୍କର ଅନ୍ଧ ଆଖି ନିମନ୍ତେ ଦରିଦ୍ରତା ରୂପୀ ଅଞ୍ଜନ ହିଁ ପରମ ମହୌଷଧି । ଯେତେବେଳ ପର୍ଯ୍ୟନ୍ତ ମନୁଷ୍ୟ ଦାରିଦ୍ର୍ୟ ଦୁଃଖର ଅନୁଭବ କରେ ନାହିଁ, ସେତେବେଳ ପର୍ଯ୍ୟନ୍ତ ସେ ଦୀନ ଦୁଃଖୀମାନଙ୍କର ଅସୁବିଧା ଅନୁଭବ କରିବାକୁ କୌଣସି ମତେ ସମର୍ଥ ହୁଏ ନାହିଁ । ଯେତେବେଳେ ପୁରୁଷାର୍ଥରୁ ଚାଲି ଯାଇଥିବା ଲକ୍ଷ୍ମୀଙ୍କୁ ପୁନଃ ପ୍ରାପ୍ତ ହୁଏ, ସେତେବେଳେ ସେ ତା'ର ମହତ୍ତ୍ୱ ବୁଝେ ।

ଯେତେବେଳେ ମହାରାଜ ପରୀକ୍ଷିତ ଶ୍ରୀ ଶୁକଦେବଙ୍କୁ ସମୁଦ୍ର-ମନ୍ଥନ ସମ୍ବନ୍ଧୀ ପ୍ରଶ୍ନକଲେ ଏବଂ ଏହି ଜିଜ୍ଞାସା କଲେ ଯେ କେଉଁ କାରଣରୁ ଇନ୍ଦ୍ର ସହିତ ତ୍ରୈଲୋକ୍ୟ ଶ୍ରୀହୀନ ହେଲ, ଶୁକଦେବ ତା'ର ଉତ୍ତରରେ କହିଲେ, "ରାଜନ୍, ଇଲାବୃତ୍ତ ଖଣ୍ଡରେ ସୁମେରୁ ନାମକ ଦିବ୍ୟ ପର୍ବତ ଅଛି । ତାକୁ ଦେବ, ଉପଦେବ, ଋଷି ମୁନିମାନଙ୍କ ଛଡ଼ା କୌଣସି ମନୁଷ୍ୟ ଦେଖିପାରିବ ନାହିଁ । ସେଠାରେ ଦେବତାମାନଙ୍କର ଦିବ୍ୟ ଉପବନ ଅଛି । ସେଠାରେ ସୁର ସୁନ୍ଦରୀମାନେ ଆସି କ୍ରୀଡ଼ା କରିଥାନ୍ତି । ସେଠାରେ ଭୂମି ସୁବର୍ଣ୍ଣ-ମୟୀ । ସୁନ୍ଦର ସୁନ୍ଦର ସ୍ୱଚ୍ଛ ଶୀତଳ ସଲିଲ ପୂର୍ଣ୍ଣ ଅନେକ ସରୋବର ସେଠାରେ ବିଦ୍ୟମାନ । ସେହି ସରୋବରମାନଙ୍କରେ ସର୍ବଦା ବିବିଧ ପ୍ରକାର ପଦ୍ମ ଫୁଟି ରହିଥାଏ । ସେମାନଙ୍କର ସୁଗନ୍ଧ ଯୋଜନବ୍ୟାପୀ । ସେଠାରେ ବନ, ଉପବନ, ପର୍ବତ ପ୍ରାନ୍ତର ଶୋଭାର ସାକାର ରୂପ ଅଟନ୍ତି । ବାୟୁ ମନୋନୁକୂଳ ଚାଳିତ ହୋଇଥାଏ । ସେଠାରେ ଋତୁ ଆଗମନ ଇଚ୍ଛା ମତେ ହୋଇଥାଏ । ଶ୍ରମ, କ୍ଲାନ୍ତି, ନିଦ୍ରା, ତନ୍ଦ୍ରା, ଜଡ଼ତ୍ୱ, ସ୍ୱେଦ, ରୋଗ, ଶୋକ ଆଦି ବ୍ୟାଧି ସେଠାରେ କେହିହେଲେ ଅନୁଭବ କରନ୍ତି ନାହିଁ । ସମସ୍ତେ ସେଠାରେ ଦେବତା-ମାନଙ୍କ ପରି ବିହାର କରନ୍ତି । ସୁଖ ପୂର୍ବକ ଆପଣାର କାମ ବାସନା ପୂର୍ଣ୍ଣ କରିଥାନ୍ତି । ସିଦ୍ଧ, ଗନ୍ଧର୍ବ, କିଂପୁରୁଷ, କିନ୍ନର, ଗୁହ୍ୟକ, ବିଦ୍ୟାଧର, ଯକ୍ଷ, ନାଗ, ଆଦି ଅନେକ ଉପଦେବଙ୍କର ଜାତି । ଏମାନଙ୍କ ମଧ୍ୟରେ ଗନ୍ଧର୍ବ ଏବଂ ବିଦ୍ୟାଧର ସବୁଠାରୁ ସୁନ୍ଦର । ସେମାନଙ୍କର ସ୍ତ୍ରୀମାନେ ସର୍ବଦା ନବଯୌବନା । ସେମାନଙ୍କର କୌଣସି ସମୟରେ ବୃଦ୍ଧାବସ୍ଥା ଆସେ ନାହିଁ । ସେମାନଙ୍କର ଶରୀରରୁ କଫ ସ୍ୱେଦ ଆଦି କୌଣସି ପ୍ରକାର ମଳ ବାହାରେ ନାହିଁ । ବରଂ ସଦୈବ ଶରୀରରୁ ପଦ୍ମଗନ୍ଧର ସଞ୍ଚାର ହେଉଥାଏ । ସେମାନେ କଦାପି କାମକ୍ରୀଡ଼ାରେ ତୃପ୍ତ ହୁଅନ୍ତି ନାହିଁ । ସେମାନେ ସର୍ବଦା ଯୌବନ ମଦରେ ଉନ୍ମତ୍ତ ହୋଇ ସଙ୍ଗୀତର ମୂର୍ଚ୍ଛନା ତୋଳି ଏଣେତେଣେ ବିହଙ୍ଗୀବତ୍ ବିଚରଣ କରୁଥାନ୍ତି । ବନ ଉଦ୍ୟାନ, ସରୋବର ତଟ ଦେଶମାନଙ୍କରେ ସ୍ୱେଚ୍ଛାବିହାର କରୁଥାନ୍ତି ।

ଦିନେ ଗୋଟିଏ ବିଦ୍ୟାଧର କନ୍ୟା ଏକ ସୁନ୍ଦର ସରୋବର ତଟରେ ଏକାକୀ ରହିଥିଲ । ସେ ତା'ର ସୌନ୍ଦର୍ଯ୍ୟର ଅନୁପମ ଛଟାରେ ସେହି ବନ୍ୟ ପ୍ରଦେଶ ଆଲୋକିତ

Digitized by srujanika@gmail.com

କରୁଥିଲା । ହାତରେ କମନୀୟ କମଳ ପୁଷ୍ପର ମାଳାଧରି ସେ ଏପରି ମନେ ହେଉଥିଲା ଯେପରି କାମଦେବ ବରହଣୀ ରତିଦେବୀ । ତା ହାତରେ ସେଇ ଦିବ୍ୟ ପୁଷ୍ପର ମାଳା ଥିଲା । ତାର ସୁଗନ୍ଧ ଲୋଭରେ ଅନେକ ଭ୍ରମର ତା'ର ଚତୁଃପାର୍ଶ୍ୱରେ ଘୁରିବୁଲୁଥିଲେ । ପ୍ରସ୍ଫୁଟିତ ପଦ୍ମ ଭ୍ରମରେ ଭ୍ରମରମାନେ ତାର ମୁଖ କମଳରେ ବସିବାକୁ ଉଦ୍ୟତ ହେଉଥିଲେ । ସେ ସେମାନଙ୍କୁ ଲୀଳାରେ ବାରଣ କରୁଥିଲା । ସେହି ମାଳାରେ ଏପରି ମଧୁର ମନୋଜ୍ଞ ସୁଗନ୍ଧ ଥିଲା ଯେ ତାର ସଞ୍ଚାର ଯୋଜନ ବ୍ୟାପୀ ହେଉଥିଲା । ଦୈବ ଯୋଗରେ ସେହି ସୁଗନ୍ଧରେ ଆକର୍ଷିତ ହୋଇ ମହର୍ଷି ଦୁର୍ବାସା ଆସି ସେଠାରେ ଉପସ୍ଥିତ ହେଲେ । ସେହି ବିଦ୍ୟାଧର କନ୍ୟାର ଅଙ୍ଗର ବର୍ଣ୍ଣ ଶୁଦ୍ଧ କାଞ୍ଚନ ସଦୃଶ ମନେ ଥିଲା । ରକ୍ତ କଚୁଳି ଉପରେ ସେ ନୀଳ ଶାଢ଼ୀ ପିନ୍ଧିଥିଲା । ସେ ମାଳା ଧରି ଏକାଗ୍ର ଚିତ୍ତରେ ଜଳକୁ ନିରେଖି ରହିଥିଲା । ସେ ସଜୀବ ସାକାର ଶ୍ରୀ ସଦୃଶ ଦେଖାଯାଉ ଥିଲା । ମୁନି ତା'କୁ ଦେଖିଲେ ମାତ୍ର ସେ ମୁନିଙ୍କୁ ଦେଖି ପାରି ନଥିଲା । ସେ ତା'ର ତନ୍ମୟତାରେ ମଜ୍ଜି ରହିଥିଲା । ସେହି ଅନବଦ୍ୟ ସୌନ୍ଦର୍ଯ୍ୟକୁ ଦେଖି ମୁନି ମନ୍ତ୍ରମୁଗ୍ଧ ଭଳି ତା'ର ସମୀପକୁ ଟାଣି ହୋଇ ଗଲେ । ତାଙ୍କର ଚିତ୍ତ ମଧ୍ୟ କିଞ୍ଚିତ ଚଞ୍ଚଳ ହୋଇ ଉଠିଲା । ସହସା ତା'ର ଧ୍ୟାନ ଭଙ୍ଗ ହେଲା । ପଛକୁ ଲେଉଟି ଦେଖିବା ମାତ୍ରକେ ଦୁର୍ବାସା ମୁନି ତାର ଆଖିରେ ପଡ଼ିଲେ । ଦୁର୍ବାସାଙ୍କୁ ଦେଖି ସେ ଶଙ୍କିଗଲା । ଭୟହେତୁ ତାର ସମସ୍ତ ପ୍ରସନ୍ନତା ବିଲୀନ ହୋଇଗଲା । ଭୟଭୀତା କୁରଙ୍ଗୀ ଭଳି ସେ ଥରିବାକୁ ଲାଗିଲା । ମୁନି ଅନୁଭବ କଲେ ଯେ ବାଳା ମୋତେ ଦେଖି ଅତ୍ୟନ୍ତ ଭୀତତ୍ରସ୍ତା । ତେଣୁ ସେ ତା'ର ଭୀତି ଲାଘବ କରିବା ନିମନ୍ତେ କହିଲେ, "ସୁନ୍ଦରୀ, ତମେ ଏ ମାଳା ଅତି ସୁନ୍ଦର କରିଛି । ଏହାର ସୁଗନ୍ଧ ମଧ୍ୟ ମନମୋହନକାରୀ । କଣ ଏ ମାଳା ତୁମେ ମୋତେ ଦେବ ?"

ମୁନିଙ୍କର ସରଳ କଥା ଶୁଣି କନ୍ୟାର ଭୟ ଅନେକ ପରିମାଣରେ ହ୍ରାସ ହେଲା । ସେ ମାଳାଟି ମୁନିଙ୍କୁ ଶ୍ରଦ୍ଧା ସହିତ ସମର୍ପିତ କରିଦେଲା । ଭକ୍ତି ପୂର୍ବକ ମୁନିଙ୍କର ଚରଣରେ ଭୂମିଷ୍ଠ ପ୍ରଣାମ କରି ସେଠାରୁ ଚଞ୍ଚଳପଦରେ ଚାଲିଗଲା । ମୁନିବର କୟକ୍ଷଣ ତାକୁ ଅନେଇ ରହିଲେ । ତା'ପରେ ପ୍ରକୃତିସ୍ଥ ହୋଇ ଚିତ୍ତବୃତ୍ତିକୁ ଆୟତ୍ତ କଲେ । ବିଦ୍ୟାଧରୀ ପ୍ରଦତ୍ତ ମାଳା ଆପଣା କଣ୍ଠରେ ବାନ୍ଧି ନେଲେ ଏବଂ ଆପଣାର ଅବଧୂତ ବୃତ୍ତିରେ ସେଠାରୁ ଗମନ କଲେ ।

ମୁନିବର ଆନନ୍ଦମଗ୍ନ ହୋଇ ଉନ୍ମତ୍ତ ପ୍ରାୟ ଯାଉଥିଲେ । ସେତେବେଳେ ତାଙ୍କ ଆଗରେ ଐରାବତାରୂଢ଼ ହୋଇ ଦେବରାଜ ଇନ୍ଦ୍ରଙ୍କୁ ଆସୁଥିବା ଦେଖିଲେ । ତାଙ୍କର ମସ୍ତକ ଉପରେ ଅମୃତସ୍ରାବୀ ଶ୍ୱେତଛତ୍ର ମଣ୍ଡିତ ହୋଇଥିଲା । ଅପ୍ସରା ଗନ୍ଧର୍ବମାନେ ତାଙ୍କର ଗୁଣକୀର୍ତ୍ତନ କରୁଥିଲେ । ତ୍ରୈଲୋକ୍ୟର ଶ୍ରୀ ସମ୍ପନ୍ନ ହୋଇ ଦେବରାଜ ଇନ୍ଦ୍ର ଐରାବତ ଉପରେ ବସିଥିଲେ । ଦୁର୍ବାସା ଦେବରାଜଙ୍କୁ ଦେଖିଲେ । ତାଙ୍କ ପ୍ରତି ସମ୍ମାନ

Digitized by srujanika@gmail.com

ପ୍ରଦର୍ଶନ କରିବା ଉଦ୍ଦେଶ୍ୟରେ ସେ ଆପଣା କଣ୍ଠରୁ ସେହି ମାଳା ଆଣି ତାଙ୍କ ଉପରକୁ ଫିଙ୍ଗି ଦେଲେ । ଦେବରାଜ ସେଥିପ୍ରତି ବିଶେଷ ଧ୍ୟାନ ଦେଲେ ନାହିଁ । ସେ ଭାବିଲେ, "ଅନେକ ଋଷି ମୁନି ମୋ ଆଗରେ ଠିଆ ହୋଇ ମୋର ସ୍ତୁତିପାଠ କରିଥାନ୍ତି, ପୁଷ୍ପମାଳ୍ୟ ଅର୍ପଣ କରନ୍ତି; ମୁଁ ସମସ୍ତ ଦେବତାମାନଙ୍କର, ଋଷି ଓ ମୁନିମାନଙ୍କର ତଥା ପ୍ରାଣୀମାନଙ୍କର ସ୍ୱାମୀ । ମୋତେ ଉପହାର ଦେବା ଓ ମୋର ସମ୍ମାନ କରିବା ସମସ୍ତଙ୍କର କର୍ତ୍ତବ୍ୟ । ଏପରି ଭାବି ସେ ସେଇ ମାଳାଟିକୁ କୌଣସି ମହତ୍ତ୍ୱ ଦେଲେ ନାହିଁ । ତାକୁ ଐରାବତର ମସ୍ତକ ଉପରେ ରଖିଦେଲେ ।

ହାତୀମାନଙ୍କର ସ୍ୱଭାବ ଯେ ସେମାନଙ୍କର ମସ୍ତକ ଉପରେ କିଛି ରଖାଯିବା ସଙ୍ଗେ ସଙ୍ଗେ ସେମାନେ ତାକୁ ଶୁଣ୍ଢରେ ଉଠେଇ ନିଅନ୍ତି । ଐରାବତ ମଧ୍ୟ ସେପରି କରି ତଳେ ପକେଇ ପାଦରେ ଦଳିଦେଲା । ହେ ପଶୁ ! ତାକୁ କେଉଁଭଳି ଜଣାଯିବ ଯେ ସେଇ ମାଳାରେ ମହର୍ଷିଙ୍କ ନିମନ୍ତେ ଏକ ମଧୁର ପ୍ରୀତିପୂର୍ଣ୍ଣ ଇତିହାସ ରହିଛି ।

ଦୁର୍ବାସା ମଧ୍ୟ ଦୁର୍ବାସା । ସେ ଇନ୍ଦ୍ରଙ୍କର ଏଭଳି ଅବିନୟ ଓ ଉପେକ୍ଷା କପରି ସହନ କରିବେ । ସେ କ୍ରୋଧ ପୂରିତ ହେଲେ ଏବଂ ଅଭିଶାପ ଦେଲେ, "ଇନ୍ଦ୍ର, ତୋର ଏ ଶ୍ରୀ ନେଇ ଅଭିମାନ ଅନେକ ବଢିଯାଇଛି । ଯା, ତୋ'ର ସମସ୍ତ ଶ୍ରୀ ନଷ୍ଟ ହୋଇଯିବ । କେବଳ ତୋର ନୁହେଁ, ତ୍ରୈଲୋକ୍ୟର ଶ୍ରୀ ମଧ୍ୟ ନଷ୍ଟ ହୋଇ ଯାଉ !"

ଏତିକ ଶୁଣିବା ମାତ୍ରକେ ଇନ୍ଦ୍ରଙ୍କର ସବୁଗର୍ବ ଭାଙ୍ଗିଗଲା । ସେ ଐରାବତ ଉପରୁ ଡେଇଁ ପଡ଼ି ମହର୍ଷିଙ୍କର ପାଦତଳେ ଲୋଟିଗଲେ ।

ଆପଣା ଚରଣ ତଳେ ଶଚୀପତି ଦେବେନ୍ଦ୍ରଙ୍କୁ ଲୋଟିଥିବା ଦେଖି ଶୁଖିଲା ହସ ହସି ମହର୍ଷି ଦୁର୍ବାସା କହିଲେ, "ଶଚୀପତି, ଦେଖ ମୁଁ ଗୁଡ଼ ନୁହେଁ ଯେ ପିମ୍ପୁଡ଼ି ଖାଇଯିବେ । ଅନ୍ୟ ମୁନିମାନଙ୍କର ହୃଦୟଭଳି ମୋର ହୃଦୟ ନୁହଁ ଯେ ପାଦରେ ପଡ଼ିଗଲେ ତରଳିଯିବ । ତୁମେ ଯେତେ କାକୁତି ମିନତି କଲେ ବି ମୋ ପାଟିରୁ ଯାହା ବାହାରି ଗଲା, ତାକୁ ବଜ୍ରଲେପ ବୋଲି ମନେକର । ମୋର ବାଣୀ ପଥର ଉପରେ ଅଙ୍କିତ ରେଖାଭଳି । ତୁ ଯେଉଁଭଳି ଐଶ୍ୱର୍ଯ୍ୟ ମତ୍ତ ହୋଇଛୁ, ତା'ର ଏକମାତ୍ର ଏହାହିଁ ଔଷଧ । ଯାଆ, ଆପଣାର କର୍ମଫଳ ଭୋଗକର ।

ଏହା କହି ଇନ୍ଦ୍ରଙ୍କର ଉତ୍ତର ଅପେକ୍ଷା ନକରି ମୁନି ସେଠାରୁ ଚାଲି ଗଲେ । ଶ୍ରୀହୀନ ହୋଇ ଇନ୍ଦ୍ର ସ୍ୱର୍ଗକୁ ଲେଉଟି ଆସିଲେ । ସେଠାରେ ତାଙ୍କୁ ସବୁକିଛି ତେଜହୀନ ମନେ ହେଲା । ସ୍ୱର୍ଗର ଅପ୍ସରାମାନେ କାନ୍ତିହୀନ, କୁରୂପା ମନେ ହେଲେ । ଯାହାକୁ ଦେଖ

Digitized by srujanika@gmail.com

ସେ ଶ୍ରୀ, ତେଜ, ଐଶ୍ୱର୍ଯ୍ୟ, ପ୍ରଭା ତଥା କାନ୍ତି ବିହୀନ ମନେ ହେଲା । ଇନ୍ଦ୍ରଙ୍କର ସମସ୍ତ ଆନନ୍ଦ ନଷ୍ଟ ହୋଇଗଲା ଏବଂ ସେ ସର୍ବଦା ଚିନ୍ତିତ ରହିବାକୁ ଲାଗିଲେ ।

ଅସୁରମାନଙ୍କୁ ଶୁକ୍ରାଚାର୍ଯ୍ୟଙ୍କ ନିକଟରୁ ସମସ୍ତ ସମାଚାର ପ୍ରାପ୍ତ ହେଲା । ଏହି ସୁଖଦ ସମ୍ବାଦ ଶୁଣି ସେମାନେ ରୋମାଞ୍ଚିତ ହେଲେ । ତାଙ୍କର ପ୍ରସନ୍ନତାର ସୀମା ରହିଲା ନାହିଁ । ତୁରନ୍ତ ସେମାନେ ସେନା ସଜ୍ଜିତ କରି ସ୍ୱର୍ଗ ଆକ୍ରମଣ କଲେ । ଶ୍ରୀହୀନ ସୁରମାନେ ଅସୁରମାନଙ୍କର ସମ୍ମୁଖୀନ ହେଲେ ମାତ୍ର ସେମାନଙ୍କର ଆଦୌ ଉତ୍ସାହ ନଥିଲା । ସେମାନେ ଅସୁରମାନଙ୍କର ପ୍ରହାର ସହନ କରିପାରିଲେ ନାହିଁ ଏବଂ ରଣ ଭୂମିରେ ମରି ପଡିଲେ । ଯଦି କୌଣସି ଅସୁର ମରୁଥିଲା ତାକୁ ଶୁକ୍ରାଚାର୍ଯ୍ୟ ଆପଣାର ସଞ୍ଜୀବନୀ ବିଦ୍ୟାବଳରେ ଜୀବିତ କରି ଦେଉଥିଲେ । ମାତ୍ର ଯେଉଁ ଦେବତା ମରୁଥିଲେ ସେମାନେ ମରି ରହୁଥିଲେ । ପୁନଶ୍ଚ ବଞ୍ଚି ଉଠୁ ନଥିଲେ । ଏହା ଦେଖି ଇନ୍ଦ୍ରଙ୍କର ସାହସ ରହିଲା ନାହିଁ । ସେ ଯୁଦ୍ଧକ୍ଷେତ୍ରରୁ ପଳାୟନ କଲେ । ତାଙ୍କୁ ପଳାୟନ କରୁଥିବା ଦେଖି ଦେବତାମାନେ ମଧ୍ୟ ପଳାୟନ କଲେ । ବିଜୟ ଅସୁରମାନଙ୍କର ହେଲା । ଅସୁରମାନେ ସ୍ୱର୍ଗ ଅଧିକାର କଲେ । ଦେବତାମାନେ ଶ୍ରୀହୀନ ହୋଇ ଏଣେତେଣେ ବେଶ ପରିବର୍ତ୍ତନ କରି ପୃଥିବୀରେ ବିଚରଣ କରିବାକୁ ଲାଗିଲେ । ସେମାନେ ଦୁଃଖରେ ଯେନତେନ ପ୍ରକାରେଣ ସମୟ କାଟିବାକୁ ଲାଗିଲେ ।

ଯେତେବେଳେ ଶ୍ରୀ ହିଁ ରହିଲା ନାହିଁ, ମଙ୍ଗଳ କୁଆଡୁ ଆସିବ ! ଯଦି ମଙ୍ଗଳ ନାହିଁ, ଉତ୍ସବ କିପରି ହେବ ? ଯଦି ଉତ୍ସବ ହେବନାହିଁ, ତା'ହେଲେ ଯଜ୍ଞାଦି ଅନୁଷ୍ଠାନରେ ଉତ୍ସାହ କିପରି ଆସିବ ? ଯଦି ଯାଗ ଯଜ୍ଞାଦି ହେବନାହିଁ, ତା'ହେଲେ ସଂସାରର କ୍ଷେମ କାହିଁ ?

ସର୍ବତ୍ର ଯଜ୍ଞ ବନ୍ଦ ହୋଇଗଲା । ଦେବତାମାନଙ୍କର ତାହାହିଁ ତ ଆହାର । ଅଗ୍ନିରେ ଦେବତାମାନଙ୍କର ଉଦ୍ଦେଶ୍ୟରେ ଯେଉଁ ହବନୀୟ ଦ୍ରବ୍ୟ, ବେଦମନ୍ତ୍ର ସହିତ ଯେଉଁ ଯେଉଁ ଦେବତାମାନଙ୍କ ଉଦ୍ଦେଶ୍ୟରେ ବିଧିପୂର୍ବକ ଅର୍ପିତ ହୋଇଥାଏ, ସେହି ଦ୍ରବ୍ୟମାନଙ୍କୁ ଅଗ୍ନି ସେହି ସେହି ଦେବତାମାନଙ୍କ ନିକଟରେ ପହଞ୍ଚାଇ ଦେଇଥାନ୍ତି । ସେଥିରେ ଦେବତାମାନେ ତୃପ୍ତିଲାଭ କରନ୍ତି । ବର୍ତ୍ତମାନ ଯେତେବେଳେ ହବନ ହିଁ ବନ୍ଦ, ତାହେଲେ ଅଗ୍ନି କଣ ବା ପହଁଚାଇବେ ? ଇନ୍ଦ୍ରାଦି ଦେବତାମାନେ ଅଭୁକ୍ତ ରହିବାକୁ ଲାଗିଲେ । ସମସ୍ତ ପ୍ରାଣୀ ଶ୍ରୀହୀନ ହୋଇଗଲେ । ଯଜ୍ଞାଦି କର୍ମର ସର୍ବଥା ଉଚ୍ଛେଦନ ହୋଇଗଲା ।

ଶ୍ରୀ ଶୁକଦେବ କହୁଛନ୍ତି, "ରାଜନ୍, ଯେତେବେଳେ ସମ୍ପୂର୍ଣ୍ଣ ସଂସାରର ଏଭଳି ଦଶା ହେଲା ଏବଂ ଦେବତାମାନେ ଉପବାସରେ ରହିବାକୁ ଲାଗିଲେ, ସେତେବେଳେ ସମସ୍ତେ ମିଶି ସଭାକଲେ । ଇନ୍ଦ୍ର, ବରୁଣ, କୁବେର, ଯମ ତଥା ଅନ୍ୟାନ୍ୟ ଦେବଗଣ ଏକତ୍ରିତ

Digitized by srujanika@gmail.com

ହେଲେ । ଅନେକବେଳପର୍ଯ୍ୟନ୍ତ ବାଦବିବାଦ ଚାଲିଲା । ପ୍ରଶ୍ନ ହେଲା, କଣ କରାଯିବ ? କିଏ କ'ଣ କହିଲା । ଶେଷରେ କୌଣସି ନିଷ୍ପତ୍ତିରେ ପହଞ୍ଚି ନପାରୁଥିବା ଦେଖି ଇନ୍ଦ୍ର କହିଲେ, "ଭାଇମାନେ, ଏପରି କାର୍ଯ୍ୟ ହେବ ନାହିଁ । ଆମେମାନେ ସମସ୍ତେ ଚାଲ ଲୋକପିତାମହ ଭଗବନ୍ ବ୍ରହ୍ମାଙ୍କ ନିକଟକୁ ଯିବା ! ସେ ଯେଉଁଭଳି ଉପାୟ କହିବେ ଆମେ ସମସ୍ତେ ସେପରି କାର୍ଯ୍ୟ କରିବା । ଏକଥା ସମସ୍ତଙ୍କୁ ଭଲ ଲାଗିଲା । ତେଣୁ ସଭିଏଁ ମିଶି ସୁମେରୁର ମଧ୍ୟ ଶିଖରରେ ସ୍ଥିତ ବ୍ରହ୍ମାଙ୍କର ସଭାକୁ ଯିବାକୁ ଉଦ୍ୟତ ହେଲେ ।

## ଛପ୍ପୟ

ମାଲ୍ ଧାରୀ କଣ୍ଠନ ମାଁହ ମୁନି ମଗନ ଚଲେଁ ମଗ ।
ଚିତବତ ଇତ ଉତ ମଉ ଅଟପଟେ ପରେଁ ପନ୍ଥ ପଗ ॥
ମଗ ମହଁ ନିରଖେ ଇନ୍ଦ୍ର କଣ୍ଠନି ତେଁ ମାଲ ନିକାରୀ ।
ଫେଁକୀ ସୁରପତି ଉପରି ଗର୍ବ ତେଁ ଇନ୍ଦ୍ର ନ ଧାରୀ ॥
ଐରାବତ ମସ୍ତକ ଧରୀ, କୁଚଲୀ ପୈରନି ତାସୁ ଜବ ।
ଦୁର୍ବାସା କ୍ରୋଧିତ ଭୟେ, ଶାପ ଇନ୍ଦ୍ର କୂଁ ଦୟୋ ତବ ॥

—*—

Digitized by srujanika@gmail.com

# ସୁରମାନଙ୍କ ସହିତ ବ୍ରହ୍ମାଙ୍କର ହରି-ଚରଣ-ଶରଣ

ଇତ୍ୟାଭାଗମ୍ୟ ସୁରାନ୍ ବେଧାଃ ସହ ଦେବୈରରିନ୍ଦମ୍ ।
ଅଜିତସ୍ୟ ପଦଂ ସାକ୍ଷାଜ୍ଜଗାମ ତମସଃ ପରମ୍ ॥
ତତ୍ରାଦୃଷ୍ଟସ୍ୱରୂପାୟ ଶ୍ରୁତପୂର୍ବାୟ ବୈ ବିଭୋ ।
ସ୍ତୁତିମବ୍ରୂତ ଦୈବୀଭିର୍ଗୀର୍ଭିସ୍ତ୍ୱବହିତେନ୍ଦ୍ରିୟଃ ॥

(ଶ୍ରୀ ଭା. ୮ । ୫ । ୨୬, ୨୭)

## ଛପ୍ପୟ

ଜା ତେରୀ ଶ୍ରୀ ନଷ୍ଟ ହୋହି ତୀନୋ ଲୋକନକୀ ।
ଶାପ ହୋତ ହୀ କାନ୍ତି ପରୀ ଫୀକୀ ଦେବନ କୀ ॥
ଅସୁରନ ଘେରେ୍ୟା ସ୍ୱର୍ଗ ଦେବତା ମାର ଭଗାୟେ ।
ରାଜ୍ୟହୀନ ଶ୍ରୀ ଭ୍ରଷ୍ଟ ଦୁଃଖିତ ସୁର ବିଧି ଢିଁଗ ଆୟେ ॥
ବ୍ରହ୍ମା ବାବା ସବନ ସଁଗ, କ୍ଷୀର ସିନ୍ଧୁକେ ଢିଁଗ ଗୟେ ।
ଲକ୍ଷ୍ମୀପତି ସର୍ବେଶ କୀ କରି ବିନତୀ ଗଦଗଦ ଭୟେ ॥

ପୁରୁଷ ଯେତେବେଳେ ଶ୍ରୀହୀନ ହୋଇଥାଏ, ଯେତେବେଳେ ସେ ଦର୍ପରେ ମୁଣ୍ଡଟେକି ସାମନାରେ ଥିବା କାହାକୁ ହେଲେ କିଛି ବୋଲି କିଛି ମନେ କରେନାହିଁ । ସେ ଯେତେ-ବେଳେ ବିନୀତ ହୋଇଯାଏ, ସେତେବେଳେ ଆସି ସମସ୍ତ ସଦ୍‌ଗୁଣ ତାକୁ ବରଣ କରି ନିଅନ୍ତି । ଯେଉଁ ମସ୍ତକ ଦେବତା, ବ୍ରାହ୍ମଣ, ଶ୍ରେଷ୍ଠ ତଥା ଉତ୍ତମ ପୁରୁଷମାନଙ୍କ ଆଗରେ ନତ ହୁଏ ନାହିଁ, ସେ ଦୁର୍ଦ୍ଦଶାଗ୍ରସ୍ତ ହେବାହିଁ ତା' ପାପର ପ୍ରାୟଶ୍ଚିତ୍ତ ।

Digitized by srujanika@gmail.com

ଗୋଟିଏ କଥା ଅଛି । ଜଣେ ଅତି ଧନୀ ମହାଜନ ଆପଣାର ଅନେକ ସେବକଙ୍କ ସହିତ ନୌକାରେ ନଦୀ ପାର ହେଉଥିଲେ । ସେହି ନୌକାରେ ଜଣେ ମୁଣ୍ଡିତ ମସ୍ତକ ଗୈରିକ-ବସ୍ତ୍ର-ପରିହିତ ସନ୍ନ୍ୟାସୀ ମଧ୍ୟ ଯାତ୍ରା କରୁଥିଲେ । ସନ୍ନ୍ୟାସୀ ଗୌରବର୍ଣ୍ଣ, ବିଶାଳ ମସ୍ତକ ଓ ତାଙ୍କର ମୁଣ୍ଡିତ ମସ୍ତକ ଦର୍ପଣ ଭଳି ଚମକୁ ଥିଲା । ସେ ନୌକାରେ ନୀରବରେ ମଥାନତ କରି ବସିଥିଲେ । ଗୋଟିଏ ବିଦୂଷକ ମହାରାଜଙ୍କୁ ପ୍ରସନ୍ନ କରିବା ଉଦ୍ଦେଶ୍ୟରେ ନାନା ପ୍ରକାର ଭଙ୍ଗୀ ଓ ଅଭିନୟ କରୁଥିଲା । ଲୋକଙ୍କୁ ହସେଇବା ପାଇଁ ସେ ତା'ର ଯୋତା ନେଇ ସନ୍ନ୍ୟାସୀଙ୍କ ମସ୍ତକରେ ଧୀରେ ଧୀରେ ମାରିଦେଲା, ତାହା ଦେଖି ଲୋକେ ଖିଲ୍‌ଖିଲ୍ ହସି ଥିଲେ ।

ସେ ଧନୀ ମହାଜନଙ୍କୁ ସେକଥା ଭଲ୍ ଲାଗିଲା ନାହିଁ । ସେ ସେହି ବିଦୂଷକକୁ ଗାଳି ଦେଲେ ଏବଂ ସନ୍ନ୍ୟାସୀଙ୍କୁ ନିରେଖି ଦେଖିଲେ । ଭଲକରି ସେ ତାଙ୍କୁ ଚିହ୍ନିଗଲେ ଏବଂ ତାଙ୍କର ପାଦତଳେ ପଡ଼ି ପ୍ରଣାମ କରି କହିଲେ, "ମହାରାଜ, ଆପଣ ଏ ବିଦୂଷକର ଧୃଷ୍ଟତାକୁ କ୍ଷମା ଦିଅନ୍ତୁ । ମୁଁ ଆପଣଙ୍କୁ ଏଇନେ ଚିହ୍ନୁଛି । ଆପଣ ଅମୁକ ଦେଶର ରାଜା । ଥରେ ମୁଁ ଆପଣଙ୍କ ରାଜ୍ୟକୁ ବଣିଜ କରିବାପାଇଁ ଯାଇଥିଲି । ଆପଣ ମୋତେ ଅନେକ ସହାୟତା ଦେଇଥିଲେ ।"

ଏହାଶୁଣି ସେ ମହାତ୍ମା କହିଲେ, "ସେଠ୍‌ଜୀ, ଏଥିରେ ଖରାପ କାହିଁକି ଭାବିବ ? ଏ ତ ମୋର ଉପକାର କରିଛି । ଏ ମସ୍ତକ ଯେତେବେଳେ ସିଂହାସନରେ ବସୁଥିଲା କାହାର ଆଗରେ ବି ନଇଁ ନଥିଲା । ଯେ କାହା ଆଗରେ ନଇଁ ନାହିଁ, ଯୋତା ଖାଇବାହିଁ ତା'ର ପ୍ରାୟଶ୍ଚିତ୍ତ । ଶ୍ରୀର ମଦରେ ଅନ୍ଧ ପୁରୁଷ ପକ୍ଷରେ ଦରିଦ୍ର ହିଁ ପରମାଞ୍ଜନ । ଏଇନେ ମୁଁ ସାଧୁସନ୍ଥଙ୍କୁ ନତ ହୋଇ, ପ୍ରାଣୀମାନଙ୍କୁ ପ୍ରଣାମ କରି, ଭଗବାନଙ୍କର ସ୍ତୁତିକରି ସେହି ପାପର ପ୍ରାୟଶ୍ଚିତ୍ତ କରୁଛି ।"

ଶ୍ରୀ ଶୁକଦେବ କହୁଛନ୍ତି, "ରାଜନ୍, ଶ୍ରୀହୀନ ହୋଇଥିବା ଦେବଗଣ ଯେତେବେଳେ ପରସ୍ପର ମିଶି ମଧ୍ୟ ଆପଣାର ଉଦ୍ଧାର ନିମନ୍ତେ ଚିନ୍ତା କରି ପାରିଲେ ନାହିଁ, ସେତେବେଳେ ସୁମେରୁ ଶିଖର ସ୍ଥିତ ବ୍ରହ୍ମାଙ୍କର ସଭାରେ ଉପସ୍ଥିତ ହେଲେ । ବ୍ରହ୍ମାଙ୍କର ମୁଖ୍ୟ ନିବାସ ତ ବ୍ରହ୍ମଲୋକ, ମାତ୍ର ଦେବତାମାନଙ୍କର ତଥା ଜନଲୋକର ପ୍ରାର୍ଥନାପତ୍ର ଉପରେ ନିର୍ଣ୍ଣୟ କରିବାକୁ ତଥା ପ୍ରଜାମାନଙ୍କର ସୁଖ ଦୁଃଖ ଶୁଣିବାକୁ ସେ ଧ୍ରୁବଲୋକ ତଳେ ଥିବା ସୁମେରୁ ଶିଖରରେ ଆସି ସଭାରେ ବସିଥାନ୍ତି । ସେହିଠାରେ ସେ ଦେବତାମାନଙ୍କର ସୁଖ ଦୁଃଖ ବିଷୟରେ ଶୁଣିଥାନ୍ତି । ଦେବତାମାନେ ସେହି ସଭାରେ ପହଞ୍ଚି ପ୍ରଥମେ ଲୋକ ପିତାମହଙ୍କର ଚରଣରେ ସାଷ୍ଟାଙ୍ଗ ପ୍ରଣିପାତ କରି ପୁନଃ ଆଦ୍ୟନ୍ତ ସେମାନଙ୍କର ଦୁଃଖ ଗାଥା ଶୁଣେଇଲେ ।

Digitized by srujanika@gmail.com

ବ୍ରହ୍ମା ଦେଖିଲେ, ଇନ୍ଦ୍ର, ବରୁଣ, କୁବେର ଆଦି ସବୁ ଦେବତାଗଣ କାନ୍ତିହୀନ ନିଃସତ୍ତ୍ୱ ତଥା ତେଜ ରହିତ ହୋଇଥିଲେ, ଏବଂ ତାଙ୍କର ଏ ଦୁର୍ଦ୍ଦଶା ଦେଖି ସେ ମଧ୍ୟ ଅତ୍ୟନ୍ତ ଦୁଃଖିତ ହେଲେ । ଦେବତାମାନଙ୍କର ରାଜଛତ୍ର, ଧନ ଐଶ୍ୱର୍ଯ୍ୟ ସବୁ ଅସୁରମାନେ ଲୁଟି ନେଇଥିଲେ । ସୁରମାନେ ପରାଭୂତ ଓ ଅସୁରମାନଙ୍କର ବୃଦ୍ଧି ହେଉଥିଲା । ସେ ଏକାଗ୍ରଚିତ୍ତରେ ପରମ ପୁରୁଷ ଭଗବାନ ଶ୍ରୀମନ୍ ନାରାୟଣଙ୍କର ଧ୍ୟାନ କଲେ ଓ ସମସ୍ତଙ୍କୁ ସମ୍ବୋଧିତ କରି କହିଲେ, "ଦେବଗଣ, ତୁମେମାନେ ମୋଠାରୁ କ'ଣ ଚାହୁଁଛ ? ମୁଁ ତୁମ-ମାନଙ୍କର କେଉଁ ପ୍ରିୟକାର୍ଯ୍ୟ କରିବି ?"

ଦେବତାମାନେ କହିଲେ, "ଭଗବାନ୍, ଆମେ ଅତି ବିପଦଗ୍ରସ୍ତ ହୋଇଛୁ । ଆମକୁ ଏ ବିପତ୍ତିରୁ ମୁକ୍ତ ହେବାର କୌଣସି ଉପାୟ ଦିଶୁନାହିଁ । ଆପଣ ତିନିଲୋକର ସ୍ୱାମୀ । ସମ୍ପୂର୍ଣ୍ଣ ବ୍ରହ୍ମାଣ୍ଡର ଅଧୀଶ୍ୱର । ଆପଣ ନିଗ୍ରହ ଅନୁଗ୍ରହ କରିବାକୁ ସମର୍ଥ । ତେଣୁ ଆପଣ ଆମମାନଙ୍କୁ ଏ ବିପତ୍ତିରୁ ଉଦ୍ଧାର କରନ୍ତୁ ବୋଲି ଆମେମାନେ ଆପଣଙ୍କର ଶରଣାପନ୍ନ ହୋଇଛୁ ।"

ଏହା ଶୁଣି ହସି ହସି ବ୍ରହ୍ମା ମେଘ ଗମ୍ଭୀର ବାଣୀରେ କହିଲେ, "ଦେବଗଣ, ତୁମେମାନେ ଭ୍ରମବଶତଃ ମୋତେ ଜଗତର କର୍ତ୍ତା, ବ୍ରହ୍ମାଣ୍ଡର ସ୍ୱାମୀ ମନେ କରୁଛ । ମୁଁ କିମ୍ବା ଶିବ କିମ୍ବା ତୁମ୍ଭେମାନେ ସଭିଏଁ ଏବଂ ଅସୁର, ରାକ୍ଷସ, ମନୁଷ୍ୟ, ତିର୍ଯ୍ୟକ୍, ବୃକ୍ଷ ତଥା ସ୍ୱେଦଜ ଆଦି ଯେତେଯେତେ ଜୀବ ଅଛନ୍ତି, ସମସ୍ତେ ସେହି ପୁରୁଷାବତାର ପ୍ରଭୁଙ୍କର ଅଂଶମାତ୍ରରେ ନିର୍ମିତ । ତେଣୁ ମୋର ଶରଣାଗତ ହୋଇ କୌଣସି କାର୍ଯ୍ୟ ହେବ ନାହିଁ । ଆମେ ସମସ୍ତେ ଏକତ୍ର ସେହି ପରମ ପୁରୁଷଙ୍କର ଶରଣାପନ୍ନ ହେବା ।

ଦେବତାମାନେ କହିଲେ, "ଭଗବନ୍, ଶ୍ରୀହରି ତ ସମଦର୍ଶୀ । ତାଙ୍କପାଇଁ ଦେବତା-ମାନେ ଯେଉଁପରି ଅସୁରମାନେ ମଧ୍ୟ ସେହିପରି । ଯଦି ସ୍ୱର୍ଗରେ ଅସୁରମାନଙ୍କ ଆଧିପତ୍ୟ ରହେ, ତା'ହେଲେ ଶ୍ରୀହରିଙ୍କର ବା କ'ଣ ଆପତ୍ତି ହେବ ? ତାଙ୍କର ଇଚ୍ଛା ନଥିଲେ କ'ଣ ଅସୁରମାନେ ଆମକୁ ଜିଣିପାରନ୍ତେ ।"

ଏହା ଶୁଣି ବ୍ରହ୍ମା କହିଲେ, "ତୁମେ ଯାହା କହୁଛ ଯଥାର୍ଥ । ତାଙ୍କ ଦୃଷ୍ଟିରେ କେହି ବଧ ଲୁହନ୍ତି କିମ୍ବା କେହି ରକ୍ଷାଯୋଗ୍ୟ ନୁହନ୍ତି ଏବଂ କେହି ଉପେକ୍ଷଣୀୟ ନୁହେଁ । ତଥାପି ମଧ୍ୟ ସଂସାରର ଉତ୍ପତ୍ତି, ସ୍ଥିତି ଏବଂ ପ୍ରଳୟ ନିମନ୍ତେ ସେ ସମୟାନୁସାରେ କ୍ରମଶଃ ରଜୋଗୁଣ, ସତ୍ତ୍ୱଗୁଣ ଓ ତମୋଗୁଣ ସ୍ୱୀକାର କରନ୍ତି । ସୃଷ୍ଟି କରିବାର ଆବଶ୍ୟକତା ଆସିଲେ ସେ ମୋ ମଧ୍ୟରେ, ମୋର ଅଂଶଭୂତ ପ୍ରଜାପତି, ମନୁ ଏବଂ ଋଷିମାନଙ୍କ ମଧ୍ୟରେ ସୃଜନ ଶକ୍ତି ପ୍ରଦାନ କରନ୍ତି । ଯେତେବେଳେ ସୃଷ୍ଟିର ସ୍ଥିତି ରକ୍ଷା କରିବା ଆବଶ୍ୟକ ହୁଏ, ସେତେବେଳେ ମନୁ-ପୁତ୍ରମାନଙ୍କ ମଧ୍ୟରେ, ଅନ୍ୟ ରାଜାମାନଙ୍କୁ, ଦେବତାମାନଙ୍କ ମଧ୍ୟରେ ଆପଣାର ଶକ୍ତି ସଞ୍ଚାର କରି ତା'ର ବୃଦ୍ଧି ଘଟାଇଥାନ୍ତି । ଅତ୍ୟାବଶ୍ୟକ କାଳରେ ସ୍ୱୟଂ ଅବତୀର୍ଣ୍ଣ ହୋଇଥାନ୍ତି

Digitized by srujanika@gmail.com

ଯେତେବେଳେ ତାଙ୍କର ପ୍ରଳୟ କରିବାର ଇଚ୍ଛା ହୁଏ, ସେ ରୁଦ୍ରରୂପ ଧାରଣ କରନ୍ତି । ଯକ୍ଷ, ରାକ୍ଷସ, ଭୂତ, ପ୍ରେତ, ପିଶାଚ, ଜ୍ୱର, ରୋଗ. ଅନାବୃଷ୍ଟି ଆଦି ରୂପରେ ଏହି ସୃଷ୍ଟିର ସଂହାର କରନ୍ତି । ଆବଶ୍ୟକ କ୍ଷେତ୍ରରେ ଅଭିମାନ ଗର୍ବର ଆନୁପାତିକତାରେ ସେ ମଝିରେ ମଝିରେ କେତେବେଳେ ଅସୁରଙ୍କର ତ କେତେବେଳେ ଦେବତାମାନଙ୍କର ବଳ ବୃଦ୍ଧି କରନ୍ତି ।”

ଦେବତାମାନେ କହିଲେ, “ତା’ହେଲେ ଭଗବନ୍, ଆଜିକାଲି ତ କାଳ ଅସୁର-ମାନଙ୍କର ଅନୁକୂଳ । ଭଗବାନ ସେଇମାନଙ୍କୁ ଆପଣାର ବଳ ପ୍ରଦାନ କରିଛନ୍ତି । ତେଣୁ ଦିନୁ ଦିନ ସେମାନଙ୍କର ଅଭ୍ୟୁଦୟ ଏବଂ ଆମର ପରାଭବ ହେଉଛି । ତ୍ରୈଲୋକ୍ୟର ଶ୍ରୀ ମଧ୍ୟ ଆମମାନଙ୍କୁ ପରିତ୍ୟାଗ କରିଛନ୍ତି ଏବଂ ଅସୁରମାନଙ୍କୁ ବରଣ କରିଛନ୍ତି । ଏଇନେ ଭଗବାନ କ’ଣ ଆମର ଗୁହାରି ଶୁଣିବେ ?”

ଏହା ଶୁଣି ବ୍ରହ୍ମା କହିଲେ, “ଦେଖ, ସବୁର ସମୟ ଆସେ । କାଳ ସ୍ୱରୂପ ଶ୍ରୀହରି ଅସମୟରେ କୌଣସି କାର୍ଯ୍ୟ କରନ୍ତି ନାହିଁ । ତୁମମାନଙ୍କର ଧନ ଐଶ୍ୱର୍ଯ୍ୟ ନିମନ୍ତେ ଅତ୍ୟଧିକ ଗର୍ବ ହୋଇଥିଲା । ଗର୍ବହାରୀ ଗୋବିନ୍ଦ ତୁମର ଗର୍ବ ଖର୍ବ କରିବା ନିମନ୍ତେ ତୁମକୁ ପରାଜିତ କରିଛନ୍ତି । ନ ହେଲେ ବର୍ତ୍ତମାନ ଅସୁରମାନଙ୍କର ବଢିବାର ସମୟ ନୁହେଁ । ଏହା ତ ପ୍ରାଣୀମାନଙ୍କର ଅଭ୍ୟୁଦୟ କାଳ । ସତ୍ତ୍ୱଗୁଣକୁ ସ୍ୱୀକାର କରି ପ୍ରଭୁ ସୃଷ୍ଟି ରକ୍ଷା ନିମନ୍ତେ ତତ୍ପର ହୋଇ ରହିଛନ୍ତି । ଏହା ତାଙ୍କର ପାଳନର କାଳ । ତୁମେମାନେ ତୁମର ଅପରାଧ ନିମନ୍ତେ ପ୍ରଭୁଙ୍କ ନିକଟରେ କ୍ଷମା ପ୍ରାର୍ଥନା କର । ସେ ତୁମକୁ ବିଜୟର କୌଣସି ନା କୌଣସି ମାର୍ଗ ଅବଶ୍ୟ ଦେବେ ।”

ଦେବତାମାନେ କହିଲେ, “ମହାଭାଗ, ଆପଣଙ୍କର ଯାହା ଆଜ୍ଞା । ଆମେ ତ ଆପଣଙ୍କର ଅଧୀନରେ ରହିଛୁ । ଆମକୁ ଆପଣ ଯାହା କରିବାକୁ କହିବେ ବିନା ବିଚାରରେ ଆମେ ତାହା ହିଁ କରିବୁ ।”

ଏହା ଶୁଣି ବ୍ରହ୍ମା କହିଲେ, “ମୋର ପରାମର୍ଶ ତ ଏଇଆ ହେବ ଯେ ଆମେ ସମସ୍ତେ ଏକତ୍ରିତ ହୋଇ ସେଇ ପରାତ୍ପର ପ୍ରଭୁ ସମଗ୍ର ଜଗତର ଗୁରୁ ଶ୍ରୀହରିଙ୍କର ଶରଣାପନ୍ନ ହେବା । ଯଦି ଆମେ ସର୍ବାନ୍ତ ଭାବରେ ତାଙ୍କର ଶରଣାପନ୍ନ ହେବା ତା’ହେଲେ ସେ ନିଶ୍ଚୟ ଆମର ଉଦ୍ଧାର କରିବେ । ଆମକୁ ଏହି ସଙ୍କଟରୁ ପରିତ୍ରାଣ କରିବେ । କାରଣ ସେ ଦେବତାମାନଙ୍କର ଶୁଭଚିନ୍ତକ ଓ ସୁହୃଦ । ସେ ଆମକୁ ତାଙ୍କର ଶରଣାଗତ ମନେକରି ଅବଶ୍ୟ ଆମର କଲ୍ୟାଣ କରିବେ ।”

ଶ୍ରୀ ଶୁକଦେବ କହୁଛନ୍ତି, “ରାଜନ୍ ଭଗବାନ ବ୍ରହ୍ମାଙ୍କର ଏ ପରାମର୍ଶ ସବୁରି ପସନ୍ଦ ହେଲା । ସମସ୍ତେ ତାଙ୍କର ପରାମର୍ଶ ଗ୍ରହଣ କଲେ । ସମର୍ଥନ କଲେ । ଏହାପରେ

Digitized by srujanika@gmail.com

ସମସ୍ତଙ୍କୁ ସାଙ୍ଗରେ ନେଇ ଲୋକ ପିତାମହ ବ୍ରହ୍ମା ଭଗବାନ୍ ଅଜିତଙ୍କର ଦିବ୍ୟ ସର୍ବୋତ୍ତମ ପରମ ଧାମ କ୍ଷୀରସାଗରକୁ ଗଲେ । ସେଠାରେ ପହଞ୍ଚି ମଧ୍ୟ ଅଜିତେନ୍ଦ୍ରିୟ ବିଷୟ ଲୋଲୁପ ପୁରୁଷକୁ ଭଗବାନଙ୍କର ଦର୍ଶନ ହୁଏନାହିଁ ।ଏଣୁ ସମସ୍ତେ ସାବଧାନ ହୋଇ ସମସ୍ତ ଇନ୍ଦ୍ରିୟମାନଙ୍କ ଉପରେ କର୍ତ୍ତୃତ୍ୱ ରଖି ସେହି ସର୍ବବ୍ୟାପକ ଶ୍ରୀହରିଙ୍କର ଦିବ୍ୟ ସ୍ତୋତ୍ର ପାଠକରି ସ୍ତୁତି କରିବାକୁ ଲାଗିଲେ ।''

ଶ୍ରୀ ସୂତ କହୁଛନ୍ତି, ''ହେ ମୁନିଗଣ, ଭଗବାନଙ୍କର ଯେଉଁ ଦିବ୍ୟସ୍ତୁତି ବ୍ରହ୍ମା କଲେ, ଯେଉଁଥିରେ ତାଙ୍କର ବିଶ୍ୱ ବିରାଟ ରୂପର ବର୍ଣ୍ଣନା ରହିଛି, ତାହା ଅତ୍ୟନ୍ତ ସୁନ୍ଦର । ତା'ର ଉଲ୍ଲେଖ ମୁଁ ଯଥାସ୍ଥାନରେ ପୁଣି କରିବି । ଆପଣ ଆଗାମୀ କଥା ଶ୍ରବଣ କରନ୍ତୁ । ଏହା ଶୁଣି ଶୌନକ କହିଲେ; ''ହେ ସୂତ, ଆପଣ ଉଚିତ କହୁଛନ୍ତି । ଏହା ତ ଆପଣଙ୍କର କଥନ ଶୈଳୀ । ହଁ ; ବ୍ରହ୍ମାଙ୍କର ସ୍ତୁତି ଶୁଣି ଭଗବାନ ଦୟାପରବଶ ହେଲେ ନା ନାହିଁ ? ଦେବତାଙ୍କୁ ଦର୍ଶନ ଦେଲେ ନା ନାହିଁ ?''

ଶ୍ରୀ ସୂତ ଏହାର ଉତ୍ତରରେ ଗଦଗଦ କଣ୍ଠରେ କହିଲେ, ''ଭଗବାନ ଦୟାସାଗର ଓ ପରମ କାରୁଣିକ । ତାଙ୍କର କେହି ମିହରେ ସ୍ତୁତି କଲେ ମଧ୍ୟ ସେ ପ୍ରସନ୍ନ ହୋଇଥାନ୍ତି । ବେଦଗର୍ଭ ବ୍ରହ୍ମାତ ଇନ୍ଦ୍ରିୟମାନଙ୍କ ଉପରେ ଜୟଲାଭପୂର୍ବକ ସମାହିତ ଚିତ୍ତରେ ଭଗବାନଙ୍କ ସ୍ତୁତି କରିଥିଲେ । ଏଣୁ ସେ ତ ନିଶ୍ଚୟ ଦର୍ଶନ ଲାଭ କରିବେ । ଭଗବାନ କେଉଁପରି ପ୍ରକଟିତ ହେଲେ, କେଉଁପରି ଦେବତାମାନଙ୍କର କଲ୍ୟାଣ ସାଧନ କଲେ, ତାହା ମୁଁ ଆପଣଙ୍କୁ କହିବି । ଆପଣ ସମାହିତ ଚିତ୍ତରେ ଏପ୍ରସଙ୍ଗ ଶ୍ରବଣ କରନ୍ତୁ ।''

## ଛପ୍ପୟ

ହେ ଅଚ୍ୟୁତ ! ଅଖିଲେଶ ଦୟା ଦେବନ ପୈ କୀଜୈ ।
ଦୁଖୀ ଦ୍ୱାର ପୈ ପରେ ଦୟାନିଧି ଦରଶନ ଦୀଜୈ ॥
ବିଭୋ ! ଭୟେ ଐଶ୍ୱର୍ଯ୍ୟହୀନ ତବ ଚରନନି ଆୟେ ॥
ରିପୁନି ସ୍ୱର୍ଗ ତେଁ ଭ୍ରଷ୍ଟ କରେ ହମ ମାରି ଭଗାୟେ ॥
ବିଧି ବିନତୀ ବିଶ୍ୱେଶ ସୁନି ତୁରତ ତହାଁ ପରକଟ ଭୟେ ।
ସୁରଗନ ହରି ଦରଶନ ଲହେ, ଅତି ପ୍ରସନ୍ନ ସବ ହ୍ୱୈ ଗୟେ ॥

—*—

Digitized by srujanika@gmail.com

# ଦେବତାମାନଙ୍କୁ ଭଗବାନଙ୍କର ପରାମର୍ଶ

ହନ୍ତ ବ୍ରହ୍ମନ୍ନହୋ ଶମ୍ଭୋ ହେ ଦେବା ମମ ଭାଷିତମ୍ ।
ଶୃଣୁତାବହିତାଃ ସର୍ବେ ଶ୍ରେୟୋ ବଃ ସ୍ୟାଦ୍ ଯଥା ସୁରାଃ ॥
ଯାତ ଦାନବଦୈତେୟୈସ୍ତାବତ୍ ସନ୍ଧିର୍ବିଧୀୟତାମ୍ ।
କାଲେନାନୁଗୃହୀତୈସ୍ତୈର୍ଯାବଦ୍ ବୋ ଭବ ଆତ୍ମନଃ ॥

(ଶ୍ରୀ ଭା. ୮।୬।୧୮-୧୯)

## ଛପ୍ପୟ

ସୁର ପ୍ରସନ୍ନ ଅତ ଭୟେ ବସ୍ତୁ କୀ କରଇଁ ଝାଁକୀ ।
କୀହ୍ନୀ ଗଦ୍‌ଗଦ ଗିରା ସବନ ମିଲି ବିନତୀ ବାଁ କୀ ॥
ହ୍ୱୈ ପ୍ରସନ୍ନ ଖିଲବାଡ଼ କରନ କୁଁ ବୋଲେ ନଟବର ।
ମମ ସୁର ସମ୍ମତ ସୁନୋ କରୋ ମିଲି କେ ସବ ସତ୍ୱର ॥
କଚ୍ଛ ଛୁପାବୈ ଅଙ୍ଗ ଜେୟାଁ, ତେୟାଁ ନିଜବଳ ଛୁପାଇ କେ ।
ଅସୁରନ ତୈଁ କଛୁ କାଲ କୁଁ, କରୋ ମିତ୍ରତା ଜାଇ କେ ॥

ସମସ୍ତେ ଜାଣନ୍ତି ଯେ ଭଗବାନ ରାମଚନ୍ଦ୍ର ସୀତାଙ୍କର ଉଦ୍ଧାର ଏବଂ ରାବଣାଦିଙ୍କର ସଂହାର ଋକ୍ଷ ମର୍କଟ ମାନଙ୍କର ସାହାଯ୍ୟରେ କରିଥିଲେ । ଯାଁ'ର ଭ୍ରୂକୁଟି ବିଳାସରେ ଅସଂଖ୍ୟ ବ୍ରହ୍ମାଣ୍ଡର ସୃଷ୍ଟି ହୋଇଥାଏ ଏବଂ ବିଲୀନ ହୋଇଥାଏ, ସେ କୌଣସି ବି କାର୍ଯ୍ୟରେ ଅନ୍ୟର ଅପେକ୍ଷା କାହିଁକି କରିବ ? ଯେ ସର୍ବଜ୍ଞ, ସର୍ବେଶ୍ୱର, ଯାଁ'ର ଇଚ୍ଛାବିନା ଗୋଟିଏ ପତ୍ର ମଧ୍ୟ ଦୋଳାୟିତ ହୁଏ ନାହିଁ, ତାଙ୍କର ଆଦ୍ୟଶକ୍ତି ଭଗବତୀ ଜଗଦମ୍ବାଙ୍କର ଉଦ୍ଧାର ଏ ଋକ୍ଷ ମର୍କଟ କଣ କରିବେ ? ମାତ୍ର ସେ ତ କୌତୁକ ପ୍ରିୟ ! ତାଙ୍କର ଯେତେବେଳେ

Digitized by srujanika@gmail.com

କ୍ରୀଡ଼ା କରିବାର ଇଚ୍ଛାହୁଏ, ସେତେବେଳେ ସେ ଏଭଳି ଅନେକ ଲୀଳା ରଚନା କରିଥାନ୍ତି । କାନ୍ଦିକାନ୍ଦି ସୁଗ୍ରୀବଙ୍କ ପାଖରେ ପହଞ୍ଚିଲେ । ମୋ ପ୍ରିୟାର ଠାବ କର ! ମୁଁ ତୁମର ସାହାଯ୍ୟ ଚାହୁଁଛି । ତା'ର ସନ୍ଦେହ ହେଲାରୁ ଆପଣା ବଳର ପରୀକ୍ଷା ଦେଲେ । ସବୁ ଦିଗରୁ ବାନର ଭଲ୍ଲୁକ ସଂଗ୍ରହ କଲେ । ଚାରିମାସ ପର୍ଯ୍ୟନ୍ତ କାନ୍ଦି କାନ୍ଦି ସୀତାଙ୍କ ବିରହରେ ଲୁହ ବୁହାଇ ସୁଗ୍ରୀବର ପ୍ରତୀକ୍ଷାରେ ଗୁମ୍ଫା ମଧ୍ୟରେ ନିବାସ କଲେ । ଏ ସବୁ ନରନାଟ୍ୟ ଭକ୍ତଙ୍କ ନିମନ୍ତେ ଭଗବାନ କରିଥାନ୍ତି । ଏହିପରି ଦେବକାର୍ଯ୍ୟକୁ ସ୍ୱୟଂ ସଂକଳ୍ପ ମାତ୍ରକରେ ସେ କରିବାକୁ ସମର୍ଥ, ମାତ୍ର କୁତୂହଳ ଜାତ କରାଇବାକୁ ସେ ସମୁଦ୍ର ମନ୍ଥନ ନିମନ୍ତେ ସମସ୍ତଙ୍କୁ ପ୍ରେରିତ କଲେ ।

ଶ୍ରୀ ଶୁକଦେବ କହୁଛନ୍ତି, "ରାଜନ୍, ଯେତେବେଳେ ଦେବତାମାନେ ପୂର୍ଣ୍ଣ ଭକ୍ତି ଭାବରେ ଆର୍ତ୍ତ ହୋଇ ଅଚ୍ୟୁତଙ୍କର ଶ୍ରଦ୍ଧାପୂର୍ବକ ସ୍ତୁତିକଲେ, ସେତେବେଳେ ଭକ୍ତବତ୍ସଳ ଭଗବାନ ସେମାନଙ୍କ ଉପରେ ଅନୁଗ୍ରହ କରିବା ପାଇଁ ସେଠାରେ ପ୍ରକଟିତ ହେଲେ । ସେ ସମୟରେ ତାଙ୍କର ତେଜ ସହସ୍ର ସୂର୍ଯ୍ୟବତ୍ ମନେ ହେଉଥିଲା । ସେ ଆପଣା କାନ୍ତିରେ ଦଶଦିଗ ଦେଦୀପ୍ୟମାନ କରିଥିଲେ । ଭଗବାନଙ୍କର ସେଭଳି ଅସହନୀୟ ତେଜ ହେତୁ ସବୁ ଦେବତାମାନଙ୍କର ଆଖି ଝଲସି ଗଲା । ସେ ସମୟରେ ସେମାନଙ୍କର ନେତ୍ର ଏତେ ପ୍ରକାଶ ପରିପୂର୍ଣ୍ଣ ହେଲା ଯେ ଭଗବାନଙ୍କୁ ଦେଖିବା ତ ଦୂରର କଥା, କ୍ଷିତି, ଅପ୍, ତେଜ, ମରୁତ୍ ବ୍ୟୋମ ଏଇ ପଞ୍ଚଭୂତଙ୍କୁ ତଥା ସେମାନଙ୍କ ପକ୍ଷରେ ଆପେ ଆପଣାକୁ ଦେଖିବା ସମ୍ଭବ ହେଲା ନାହିଁ ।"

ଏହାଶୁଣି ମହାରାଜ ପରୀକ୍ଷିତ ପଚାରିଲେ, "ତା'ହେଲେ କଣ ପ୍ରଭୁ ! ସବୁ ଦେବତା ଅନ୍ଧ ହୋଇଗଲେ ?"

ହସି ହସି ଭଗବାନ ଶୁକଦେବ କହିଲେ, "ରାଜନ୍, ଅନ୍ଧହେଲେ ନାହିଁ । ମାତ୍ର ପ୍ରକାଶ ଏତେ ଅଧିକ ଥିଲା ଯେ ସଭିଁଙ୍କ ଆଖିର ଜ୍ୟୋତି ସେ ମହାଜ୍ୟୋତିରେ ବିଲୀନ ହୋଇଗଲା । କେବଳ ମାତ୍ର ଦେବାଧିଦେବ ମହାଦେବ ଏବଂ କମଳଯୋନି ବ୍ରହ୍ମା ହିଁ ଭଗବାନଙ୍କର ଦିବ୍ୟରୂପ ଦର୍ଶନ କରିବାକୁ ସମର୍ଥ ହୋଇଥିଲେ । ସେ ସମୟରେ ଭଗବାନଙ୍କର ଶୋଭା ଅବର୍ଣ୍ଣନୀୟ ଥିଲା । ସାଜି ମାଜି ହୋଇ ଶ୍ୟାମ ସୁନ୍ଦର ପଲ୍ଲବିତ ପୁଷ୍ପିତ କୃଷ୍ଣଚୂଡ଼ା ଓ କରବୀର ବୃକ୍ଷ ସଦୃଶ ଶୋଭାୟମାନ ହେଉଥିଲେ । ମର୍କତ ମଣି ସଦୃଶ, ବର୍ଷାକାଳୀନ ପଲ୍ଲବିତ ଦୂର୍ବାଦଳ ସଦୃଶ, ଅତସୀ ପୁଷ୍ପବତ୍, ନୀଳ କମଳ ସଦୃଶ, ମୟୂର କଣ୍ଠବତ୍, ନବୀନ ଜଳଧାରା ମେଘ ସଦୃଶ, ନୀଳାଞ୍ଜନ ଶିଖର ସମାନ ତାଙ୍କର ବିଶାଳ ଏବଂ ଶୁଭ୍ର ଶ୍ରୀ ବିଗ୍ରହ ଚିତ୍ତକୁ ଅନାୟାସ ଆକର୍ଷିତ କରୁଥିଲା । ପୂର୍ଣ୍ଣଚନ୍ଦ୍ର ପରି ବିକଶିତ ଆନନ୍ଦରେ କମଳ କୋଷ ସଦୃଶ ଅତ୍ୟନ୍ତ ସ୍ନିଗ୍ଧ ଲାବଣ୍ୟ ଯୁକ୍ତ ଅରୁଣ ନୟନ ଆପଣାର ଶୀତଳ ରଶ୍ମି ଦ୍ୱାରା

Digitized by srujanika@gmail.com

ଶରଣାଗତମାନଙ୍କୁ ସାନ୍ତ୍ୱନା ପ୍ରଦାନ କରୁଥିଲା । ଭଗବାନଙ୍କର ତ୍ରୈଲୋକ୍ୟ ପାବନ ଜଗତ ସୁନ୍ଦର ସୁନ୍ଦର ଶରୀର ପରମ ପାବନ ପୀତାମ୍ବର ମଣ୍ଡିତ ହୋଇଥିଲା । ଏକ ଝୀନ ପୀତାମ୍ବର ପିନ୍ଧିଥିଲେ ଏବଂ ଅନ୍ୟଟି ମନପରି ଚଞ୍ଚଳ ପବନରେ ଫରଫର ଉଡୁଥିଲା । ତପ୍ତ ସୁବର୍ଣ୍ଣ ପରି ଯାହାଙ୍କର ଅପ୍ରତିମ ଆଭା, ସେହି କୌଶେୟ ପୀତ ବର୍ଣ୍ଣର ଝୀନ ବସ୍ତ୍ର ଶ୍ରୀହରିଙ୍କର ନୀଳ ଶ୍ରୀ ବିଗ୍ରହରେ ଏପରି ଭାବରେ ମଣ୍ଡିତ ହୋଇ ରହିଥିଲା ଯେପରି ମେଘ ଖଣ୍ଡରେ ବିଦ୍ୟୁତ୍ ! ତାଙ୍କର ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗ ସୁନ୍ଦର, ସୁଗଠିତ, ସୁଖକର ଓ ସମ୍ପୂର୍ଣ୍ଣ ଶୋଭା ସଂଯୁକ୍ତ ହୋଇଥିଲା । ମଧୁର ପ୍ରସନ୍ନ ମୁଖ କାନ୍ତି, ପଦ୍ମନେତ୍ର, କୁଟୀଳ ଭ୍ରୂ, ଆୟତ ଅପାଙ୍ଗ, ପକ୍ଷ୍ମ, କପୋଳ, ଗଣ୍ଡସ୍ଥଳ ସକଳ ଶାଶ୍ୱତ ସୁଷମାର ଆକର ପରି ମନେ ହେଉଥିଲେ । କଜଳ କୃଷ୍ଣ କୁଞ୍ଚିତ କେଶୋପରି ମନୋହର ମୁକୁଟ ଝଟକୁ ଥିଲା । କର୍ଣ୍ଣର ରତ୍ନକୁଣ୍ଡଳର କାନ୍ତିରେ କପାଳର ଆଭା ଅତ୍ୟନ୍ତ ସୁଖକର ପ୍ରତୀତ ହେଉଥିଲା । ଆଜାନୁଲମ୍ବିତ ବିଶାଳ ଭୂଜରେ କଙ୍କଣ କେୟୂର ଓ ଭୂଜବନ୍ଧ ଅତୀବ ଶୋଭାବନ୍ତ ମନେ ହେଉଥିଲେ । ବକ୍ଷସ୍ଥଳରେ କୌସ୍ତୁଭମଣି ଏଣେ ତେଣେ ଦୋଳାୟିତ ହୋଇ ଯେପରି ତାହା ମଧ୍ୟରେ ସ୍ଥିତ ଲକ୍ଷ୍ମୀଙ୍କର ଚଞ୍ଚଳତା ପ୍ରକାଶ କରୁଥିଲା । ନାନା ରଙ୍ଗର ବନମାଳା ଦଶଦିଗରେ ଆପଣାର ଆଭା ବିକିରଣ କରୁଥିଲେ । କଟିରେ କିଙ୍କିଣିତ ସୁବର୍ଣ୍ଣ ମେଖଳା ଆପଣାର ଗୁଞ୍ଜନକାର୍ଯ୍ୟ ଦ୍ୱାରା ପୀତାମ୍ବର ଅନ୍ତରାଳରେ ଲୁକାୟିତ ନିତମ୍ବର ପ୍ରତିବିମ୍ବକୁ ବ୍ୟକ୍ତ କରିବା ନିମନ୍ତେ ସତେ ଯେଉଁପରି ବ୍ୟଗ୍ରତା ପ୍ରକାଶ କରୁଥିଲେ । ସୁନ୍ଦର ବିଶାଳ ଚତୁର୍ଭୁଜରେ ମୂର୍ତ୍ତିମାନ ଶଙ୍ଖ ଚକ୍ରାଦି ଆୟୁଧ ଶୋଭାୟମାନ ହୋଇଥିଲେ । ଭଗବାନଙ୍କର ଏଭଳି ତ୍ରୈଲୋକ୍ୟ ବନ୍ଦିତ ରୂପ ଦେଖି ଦେବତାମାନେ ସତେ ଯେଉଁପରି ତଟସ୍ଥ ହୋଇଗଲେ । କିନ୍ତୁ ଦେବାଧିଦେବ ମହାଦେବ ଏବଂ ବ୍ରହ୍ମା ତାଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲେ । ସମସ୍ତଙ୍କ ପକ୍ଷରୁ ବ୍ରହ୍ମା ଚତୁର୍ମୁଖରେ ତାଙ୍କର ସ୍ତୁତି ପାଠ କଲେ ।

"ହେ ପ୍ରଭୁ ! ଆପଣ ସୃଷ୍ଟି, ସ୍ଥିତି ତଥା ପ୍ରଳୟ ଆଦି ବିକାର ରହିତ ଅଟନ୍ତି । ଆପଣ ଆଦି ଏବଂ ଅବ୍ୟକ୍ତ । ଭୂମା ଓ ପୁରାଣ ପୁରୁଷ ଆପଣ ଅନାଦି, ଅନନ୍ତ, ନିର୍ବିଶେଷ ନିରାକାର, ନିଶ୍ଚଳ, ନିଷ୍କ୍ରିୟ ଏବଂ ନିର୍ଲେପ ଅଟନ୍ତି । ଭଗବାନ, ଆପଣଙ୍କ ନିମନ୍ତେ ଅଧିକ କିଏ କହି ପାରିବୁଁ ? କେବଳ ଆପଣ, ଆପଣ ମାତ୍ର ଏବଂ ଆପଣଙ୍କ ବ୍ୟତୀତ ଏ ଜଗତର ସ୍ୱତନ୍ତ୍ର ସତ୍ତା ନାହିଁ । ଦେବତାମାନେ ଦୁଃଖ ପୀଡ଼ିତ ହୋଇ ଆପଣଙ୍କର ଶରଣାପନ୍ନ ହୋଇଛନ୍ତି । ସେମାନଙ୍କର ଦୁଃଖ ନିରାକରଣରେ ଉପାୟ କରନ୍ତୁ । ଏହି ପଥଭ୍ରଷ୍ଟ ମାନଙ୍କୁ ପଥ ପ୍ରଦର୍ଶନ କରନ୍ତୁ । ଏମାନଙ୍କୁ ଆପଣଙ୍କର ଶରଣାଗତ ସେବକ ଭାବରେ ଗ୍ରହଣ କରନ୍ତୁ । ଆମେ ସମସ୍ତେ ଆପଣଙ୍କର ଅଂଶଭୂତ ଯେପରି ଅଗ୍ନିରୁ ବାହାରିଥିବା ସ୍ଫୁଲିଙ୍ଗ । ଆପଣଙ୍କ ବିନା କୌଣସି କାର୍ଯ୍ୟ କରିବାକୁ ଆମେ ଏକାନ୍ତ ଅକ୍ଷମ । ଏଣୁ ଯାହା କଲେ ଆମମାନଙ୍କର ମଙ୍ଗଳ ହେବ, ଆପଣ ତାହାହିଁ କରନ୍ତୁ । ଯାହା ଆମର କର୍ତ୍ତବ୍ୟ ତାହା କରିବାକୁ ଆମକୁ ଆଜ୍ଞା କରନ୍ତୁ ।"

Digitized by srujanika@gmail.com

ଶ୍ରୀ ଶୁକଦେବ କହୁଛନ୍ତି, "ରାଜନ୍, ଯେତେବେଳେ ଜିତେନ୍ଦ୍ରିୟ ହୋଇ ସମାହିତ ଚିତ୍ତରେ ଦେବତାମାନେ ଭଗବାନଙ୍କର ଏଭଳି ସ୍ତୁତି କଲେ, ଭଗବାନ ମେଘ ଗମ୍ଭୀର ବାଣୀରେ ସମୁଦ୍ର ମନ୍ଥନର ପରାମର୍ଶ ଦେଲେ । ଯଦି ଭଗବାନ ଇଚ୍ଛା କରିଥାନ୍ତେ, ସ୍ୱୟଂ ଏ ସବୁ କରିବାକୁ ସମର୍ଥ ହୋଇଥାନ୍ତେ । ମାତ୍ର ରସପୂର୍ଣ୍ଣ ଲୀଳା ରଚନା କରିବା ତାଙ୍କର ଇଚ୍ଛା । ତେଣୁ ଦେବତା ମାନଙ୍କୁ ପରାମର୍ଶ ଦେବା ଛଳରେ କହିଲେ, "ହେ ବ୍ରହ୍ମା ! ଆପଣ ମୋ କଥା ଶୁଣନ୍ତୁ । ହେ ଶଙ୍କର, ଆପଣ ମଧ୍ୟ ଶୁଣନ୍ତୁ । ମୁଁ ଯାହା କରିବାକୁ ଯାଉଛି ସେଥିରେ ଆପଣଙ୍କର ସହଯୋଗ ମଧ୍ୟ ଏକାନ୍ତ ଭାବରେ ଆବଶ୍ୟକ । ଦେବଗଣ, ତୁମେମାନେ ମଧ୍ୟ ଦତ୍ତଚିତ୍ତ ହୋଇ ଶ୍ରବଣ କର । ମୁଁ ଯାହା କହିବି ସେଥିରେ ତୁମର କଲ୍ୟାଣ ନିହିତ ହୋଇ ରହିଛି । ତା ବ୍ୟତୀତ ଆଉ କୌଣସି ମାର୍ଗ ନାହିଁ ।"

ସମସ୍ତେ ଏକା ସାଙ୍ଗରେ ହାତ ଯୋଡ଼ି କହିଲେ, "ପ୍ରଭୁ ! ଆପଣ ଆଜ୍ଞା କରନ୍ତୁ । ଆପଣ ଯାହା ଆଦେଶ ଦେବେ ତାହା ସର୍ବାନ୍ତକରଣରେ ପାଳନ କରିବୁଁ ।"

ଏହା ଶୁଣି ଭଗବାନ କହିଲେ, "ଦେଖ, ଗୋଟିଏ କାମକର, ଏଇନେ ତୁମେମାନେ ଯାଇ ଅସୁରମାନଙ୍କ ସାଙ୍ଗରେ ସନ୍ଧି କରି ନିଅ ।"

ଦେବତାମାନେ କରୁଣ ସ୍ୱରରେ କହିଲେ, "ଭଗବାନ୍, ଅସୁରମାନଙ୍କ ସହିତ କେଉଁଭଳି ସନ୍ଧି ହୋଇ ପାରିବ ? ମିଳାମିଶା ସିନା ସମକକ୍ଷ ବ୍ୟକ୍ତି ସାଙ୍ଗରେ ହୋଇଥାଏ ! ଯେଉଁମାନେ ବଳବାନ ଓ ବିଜୟୀ ସେମାନେ ପରାଜିତ ଏବଂ ନିର୍ବଳ ବ୍ୟକ୍ତି ସାଙ୍ଗରେ କାହିଁକି ସନ୍ଧି କରିବେ ? ପ୍ରଭୁ, ସ୍ୱଭାବ ତ ଦୁସ୍ତ୍ୟଜ୍ୟ । ମୂଷା ଓ ବିରାଡ଼ିର ବୈରଭାବ ସ୍ୱାଭାବିକ, ସାପ ନେଉଳ ମଧ୍ୟରେ ସନ୍ଧି କଦାପି ସମ୍ଭବ ନୁହେଁ । ସେମାନଙ୍କ ସାଙ୍ଗରେ ସନ୍ଧି ହେବା ଅସମ୍ଭବ ! ଅସୁରମାନେ ସ୍ୱଭାବତଃ ଆମ ସହିତ ଦ୍ୱେଷ ଭାବ ରଖିଥାନ୍ତି ।

ଭଗବାନ କହିଲେ, "ମୁଁ ଚିରଦିନପାଇଁ ସନ୍ଧିକଥା କହୁନାହିଁ । ମୋର ଅଭିପ୍ରାୟ ଯେ ତୁମେ କିଛିକାଳ ନିମନ୍ତେ ସେମାନଙ୍କ ସହିତ ସ୍ନେହଭାବ ରଖ ।"

ଦେବତାମାନେ କହିଲେ, "ପ୍ରଭୁ, ଏଭଳି ଅସ୍ଥାୟୀ ସନ୍ଧିଦ୍ୱାରା କଣ ଲାଭ ହେବ ?".

ଭଗବାନ କହିଲେ, "ଦେଖ, ଯେତେବେଳେ ବିପରୀତ ସମୟ ଆସେ ସେତେବେଳେ ମାନ ଅପମାନ ବିଷୟ ଚିନ୍ତା କରାଯାଇ ନଥାଏ । ଯେପରି ମଧ୍ୟ ହେଉନା କାହିଁକି ଆପଣାର ସ୍ୱାର୍ଥ ସାଧନ କରି ନିଆଯାଏ । ସେ ହିଁ ବୁଦ୍ଧିମାନ ଯେ ସମୟାନୁକୂଳ କାର୍ଯ୍ୟ କରେ । ଅପମାନକୁ ଆଗରେ ରଖି ଏବଂ ମାନକୁ ପଛରେ ପକେଇ ବୁଦ୍ଧିମାନ ବ୍ୟକ୍ତି ଆପଣାର କାର୍ଯ୍ୟ ସାଧିଯାଏ । ଆପଣା କାର୍ଯ୍ୟସିଦ୍ଧି ନିମନ୍ତେ ତ ଗଧର ପାଦ ପର୍ଯ୍ୟନ୍ତ ଧରିବାକୁ ହୋଇଥାଏ ।"

Digitized by srujanika@gmail.com

ଦେବତାମାନେ କହିଲେ, "ପ୍ରଭୁ ! ଦୁଷ୍ଟ ସହିତ ମିତ୍ରତା ତ ପରିଶେଷରେ ହାନି-କାରକ ହିଁ ହେବ ।"

ଭଗବାନ କହିଲେ, "ମୁଁ କୋଉ ସ୍ଥାୟୀ ମିତ୍ରତା କଥା କହୁଛି । ବର୍ତ୍ତମାନ କାଳ ସେମାନଙ୍କର ଅନୁକୂଳ । ଏଣୁ ଉପରେ ଉପରେ ତାଙ୍କ ସାଙ୍ଗରେ ମିତ୍ରତା ସ୍ଥାପନ କର । ଭିତରେ ସାବଧାନ ଥାଅ । ଯେତେବେଳେ ସମୟ ଆସିବ ସେତେବେଳେ ବିନା ଚିନ୍ତା କରି ମାଡ଼ିବସି ସ୍ୱର୍ଗ ଆପଣା ଅଧିକାରକୁ ନେଇ ଯିବ !

ଏହାଶୁଣି ଶୌନକ ସୂତଙ୍କୁ ପଚାରିଲେ, "ହେ ସୂତ, ଭଗବାନ ତ ଛନ୍ଦ କପଟ ଶିକ୍ଷା ଦେଲେଣି ।"

ଏହାଶୁଣି ଶ୍ରୀ ସୂତ ହସିଲେ, କହିଲେ, "ମହାଭାଗ, ଛନ୍ଦ କପଟ କଉଚି ? ସଂସାରରେ ସବୁ ଏମିତ ସଂଟାବଂଟା କାମ ଚାଲିଛି । ଧର୍ମ ଅନ୍ୟକଥା, ରାଜନୀତି ଅନେକ କ୍ଷେତ୍ରରେ ତା'ର ପ୍ରତିକୂଳ ହେବ । ଭଗବାନ ଏଇ ଖେଳଟି ପାଇଁ ତା'ପରେ ଯେଉଁ ଯେଉଁ ଉପାୟମାନ କହିଲେ ତାହା ପରେ କହିବ ।"

## ଛପ୍‌ପୟ

ସ୍ୱାଭାବିକ ଟକୋ ପ୍ରେମ ଦ୍ୱେଷ ଛୁଟେ ନହିଁ କବହୂଁ ।
କରେଁ ମିତ୍ରତା ଦୈତ କରେଁ ଫିର ଭଗବନ୍ ହମହୂ ॥
ଦେବନି କୀ ସୁନି ବାତ ହଁସେ ପ୍ରଭୁ ଅନ୍ତର୍ଯାମୀ ।
କ୍ରୀଡ଼ା କେ ହିତ ରଚେଁ ବିବିଧ କୌତୁକ ସୁର ସ୍ୱାମୀ ॥
ହରି ବୋଲେ ତବ ସୁରନି ତେ, ସ୍ୱାର୍ଥ ଜଗତ ମହଁ ଶ୍ରେଷ୍ଠ ହୈ ।
ସଧେ ସ୍ୱାର୍ଥ ଜବ କାହୁ ସୋ, ସୋଇ ଜଗ ମହଁ ଜ୍ୟେଷ୍ଠ ହୈ ॥

—*—

Digitized by srujanika@gmail.com

# ସ୍ୱାର୍ଥସିଦ୍ଧି ପାଇଁ ଶତ୍ରୁ ସହିତ ସନ୍ଧି ମଧ୍ୟ କରଣୀୟ

ଅରୟୋଽପି ହି ସନ୍ଧେୟାଃ ସତି କାର୍ଯ୍ୟାର୍ଥଗୌରବେ ।
ଅହିମୂଷିକବଦ୍ ଦେବାହ୍ୟର୍ଥସ୍ୟ ପଦବୀଂ ଗତୈଃ ॥
ଶ୍ରୀ. ଭା. ୮ । ୬ । ୧୦

### ଛପ୍ପୟ

ଘୁସେଯା ପିଟାରୀ ମାହିଁ ସର୍ପ ଇକ ନିଜ ଭୋଜନ କୁଁ ।
ମୋଟୋ ମୂସକ ତହାଁ ଘୁସେଯା କାଟେ କପଡ଼ନ କୁଁ ॥
କଇ ପିଟାରୀ ବନ୍ଦ ଲଗାୟୋ ସ୍ୱାମୀ ତାରେ ।
ମୂସକ ଅତିଶୟ ଡ଼ରୈ ଭୟୋ ଚକିତ ଅହି କାରେ ॥
ସର୍ପ କହ୍ୟୋ ରେ ଭୂଖ ବଶ, ଜୋ ତାକୁଁ ରଖି ଜାଉ ତୋ ।
ତୋ ଫିର ଘୁଟି କେ ପିଟାରୀ, ମେ ହୀ ହୋୟୌଁ ମର ଜାଉଁ ଗୋ ॥

ଧାର୍ମିକ ନିୟମ ପ୍ରାୟ ସମସ୍ତଙ୍କ ନିମନ୍ତେ ସମାନ । ଦଶଶ ଲକ୍ଷଣବନ୍ତ ଧର୍ମ ପୁରୁଷ ମାତ୍ରକ ନିମନ୍ତେ ନିର୍ଦ୍ଦିଷ୍ଟ, ମାତ୍ର ବିଶେଷ ବିଶେଷ ଅବସରରେ ବିଶେଷ ବିଶେଷ ବ୍ୟକ୍ତିଙ୍କର କିଛି ବିଶେଷ ଧର୍ମ ହୋଇଯାଏ । ସେଭଳି ରାଜନୀତିରେ ସମୟାନୁସାରେ କିଛି ଏପରି କଥା ମଧ୍ୟ କରିବାକୁ ପଡ଼ିଥାଏ ଯାହା ଦେଖିବାକୁ ଧର୍ମ ବିରୁଦ୍ଧ କଥା ଭଳି ମନେ ହୁଏ । ବାସ୍ତବିକ ରାଜନୀତିରେ ଏକ ବିଶିଷ୍ଟ ସ୍ୱାର୍ଥକୁ ସମ୍ମୁଖରେ ରଖି କାର୍ଯ୍ୟ କରାଯାଇ ଥାଏ । ଶତ୍ରୁକୁ କପଟରେ ଯୁଦ୍ଧ ଜିଣିବାରେ ସେଠାରେ ଦୋଷ ନାହିଁ । ଆପଣାର ସ୍ୱାର୍ଥ ସିଦ୍ଧି ରାଜନୀତିରେ ଯେଉଁ ଉପାୟରେ ହେଉନା କାହିଁକି ତାହା ଧର୍ମବୋଲି ବିବେଚିତ ହୋଇ ଥାଏ । ଭଗବାନ ତ ବାଞ୍ଛା-କଳ୍ପତରୁ । ତାଙ୍କ ପାଖକୁ ଯେ ଧର୍ମର ଇଚ୍ଛାନେଇ ଯାଏ ତାକୁ ଧର୍ମର ଉପଦେଶ ଦିଅନ୍ତି, ତା'ର କାମନା ପୂର୍ତ୍ତି କରନ୍ତି । ଯେ କାମ ଭାବ ନେଇଯାଏ ସେ ତା'ର କାମନା

Digitized by srujanika@gmail.com

ପୂର୍ତ୍ତି କରିଥାନ୍ତି । ଯେ ତାଙ୍କ ନିକଟରେ ଅର୍ଥାର୍ଥୀ ହୋଇ ପହଞ୍ଚେ ସେ ତାକୁ ଅର୍ଥ ପ୍ରଦାନ କରନ୍ତି । ଯେ ମୋକ୍ଷର ଇଚ୍ଛାନେଇ ଯାଏ ତାକୁ ଚିରକାଳ ନିମନ୍ତେ ଭବବନ୍ଧନରୁ ମୁକ୍ତ କରିଥାନ୍ତି । ବଳାର୍ଥୀକୁ ବଳ ଏବଂ ଛଳାର୍ଥୀକୁ ଛଳର ହିଁ ଶିକ୍ଷା ଦେଇଥାନ୍ତି । ତାଙ୍କ ପାଖରେ କୌଣସି କଥାର ଅଭାବ ନାହିଁ । ତାଙ୍କର ଚରଣରେ ଯେ କୌଣସି ଇଚ୍ଛାନେଇ ପହଞ୍ଚିଲେ ତାହା ଅବଶ୍ୟ ପୂର୍ଣ୍ଣ ହେବ । ପରିଶେଷରେ ତାଙ୍କ ଦ୍ୱାରା କୌଣସି ଇଚ୍ଛା ପୂର୍ତ୍ତିର କରୁଣା ପ୍ରାପ୍ତ ହୋଇଥିଲେ ମନୁଷ୍ୟ ଅବଶ୍ୟ ମୋକ୍ଷପ୍ରାପ୍ତ ହେବ ।

ଭଗବାନ ଦେବତାମାନଙ୍କୁ ଏହି ପରାମର୍ଶ ଦେଲେ ଯେ ତୁମେମାନେ ଯାଇ ଦୈତ୍ୟମାନଙ୍କ ସହିତ ସନ୍ଧି ସ୍ଥାପନ କର । ଦେବତାମାନେ ପ୍ରଥମରେ ଦ୍ୱିଧା କଲେ, ଅନିଚ୍ଛା ମଧ୍ୟ ପ୍ରକାଶ କଲେ ଓ କହିଲେ ଯେ ଦୈତ୍ୟମାନଙ୍କ ସହିତ ସେମାନଙ୍କର ମନ ଏକମେଳ ହେବା କଠିଣ । ସେତେବେଳେ ଭଗବାନ ତାଙ୍କୁ ବୁଝେଇ କହିଲେ, "ଦେଖ, ନିଜ କାର୍ଯ୍ୟର ଗୌରବ ବିଗ୍ରହରେ ମାନ ଅପମାନ କଥା ଚିନ୍ତାକରିବା ଉଚିତ ନୁହେଁ । ଯଦି ଶ୍ରେଷ୍ଠ ହୋଇ କାର୍ଯ୍ୟ ସାଧନ ହେଉଥାଏ ତାହେଲେ ଶ୍ରେଷ୍ଠ ହୋଇ ଯିବା ଭଲ । ଯଦି ଶତ୍ରୁ ସାଙ୍ଗରେ ସ୍ନେହ କରି କାମ କରାଯାଇ ପାରେ, ତାହେଲେ ସ୍ନେହଭାବ ରଖିବା କଥା । ଦେଖ ସର୍ପ ଆପଣା କାର୍ଯ୍ୟ ସମ୍ପାଦନ ନିମନ୍ତେ ମୂଷିକ ସହିତ କେଉଁପରି ମିଶିଗଲା ?"

ଏହା ଶୁଣି ଦେବତାମାନେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ପ୍ରଭୁ, ସର୍ପ ଏବଂ ମୂଷିକ ମଧ୍ୟରେ ସ୍ୱଭାବତଃ ବୈରଭାବ ରହିଛି । ସର୍ପ ମୂଷିକ ସାଙ୍ଗରେ କେଉଁପରି ବନ୍ଧୁତା କଲା ସେ କାହାଣୀ ଆପଣ ଆମକୁ କହନ୍ତୁ ।"

ଭଗବାନ କହିଲେ, "ବୈରତା ଥିଲେ ହେଁ କଣ ହେଲା, ସର୍ପର ତ ଆପଣା କାମ କରିବାର ଥିଲା । ଶୁଣ ମୁଁ ତୁମମାନଙ୍କୁ ସେ କାହାଣୀ କହୁଛି ।"

"କୌଣସି ଏକ ଧନୀ ଘରେ ଲୁଗା ରଖିବାର ଏକ ପେଟି ଥିଲା । ସେଥିରେ ଏକ ମୂଷା ପଶି କପଡା କାଟୁଥିଲା । ସେ ସମୟରେ ଏକ ଅତି ବଡ଼ କଳା ସାପ, ଭୋକିଲା ହୋଇ ଆହାର ଅନ୍ୱେଷଣରେ ସେହି ପେଟିରେ ପଶିଗଲା । ଦୈବ ଯୋଗକୁ ସେତେବେଳେ ସେଠାରେ ଗୃହସ୍ୱାମୀ ଉପସ୍ଥିତ ହୋଇ ପେଟି ବନ୍ଦ କଲା ଏବଂ ତାଲା ଲଗେଇ ଚାଲିଗଲା । ସାପ ଓ ମୂଷା ଦୁହେଁ ପେଟିରେ ବନ୍ଦ ହୋଇ ରହିଲେ । ସର୍ପ କ୍ଷୁଧାର୍ତ୍ତ ଥିଲା । ସେ ଇଚ୍ଛା କରିଥିଲେ ମୂଷାଟିକୁ ମାରି ଖାଇ କ୍ଷୁଧା ଶାନ୍ତ କରିପାରିଥାନ୍ତା । ମାତ୍ର ସେ ଭାବିଲା ଯଦି ଏଇନେ ମୂଷାଟିକୁ ମାରି ଖାଇ ଯିବାକୁ ବ୍ୟଗ୍ର ହେବ, ତାହେଲେ ହୁଏତ ବର୍ତ୍ତମାନ ପେଟପୂରି ଯିବ,

Digitized by srujanika@gmail.com

ମାତ୍ର ଶେଷରେ ମୋତେ ମଧ୍ୟ ଏ ପେଡ଼ି ଭିତରେ ବନ୍ଦୀ ହୋଇ ମରିବାକୁ ପଡ଼ିବ । କିଛି ଚିନ୍ତା କରାଯାଉ ଯେମିତି ଏହା ଭିତରୁ ପଦାକୁ ଜୀବିତ ବାହାରିଯାଇ ହେବ ଏବଂ ଆହାର ମଧ୍ୟ ମିଳିଯିବ ।

ଏପରି ବିଚାର କରି ସେ କହିଲା, "କହ ମୂଷା ଭାଇ ! ଖବର କଣ ? ଏତେ ଉଦବିଗ୍ନ ମନେ ହେଉଛ କେମିତି ?

ଡରି ଡରି ମୂଷା କହିଲା, "ଖବର ଆଉ କଣ ? ଆପଣା ଜୀବନର ମୁହୂର୍ତ୍ତ ଗଣୁଛି ।"

ସାପ ବିସ୍ମୟ ପ୍ରଦର୍ଶନ କରି କହିଲା, "କାହିଁ କଣ ହେଲା ? ଏତେ ଶ୍ରେଷ୍ଠ ବିପଦ ଲାଗି ଏତେ ଡରୁଛ ?"

ମୂଷା କହିଲା, "ନା ମୁଁ ଏ ପେଡ଼ିରେ ବନ୍ଦ ହୋଇଛି ବୋଲି ଭୟ କରୁନି । ମୁଁ ତ ତମକୁ ଡ଼ରୁଛି । କେଜାଣି କେତେବେଳେ ତମେ ମୋତେ ଗିଳି ପକେଇବ !"

ଏହାଶୁଣି ସହାନୁଭୂତିଶୀଳ କଣ୍ଠରେ ସାପ କହିଲା, "ତୁମେ ଏପରି କଣ କହୁଛ ? ବୈରଭାବ କଣ ସବୁବେଳେ ଥାଏ ? ତାହା ସମୟ ସମୟରେ ଆସିଥାଏ । ବର୍ତ୍ତମାନ ଆମେ ଦୁହେଁ ସମାନ ବିପତ୍ତିରେ ପଡ଼ିଛୁଁ । ତେଣୁ ଆମ ପକ୍ଷରେ ପରସ୍ପର ମଧ୍ୟରେ ମିତ୍ରତା ସ୍ଥାପନ କରିବା ଉଚିତ ।"

ମୂଷା କହିଲା, "ଭାଇ, ନିର୍ବଳ ଓ ବଳବାନ ମଧ୍ୟରେ କେଉଁପରି ମିତ୍ରତା ! ଗାଈ ଘାସ ସାଙ୍ଗରେ ମିତ୍ରତା କଲେ ଉପାସରେ ରହିବ ସିନା ! ସମାନ ସମାନ ଲୋକଙ୍କ ମଧ୍ୟରେ ସିନା ମିତ୍ରତା !"

ସାପ କହିଲା, "ଏଇନେ ତ ଆମେ ସମାନଭାବରେ ବିପଦଗ୍ରସ୍ତ । ତେଣୁ ତୁମେ ମୋତେ ମିତ୍ର ଭାବରେ ଗ୍ରହଣ କର ଏବଂ ଆମେ ଦୁହେଁ ଉଦ୍ୟମ କରି କୌଣସି ମତେ ଏହା ଭିତରୁ ବାହାରି ଯିବା ।"

ମୂଷାଟି ତ ହେଉଛିଆ ଗୃହସ୍ଥ ଥିଲା । ସେ ମୂର୍ଖ ସାପ ସାଙ୍ଗରେ ମିତ୍ରତା କରିନେଲା । ମୂଷା ପେଡ଼ି କାଟି କାଟି ଛିଦ୍ର କଲା । ସାପ ଯେତେବେଳେ ଦେଖିଲା ଯେ ବାହାରି ଯିବାର ରାସ୍ତା ହୋଇଗଲା ସେ ଡ଼େଇଁପଡ଼ି ମୂଷାକୁ ଧରିନେଲା । ବାହାରି ଯିବାର ରାସ୍ତା ବି କରିନେଲା, ତା ସାଙ୍ଗକୁ ଭୋକ ବି ଶାନ୍ତ କରିନେଲା । ଏହାରି ନାଁ କୂଟନୀତି । ସମୟ ଆସିଲେ ଶତ୍ରୁର ଅଧୀନ ହୋଇଯାଇ ବେଳ ପଡ଼ିଲେ କାବୁ କରନ୍ତି ।

Digitized by srujanika@gmail.com

ଭଗବାନ ଦେବତାମାନଙ୍କୁ କହୁଛନ୍ତି, "ଦେଖ, ଏ ସମସ୍ତ ଦୈତ୍ୟ ଦାନବମାନଙ୍କ ନିମନ୍ତେ ଅନୁକୂଳ ସମୟ, ତୁମମାନଙ୍କ ପାଇଁ ପ୍ରତିକୂଳ । ଯେ ପର୍ଯ୍ୟନ୍ତ ଅନୁକୂଳ ସମୟ ଆସିନାହିଁ, ସେ ପର୍ଯ୍ୟନ୍ତ ତୁମମାନଙ୍କର ଅଭ୍ୟୁଦୟ ହୋଇ ନାହିଁ । ସେତେବେଳ ଯାଏ ତୁମେମାନେ ଶ୍ରେଷ୍ଠ ହୋଇ ଦାନବମାନଙ୍କର ଅଧୀନତା ସ୍ୱୀକାର କରନାଅ । ସେମାନେ ବଳବାନ । ଉଭୟ ପକ୍ଷ ମିଳାମିଶି ସମୁଦ୍ର ମନ୍ଥନ କରି ଅମୃତ ବାହାର କର । ଅମୃତ ବାହାରିବା ପରେ ସେମାନଙ୍କୁ ଫାଙ୍କି ଦେଖେଇବ । ମୁଷାଠାରୁ ସାପର କାମ ଆଦାୟ କଲା ପରି ସେମାନଙ୍କଦ୍ୱାରା କାମ କରେଇ ନେବାପରେ ସ୍ୱର୍ଗଚ୍ୟୁତ କରିଦେବ ।"

ଏହାଶୁଣି ଶୌନକ କହିଲେ, "ହେ ସୂତ, ଭଗବାନ ତ ଏହାଦ୍ୱାରା ଦେବତାମାନଙ୍କୁ ମିଥ୍ୟାଚରଣ ଶିଖାଇଲେ । ଏହା କଣ ବିଶ୍ୱାସଘାତକତା ନୁହେଁ ।"

ଏହାଶୁଣି ସୂତ ହସିଲେ, କହିଲେ, "ମହାଭାଗ, ରାଜନୀତିରେ କିଏ କା'ର ବା ବିଶ୍ୱାସ କରିଥାଏ । ସମସ୍ତେ ସ୍ୱାର୍ଥ ବଶୀଭୂତ ହୋଇ କାର୍ଯ୍ୟ କରିଥାନ୍ତି । ସଂସାରରେ ଯେତେଯେତେ ସମ୍ବନ୍ଧ ଅଛି ସବୁ ସ୍ୱାର୍ଥର । ସାତ୍ତ୍ୱିକ ପ୍ରକୃତିର ନିଃସଙ୍ଗ ପୁରୁଷମାନଙ୍କୁ ଯଥା ସାଧୁ, ମହାତ୍ମା, ଭଗବତ୍ ଭକ୍ତ, ବ୍ରାହ୍ମଣ ତଥା ସନ୍ନ୍ୟାସୀ, ଏମାନଙ୍କ କଥା ଛାଡ଼ନ୍ତୁ । ଯେଉଁମାନଙ୍କର ରାତିଦିନ ସ୍ୱାର୍ଥୀମାନଙ୍କ ସାଙ୍ଗରେ କାମ, ପ୍ରତି ପଦରେ ସ୍ୱାର୍ଥୀମାନଙ୍କୁ ନେଇ ଯେଉଁମାନେ ଚଳୁଛନ୍ତି ସେ କ୍ଷେତ୍ରରେ ଯେହେତୁ ଆପଣା ସ୍ୱାର୍ଥ ତ୍ୟାଗ କରିହେବ ନାହିଁ, କୂଟନୀତିର ଆଶ୍ରୟ ନେବାକୁ ବାଧ୍ୟ । ଯେ ସ୍ୱାର୍ଥ ତ୍ୟାଗ କରିପାରେ ସେ ହିଁ କେବଳ ବିଶୁଦ୍ଧ ଧର୍ମାଚରଣ କରି ପାରିବ । ଯା'ର ସ୍ୱାର୍ଥ ସାଧନ କରିବାକୁ ଅଛି ସିଏ ତ ସବୁକିଛି କରିବ । ସେଭଳି କୂଟନୀତିଦ୍ୱାରା ଆପଣାର ସ୍ୱାର୍ଥରକ୍ଷା କରିବାକୁ ହିଁ ହେବ । ହାତ ଗୋଡ଼ ବଞ୍ଚେଇ ରଖିବା, ମୁଣ୍ଡ ଆଡ଼େଇ ନେବା ଏସବୁ ତ ଆତ୍ମରକ୍ଷାର ସାଧାରଣ ନିୟମ । ଜାଣି ଜାଣି କାହାର ସାଙ୍ଗରେ ଏଭଳି କୂଟ ବ୍ୟବହାର କରିବା ଉଚିତ ନୁହେଁ । ମାତ୍ର ବିବଶ ହେଲେ କଣ କରାଯିବ ! ଏହି ସ୍ୱାର୍ଥ ପୂର୍ତ୍ତି ସହାରରେ ଏପରି ଭାବରେ ତ କାର୍ଯ୍ୟ ସାଧନ କରିବାକୁ ହେବ । କେତେବେଳେ ଦୁର୍ବଳ ଶତ୍ରୁ ସାମନାରେ ମଧ୍ୟ ନଇଁ ଯିବାକୁ ପଡ଼ିଥାଏ । ଦେଖ ବେଙ୍ଗ ସର୍ପର ଭୋଜନ । ମାତ୍ର ସମୟ ସମୟରେ ସାପକୁ ମଧ୍ୟ ବେଙ୍ଗର ଘୋଡ଼ା ହେବାକୁ ପଡ଼େ । ବଳବାନ ହୋଇଥିଲେ ହେଁ ବ୍ରାହ୍ମଣକୁ ନିଜ ସ୍ତ୍ରୀ ପାଖରେ ଦବିବାକୁ ହେଲା । ସମୟ ଆସିଲାରୁ ଉଭୟେ ଉଭୟଙ୍କର ସ୍ୱାର୍ଥ ସାଧନ କରିନେଲେ ।"

ଏହାଶୁଣି ଶୌନକ ପଚାରିଲେ, "ହେ ସୂତ, ବେଙ୍ଗର ସାପ କାହିଁକି ବାହନ ହେଲା ? ବ୍ରାହ୍ମଣକୁ କାହିଁକି ଦବି ଯିବାକୁ ହେଲା ! ଏ ବିଷୟରେ ଆମକୁ କହିବା ହୁଅନ୍ତୁ ।"

Digitized by srujanika@gmail.com

ଶୌନକଙ୍କର କଥା ଶୁଣି ସୂତ କହିଲେ, "ହେ ମୁନିଗଣ ! ଏକଥା ଅତ୍ୟନ୍ତ ପ୍ରାଚୀନ । ମୁଁ କହୁଛି, ଆପଣମାନେ ମନଦେଇ ଶୁଣନ୍ତୁ ।"

ଥରେ ଗଙ୍ଗା ତଟରେ ଜଣେ ଦଣ୍ଡୀ ସ୍ୱାମୀ ଗୋଟିଏ ସର୍ପକୁ ଦେଖିଲେ । ତା ଉପରେ ଗୋଟିଏ ବେଙ୍ଗ ଡେଇଁ ଡେଇଁ ଚଢି ଯାଉଥିଲା ଓ ପ୍ରସନ୍ନ ଚିତ୍ତରେ ପୁଣି ଡେଇଁ ପଡୁଥିଲା । ସାପଟି ତାକୁ ଖାଉ ନଥିଲା, ଚୁପଚାପ ଦେଖୁଥିଲା ଓ ସହି ଯାଉଥିଲା । ଏହା ଦେଖି ଦଣ୍ଡସ୍ୱାମୀ ବିସ୍ମିତ ହେଲେ । ସେ ହସିଲେ, ଭାବିଲେ ଦେଖ ସମୟ କେଉଁପରି ବିପରୀତ ହୋଇଛି । ଯେଉଁ ବେଙ୍ଗ ସାପର ଭୋଜନ, ସେହି ଆଜି ସାପ ଉପରେ ଚଢି ଯାଉଛି । ସର୍ପ ତାର ବାହନ ହୋଇଛି । ସର୍ପ ସ୍ୱାମୀଜୀଙ୍କର ମନୋଗତ ଭାବ ବୁଝିଲା ଏବଂ ସେଥିପାଇଁ କହିଲା—

ମେଢକ ବାହନ ହୌଁ ନହୀଁ, ସ୍ୱାମୀଜୀ ! ତୁମ ହଁସୋ ଚୌଁ ।<br>
ଅବସର କୋ ପରଖୁଁ ଅବହିଁ, ଘୃତ ତୈଁ ଅନ୍ଧୋ ବିପ୍ର କେଂ ॥

ଏହାଶୁଣି ସ୍ୱାମୀଜୀ ପଚାରିଲେ, "ସର୍ପ ଦେବତା, ଆପଣ କିପରି ଅବସରର ଅପେକ୍ଷାରେ ଅଛନ୍ତି । ଘୃତ ପାଇଁ ବ୍ରାହ୍ମଣ ଭଲା କେଉଁପରି ଅନ୍ଧ ହୋଇଗଲା ! ଯଦି ଉଚିତ ମନେ କରୁଥାନ୍ତି ତା'ହେଲେ ମୋତେ ସେକଥା କହନ୍ତୁ !"

ସାପ କହିଲା, "ଭଗବନ୍, ଆପଣାର କୌଶଳ ଏହି ଯେ କେତେବେଳେ ପୁରୁଷକୁ ବଳବାନ ହୋଇ ମଧ୍ୟ ନିର୍ବଳର ଆଚରଣ କରିବାକୁ ପଡ଼ିଥାଏ, ଆଖି ଥାଇ ମଧ୍ୟ ଅନ୍ଧ ହେବାକୁ ପଡ଼େ । ଅନୁକୂଳ ସମୟ ଆସିଲେ ଆପଣାର ବଳ ପ୍ରଦର୍ଶନ ପୂର୍ବକ ପ୍ରତିପକ୍ଷକୁ ପରାସ୍ତ କରାଯାଏ । ଏ ବିଷୟରେ ଏକ ପ୍ରାଚୀନ କଥା ଅଛି ଶୁଣନ୍ତୁ ।

ଜଣେ ବ୍ରାହ୍ମଣ ଥିଲେ । ବିଦ୍ୟାବନ୍ତ ପଣ୍ଡିତ ଜଣେ । ପାଠଶାଳାରେ ଶିକ୍ଷକ ଥିଲେ । ତାଙ୍କର କୌଣସି ସନ୍ତାନ ନଥିଲେ । ବୃଦ୍ଧାବସ୍ଥାରେ ପତ୍ନୀ ମରିଗଲା । ଶୋକ ହେତୁ ତାଙ୍କର ବୁଦ୍ଧି ଭ୍ରଷ୍ଟ ହୋଇଗଲା । ଗୋଟିଏ ଯୁବତୀ ସହିତ ସେ ଦ୍ୱିତୀୟ ବିବାହ କଲେ । ବୃଦ୍ଧର ପତ୍ନୀଭାବରେ ତା'ର ଆଚରଣ ସ୍ୱଭାବ ଯାହା ହେବାକଥା ତାହାହିଁ ହେଲା । ପଣ୍ଡିତଙ୍କ ସାଙ୍ଗରେ ସେ ଯୁବତୀର ପଟୁ ନଥିଲା । ସେ ଶାରୀରିକ ଦୃଷ୍ଟିରୁ ମଧ୍ୟ ହୃଷ୍ଟପୁଷ୍ଟାଙ୍ଗୀ ଥିଲା । ପଣ୍ଡିତଙ୍କର ଶରୀର ମଧ୍ୟ ସୁସ୍ଥ ସବଳ ଥିଲା । ପ୍ରଥମ ପତ୍ନୀଟି ତାଙ୍କୁ ଭଲଭାବରେ ଖୁଆଉ ପିଆଉ ଥିଲା । ମାତ୍ର ଯେଉଁଦିନ ଠାରୁ ଇଏ ଆସିଲା ସେ ପଣ୍ଡିତଙ୍କୁ ଘିଅ ଦୁଧ ଆଦି ଦେବା ବନ୍ଦ କରିଦେଲା । ସେ ତା'ର ଯଥେଷ୍ଟ ଖାଏ ଆଉ ଯଥେଚ୍ଛାଚାର କରେ । ଘରେ ଯେଉଁସବୁ ମୂଲ୍ୟବାନ ପଦାର୍ଥ ଥାଏ ନିଜ ଭାଇ ପାଖକୁ ପଠାଇ ଦେଉଥାଏ । ପଣ୍ଡିତଙ୍କର

Digitized by srujanika@gmail.com

ଭାରି ଚିନ୍ତା ହେଲା । ସେ ତାକୁ କିଛି କହି ବି ପାରୁ ନଥିଲେ । କହିବେ ଯଦି ସେ ଗୋଟିକୁ ଶହକରି ଓଲଟି ଶୁଣେଇ ଦେବ । ସେ ଭାରି ଦୁଃଖୀ ହେଲେ ।

ତାଙ୍କର ଜଣେ ଯୁବାମିତ୍ର ଥିଲା । ସେ ତାଙ୍କୁ ତାଙ୍କର ଦୁଃଖ କଥା କହିଲେ । ମିତ୍ର କହିଲା, "ପଣ୍ଡିତ ମହାଶୟ, ଏମିତିରେ କାମ ଚଳିବ ନାହିଁ । ମନୁଷ୍ୟ ଭୟକରେ । ଭୟ ବଳବାନ ପ୍ରତି ହୋଇଥାଏ । ଆପଣ ଯଥେଷ୍ଟ ଘିଉଡାହାର କରନ୍ତୁ । ଯଥେଷ୍ଟ ବଳ ହେବା ପରେ ତାର ଉତ୍ତମ ମଧ୍ୟମ ବ୍ୟବସ୍ଥା କରିବେ ।"

ପଣ୍ଡିତ ମହାଶୟ ଦୁଃଖିତ ହୋଇ କହିଲେ, "ମୁଁ କଣ କରି ପାରିବି ? ସବୁ ତ ତା'ର ହାତରେ । ସେ ଘରର ସ୍ୱାମିନୀ ପାଲଟି ବସିଛି । ଯାହା କହିବ ଶୁଖିଲା ଦେଉଛି ସେଥିରେ ଚଳେଇ ନେବାକୁ ହେଉଛି । ନିଜେ ତା'ର ମଉଜରେ ଭୋଜନ ଚଳେଇଛି । ବାସି, ଶୁଖିଲା ମୋ ଭାଗ ।"

ଏହା ଶୁଣି ଯୁବକ କହିଲା, "ଭଲକଥା, ମୁଁ ଆପଣଙ୍କୁ ଉପାୟଟିଏ କହୁଛି । ଆପଣ ତାକୁ ଯାଇ କୁହନ୍ତୁ, ଯେ ଆପଣଙ୍କୁ ଟିକିଏ କମ କମ ଦେଖା ଯାଉଛି । ଏଠି ବନଦୁର୍ଗା ଅଛନ୍ତି । ସେ ଅଷ୍ଟମୀ ବ୍ରତ କରି ନବମୀ ସାୟଂ କାଳରେ ଦୁର୍ଗାଦେବୀଙ୍କର ଭକ୍ତ ଭାବରେ ପୂଜା କରିବ । ସେତେବେଳେ ସେ ଆପଣଙ୍କର ଆଖି ଭଲ ହୋଇଯାଉ ବୋଲି ପ୍ରାର୍ଥନା କରିବ । କହିବ ଆପଣଙ୍କର ଆଖି ଭଲ ହୋଇଗଲେ ସେ ଦେବୀଙ୍କର ବିଶେଷ ପୂଜା କରିବ । ମାନସିକ ଚଢ଼େଇବ । ଆପଣ ଦେଖିବେ ସେତେବେଳେ ଆକାଶବାଣୀ ହେବ ।"

ପଣ୍ଡିତ ମହାଶୟ କହିଲେ, "ସେଥିରେ କଣ ବିଶେଷ ଲାଭ ହେବ ?"

ସେ ଯୁବକ କହିଲା, "ଲାଭ ତ ଆପଣ ପ୍ରତ୍ୟକ୍ଷ ଦେଖିବେ । ସେ ବରମାଗିବ ଆପଣଙ୍କର ଆଖି ଯେମିତି ପୂରା ଫୁଟିଯାଉ, ଆଉ ଆପଣ ସେତେବେଳେ ଦେଖିବେ କଣ କଣ ହେବ !"

ପଣ୍ଡିତ ମହାଶୟ କହିଲେ, "ଠିକ କଥା, ସେଇଆ କରିବ ।" ତା' ପରଦିନ ସେ ପତ୍ନୀକୁ କହିଲେ, "ଜାଣିଛ, ମୋତେ କେଜାଣି କେମିତି ଟିକିଏ କମ ଦେଖା ଯାଉଛି ।"

ଏହାଶୁଣି ସେ ମନେମନେ ଆନନ୍ଦିତ ହେଲା । ହେଲେ ଉପରେ ଉପରେ ସହାନୁଭୂତି ଦେଖେଇ କହିଲା, "କମ କେମିତି ଦେଖାଯାଉଛି ? ଏଇନେ ଆପଣଙ୍କର ବୟସ ବା କେତେ ଯେ ! ଆପଣ କୌଣସି ଔଷଧ ପତ୍ରର ବ୍ୟବସ୍ଥା କରନ୍ତୁ ।"

Digitized by srujanika@gmail.com

ପଣ୍ଡିତ ମହାଶୟ କହିଲେ, "ଔଷଧ ପତ୍ରରେ ଏ ରୋଗ ଭଲ ହେବ ନାହିଁ । ତମେ ଇଚ୍ଛା କଲେ ସବୁ ହେବ ।"

ସେ ଆପଣାର ମନୋଗତ ଭାବ ଲୁଚେଇ କହିଲା, "ହିଁ, ହିଁ, କହନ୍ତୁ । ମୁଁ କଣ କଲେ ଆପଣଙ୍କର ସେ ରୋଗ ଭଲ ହେବ । ମୁଁ ସେଇଆ କରିବି । ମୋର ତ ସବୁକିଛି ଆପଣ ।"

ପଣ୍ଡିତ ମହାଶୟ କହିଲେ, "ଆସନ୍ତା କାଲି ଅଷ୍ଟମୀ । ତମେ କାଲି ସାରାଦିନ ବ୍ରତପାଳନ କରି ନବମୀ ସନ୍ଧ୍ୟାରେ ଭକ୍ତି ଭାବରେ ଦୁର୍ଗାଦେବୀର ପୂଜା ଆରାଧନା କର । ମାନସିକ କର । କନ୍ୟା-ଭୋଜନ ଦେବ । ସେତେବେଳେ ଆକାଶବାଣୀ ହେବ । ଦେବୀ ଯେଉଁଭଳି ନିର୍ଦ୍ଦେଶ ଦେବେ ସେପରି କଲେ ତମର ମନୋକାମନା ପୂର୍ଣ୍ଣ ହେବ ।"

ପଣ୍ଡିତାଣୀ ସେ କଥାରେ ରାଜି ହୋଇଗଲେ । ଅନ୍ୟଦିନ ସେ ଅଷ୍ଟମୀ ବ୍ରତ ପାଳନ କଲେ । ଦୁର୍ଗା ଦେବୀଙ୍କୁ ପ୍ରାର୍ଥନା କଲେ । ନବମୀ ଦିନ ମଧ୍ୟ ଉପବାସ କଲେ । ପୂଜାର ସବୁ ସାମଗ୍ରୀ ନେଇ ସୂର୍ଯ୍ୟାସ୍ତ ହେବା ମାତ୍ରକେ ଦେବୀଙ୍କର ମନ୍ଦିରକୁ ଗଲେ । ଆଉ କେତେଜଣ ମାଆ ମଧ୍ୟ ସେଠାରେ ପୂଜା କରୁଥିଲେ । ସେମାନେ ତାଙ୍କର ପୂଜା ସାରି ଚାଲିଗଲେ ଓ ତାପରେ ପଣ୍ଡିତାଣୀ ମନ୍ଦିରରେ ଏକୁଟିଆ ରହିଲେ । ତାପରେ ସେ ଅନେକ ଭକ୍ତିରେ ଦେବୀଙ୍କର ପୂଜା କଲେ । ସ୍ନାନ, ଚନ୍ଦନ, ପୁଷ୍ପ, ଧୂପ, ଦୀପ, ନୈବେଦ୍ୟ, ସୂତ୍ର, ଇକ୍ଷୁ ଫଳ ତାମ୍ବୁଲ ଦକ୍ଷିଣା ଆଦି ସମର୍ପିତ କରି ଆଳତି କଲେ । ପ୍ରଦକ୍ଷିଣ କଲେ ଏବଂ କର ଯୋଡ଼ି ପ୍ରଣାମ କରି କହିଲେ, "ହେ ଦେବୀ, ମୋ ପତିଙ୍କର ଦୁଇଟି ଯାକ ଆଖି ଫୁଟି ଯାଉ । ମୁଁ ତମର ବିଶେଷ ପୂଜା କରିବି । କନ୍ୟା-ଭୋଜନ କରାଇବି ।"

ପଣ୍ଡିତ ମହାଶୟଙ୍କର ସେହି ପରାମର୍ଶଦାତା ମିତ୍ର ପୂର୍ବରୁ ସେହି ମନ୍ଦିରରେ ଉପରେ ଥିବା ଏକ ଗୁପ୍ତ ସ୍ଥାନରେ ଲୁଚି ରହିଥିଲେ । ଉପରେ ଗୁନ୍ଦୁଆ ଲାଗିଥିଲା । ସନ୍ଧ୍ୟାପରେ ଅନ୍ଧାରରେ କୌଣସି କଥା ଦିଶୁନଥିଲା । ସେ ଉପରୁ ଥାଇ କହିଲେ, "ହଁ ତୋର ମନୋକାମନା ପୂର୍ଣ୍ଣ ହେବ । ଆଜିଠାରୁ ତୁ ବାଟି ଗୁଣି ତୋର ପତିଙ୍କୁ ଅଧ ପାଆ ବାଦାମ, ଅଧ ପା' ଗାଈ ଘିଅ, ଏଗାରଟି ଗୋଲ ମରିଚ, ଅଧ ପା' ମିଶ୍ରୀ, ତିନି ପା' ଦୁଧ ମିଶେଇ ପ୍ରତିଦିନ ଦେବୁ । ଶହେ ଦିନ ଏଭଳି ପ୍ରୟୋଗ କଲେ ତାଙ୍କ ଆଖି ଆପେ ଆପେ ଫୁଟିଯିବ । ଏକଥା କାହାକୁ କହିବୁ ନାହିଁ । କହିଲେ ତୋ' ଆଖି ଫୁଟିଯିବ ।"

ଏହି ଆକାଶବାଣୀ ଶୁଣି ପଣ୍ଡିତାଣୀ ଅନେକ ପ୍ରସନ୍ନ ହେଲେ । ସେ ସେଠାରୁ ତୁରନ୍ତ ଚାଲି ଆସି ଘରେ ପହଞ୍ଚିବା ମାତ୍ରକେ ଆକାଶବାଣୀ ଭଳି ସରଞ୍ଜାମ କରି ପତିଙ୍କୁ ଆଣି ଦେଲେ । ପଣ୍ଡିତ ମହାଶୟ କହିଲେ, "କଣ ଏସବୁ ।"

Digitized by srujanika@gmail.com

ପତ୍ନୀ କହିଲେ, "ଘୃତ, ମିଶ୍ରୀ, ବାଦାମ ଓ ଗୋଲମରିଚ ଏବଂ ତା ସାଙ୍ଗରେ ଦୁଧ ।"

ପଣ୍ଡିତ ମହାଶୟ କହିଲେ, "ନା' ମୁଁ ଏସବୁ ଖାଇବ ନାହିଁ, ଏଥିରେ ତ ଆଖି ଫୁଟେ । ଭଲ ଆଉ ହବ କଣ ?"

ପଣ୍ଡିତଆଣୀଙ୍କର ଆହୁରି ଆହୁରି ବିଶ୍ୱାସ ହୋଇଗଲା । କହିଲେ, "ମୁଁ କଣ ଜାଣେ, ଦେବୀ ଏହି ଆଜ୍ଞା ଦେଲେ । ଆପଣ ଶୀଘ୍ର ଦିନ ଏମିତି ନିୟମିତ ଖାଇବେ ।"

ପଣ୍ଡିତ ମହାଶୟ ସରଳ ଭାବରେ କହିଲେ, "ଭଲ କଥା, ତୁ ତ ମୋର ସ୍ତ୍ରୀ । ମୋର କ'ଣ ଅନିଷ୍ଟ ପାଇବୁ ? ଦେବୀ ଯାହା ଆଜ୍ଞା ଦେଲେ କର ।" ଏତିକି କହି ସେ ସବୁ ଉଦରସ୍ଥ କରିନେଲେ । କ୍ରମେ ପାଚିଲା ଆମ୍ବପରି ଦିଶିବାକୁ ଲାଗିଲେ । ଆଖିରେ ନବ ଜ୍ୟୋତି, ଶରୀରରେ ନବଜୀବନ ସଞ୍ଚାରିତ ହେବା ଭଳି ମନେ ହେଲା । ତଥାପି ମଧ୍ୟ ସେ ଆପଣାର ଭାବନାକୁ ଗୋପନ ରଖି କାଳର ପ୍ରତୀକ୍ଷା କରିବାକୁ ଲାଗିଲେ ଏବଂ ଦେଖୁଥିଲେ ମଧ୍ୟ ଅନ୍ଧ ହୋଇ ରହିଲେ ।

ତାପରେ କିଛି ଦିନପରେ ପଣ୍ଡିତ ମହାଶୟ ପୁରାପୁରି ଆଖି ବନ୍ଦ କରିନେଲେ ; ଅଣ୍ଡାଳି ଆଣ୍ଡାଳି ଚାଲିବାକୁ ଲାଗିଲେ । ଯେଉଁଠାରେ ସ୍ତ୍ରୀ ବସେଇ ଦିଏ ସେଠାରେ ବସି ଯାଆନ୍ତି, ଯୁଆଡ଼େ ନେଇ ଯାଏ ଚାଲି ଯାଆନ୍ତି । ସ୍ତ୍ରୀ ଅତି ପ୍ରସନ୍ନ ହେଉଥାଏ । ସେ ଘିଅର ପରିମାଣ ବି ଦିନକୁ ଦିନ ବଢେଇବାକୁ ଲାଗିଲା । ଏଇନେ ତ ସେ ଖୋଲାଖୋଲି ଖେଳିବା ଆରମ୍ଭ କରି ଦେଇଛି । ଯାହା ବସ୍ତୁ ସୁବିଧାରେ ମିଳେ ମା' ଘରେ ପହଞ୍ଚେଇ ଦିଏ । ପଣ୍ଡିତ ମହାଶୟ ଦେଖୁଥିଲେ ମଧ୍ୟ ଅନ୍ଧଭଳି ଥାଆନ୍ତି । ପ୍ରଥମେ ପଣ୍ଡିତ ମହାଶୟଙ୍କର ନିରାଦର କରିବାକୁ ସେ ସଙ୍କୋଚ କରୁଥିଲା, ଏଇନେ ଆଉ ସେ ସଂକୋଚ ମଧ୍ୟ ନାହିଁ । ପଣ୍ଡିତ ମହାଶୟ, ପାଣି ମାଗିଲେ ସଫା ସଫା କହିଦିଏ, "ସାରାଦିନ ତମକୁ ଏମିତି କିଏ ପାଣି ଦେଉଥିବ ।"

ସୂତ କହୁଛନ୍ତି, "ହେ ମୁନିଗଣ, ଅନ୍ୟଦିନେ ସେ ଯୁବକ ପଚାରିଲା, 'କହନ୍ତୁ ପଣ୍ଡିତ ମହାଶୟ, ଆଉ ଖବର କଣ ?"

ପଣ୍ଡିତ ମହାଶୟ ଖୁସିରେ କହିଲେ, "ଖବର ଆଉ କ'ଣ ଅଛି । ତା'ର ଯାଇ ଠିକଣା ଠେଇଁ ବାକି । ଯେଉଁ ଔଷଧ ସେବନ କରୁଛୁ ସେଥିରେ ଶୀଘ୍ର ଦିନରେ ତ ମୁଁ ଯୁବକ ପାଲଟି ଯିବି ।"

ଯୁବକ ପଣ୍ଡିତ ମହାଶୟଙ୍କର କାନ ପାଖରେ କହିଲା, "ଦେଖନ୍ତୁ, ଆଉ ଏକ କଥା, ଦଶ ପାଞ୍ଚ ଦିନ ପରେ କହିବେ ମୋତେ ତ ଆହୁରି କମ ଦେଖାଯାଉଛି । ପୁଣି କିଛି

Digitized by srujanika@gmail.com

ଦିନ ପରେ କହିଦେବେ ମୋତେ ଆଉ ମୋଟେ ଦେଖା ଯାଉନ । ଆଉ ତା'ର ହାତଧରି ବୁଲିବା ଆରମ୍ଭ କରିଦେବେ ।"

ପଣ୍ଡିତ ମହାଶୟ ତ ତାଙ୍କୁ ଗୁରୁ ମାନି ନେଇଥିଲେ । ସେ ବଧୂବଶୀକରଣ ମନ୍ତ୍ର କରିଥିଲି ନା ! ସେ ତା'ର ପରାମର୍ଶ ଅନୁସାରେ ଦିନେ କହିଲେ, "ତୁ ମୋତେ କଣ ଏମିତି ଖାଇବାକୁ ଦେଉଛୁ, ଯେଉଥିରେ ପ୍ରତିଦିନ ମୋ ଆଖିର ଜ୍ୟୋତି କମି କମି ଯାଉଛି ।" ଏହା ଶୁଣି ସେ ଆହ୍ମଣ ଖିସିରେ ଘିଅର ମାତ୍ରା ବଢ଼େଇବା ଆରମ୍ଭ କରିଦେଲା । ସୂତ କହୁଛନ୍ତି, ହେ ମୁନିଗଣ, ଆପଣ ଜାଣନ୍ତି ନାହିଁ ଗୃହସ୍ଥାଶ୍ରମର କେତେ କଷ୍ଟ ? ଯଦି ଭାଗ୍ୟକୁ ପତ୍ନୀ ସତୀ, ସାଧ୍ୱୀ, ଆପଣା ଆଚରଣର ଅନୁକୂଳ ମିଳିଛି ତାହେଲେ ତ କିଛି ସୁଖର ଆଭାସ ଅଛି । ମାତ୍ର ମହାଭାଗ, ଏଭଳି ସହଧର୍ମିଣୀ ହଜାରକେ ଗୋଟିଏ ମିଳିବେ; ସେ ପୁଣି ଭାଗ୍ୟଶାଳୀ ବ୍ୟକ୍ତିକୁ । ନହେଲେ ଏମିତି ବି ମିଳନ୍ତି ଯିଏ କଥା କଥାରେ ଲଢ଼େଇ କରିବାକୁ ଅଣ୍ଟା ଭିଡ଼ି ଠିଆ ହୋଇ ଯାଉଥିବ । ଏତେ କଥାରେ ବି ମନୁଷ୍ୟ ଏ ମାୟା ଜାଲରୁ ମୁକ୍ତ ହୋଇ ପାରୁନାହିଁ । ସବୁ ସହି ସେଇଥିରେ ପଡ଼ି ରହୁଛି । ରାତି ଦିନ ଭଲ ମନ୍ଦ ଶୁଣିଛି । ମହାରାଜ, ସାଧାରଣ ସ୍ତ୍ରୀମାନେ ପତିଙ୍କର ଅପମାନ କରିବାରେ ଗୌରବ ଅନୁଭବ କରିଥାନ୍ତି । ସଖୀ ସହଚରୀ ମାନଙ୍କ ସାଙ୍ଗରେ ବସି ଗର୍ବରେ ସେଇ କଥା କହନ୍ତି. "ସେ ଆସିଲେ, ଖାଇବାକୁ ମାଗିଲେ, ମୁଁ କହିଲି, ସେଇଠି ଅଛି ଖାଇ ନିଅ । ସେଦିନ ମୋର ରୋଷେଇ କରିବା ଇଚ୍ଛା ନଥିଲା, ମୁଁ କହିଦେଲି ମୋ ହାତରେ ହେବନାହିଁ ତୁମେ ତୁମର ରାନ୍ଧ ।" ଏମନ୍ତ କଥା କହି ସେମାନେ ଗର୍ବ ଅନୁଭବ କରନ୍ତି । ଦେବରମାନଙ୍କୁ ତ ସେମାନେ କାଣୀ ଆଖିରେ ବି ଦେଖନ୍ତି ନାହିଁ । କେତେବେଳେ ଯଦି ଘଅର କହୁଁ କହୁଁ କହି ଦେଲା ଆଜି ତରକାରୀରେ ଲୁଣ ଟିକିଏ କମ ହେଲା ବା ଡ଼ାଲି ଠିକ ଠିକ ସିଝି ନାହିଁ, ତା'ହେଲେ ଦେଖ ତାଙ୍କର ରୂପ ! ଦଶ ଥର ସେଇ ଗୋଟିଏ କଥା କହିବେ । 'ଦେଖ, ମୋତେ ତ ଏମିତି ରାନ୍ଧି ଆସେ । ତୁମେ ନେଇ ଆସ ଭଲ କରେଇ ଭଲ ଗୋଟେ ସ୍ତ୍ରୀ, ଯେ କି ତୁମକୁ ଛପନ ଭୋଗ ରାନ୍ଧି ଖୁଆଉ ଥିବ ।' ଆଉ କେଜାଣି କଣ କଣ କହି ବସନ୍ତି ।"

ଏହା ଶୁଣି ହସି ହସି ଶୌନକ କହିଲେ, "ହେ ସୂତ, ସେତିକ ଥାଉ । କଆଁ ସେ ଗୃହ-ଜଞ୍ଜାଳ ଶୁଣାଉଛନ୍ତି ଆମକୁ ? ଆପଣ ତ ସେ ଅନ୍ଧ ବ୍ରାହ୍ମଣ କଥା କହୁଥିଲେ । ତାକୁ ସାରି ସମୁଦ୍ର ମନ୍ଥନ କଥା କହିବା ହୁଅନ୍ତୁ ।

ସୂତ ମଧ୍ୟ ହସି ଦେଲେ, କହିଲେ. "ହେ ଋଷିଗଣ, ଆପଣମାନେ ଧନ୍ୟ ଯେ ଆପଣମାନେ ଗୃହ ଜଞ୍ଜାଳରୁ ମୁକ୍ତ । ମହାଭାଗ, ଆପଣମାନେ ସେଥିରେ ବୁଡ଼ି ରହିଥିଲେ କଣ ସାରାଦିନ ଏଇଠି ବସି କଥା ଶୁଣନ୍ତେ ! ଆଚ୍ଛା ମୁଁ ଶେଷ କରୁଛି । ହଁ, ଯେଉଁ-

Digitized by srujanika@gmail.com

ଧନ ଅନେଶ୍ୱତ ଧନ ହେଲ, ସେ ଧନ ପଣ୍ଡିତ ମହାଶୟ ଅଧ୍ୟାପନ ଛାଡ଼ି ଦେଲେ । ପଣ୍ଡିତଆଣୀଙ୍କର ହାତ ଧରିନେଇ କହିଲେ, "ଏ ଯାଏଁ ମୁଁ ଅନ୍ଧ ଥିଲି । ତେଣୁ ଏସବୁ ନାଟ ଚାଲିଥିଲା । ଏଇନେ ମୋ ଆଖିରେ ନୂଆ ଜ୍ୟୋତି ସଞ୍ଚାରିତ । ଆଉ ସେ ନାଟ ଚାଲିବ ନାହିଁ !" ହାତ ଧରିବା ମାତ୍ରକେ ପଣ୍ଡିତଆଣୀ ବୁଝିଗଲା ଯେ ପଣ୍ଡିତ ମହାଶୟ ଏଇନେ ଅଧିକ ବଳଶାଳୀ ; ସେ ଡ଼ରିଗଲା । କଣ୍ଟିତାକୁ ପଣ୍ଡିତେ ରଖିଲେ ତେଣିକି । ତାକୁ ଖାଇବା ମୁଠାକ ହିଁ ଦେଇ ରଖିଲେ । ସେଇ ଦିନରୁ ସେ ସୁଧୁରିଗଲା । ତେଣୁ ହେ ମୁନିଗଣ, ଯେତେବେଳ ପର୍ଯ୍ୟନ୍ତ ବଳବନ୍ତ ନ ହୋଇଛ, ସେତେବେଳ ପର୍ଯ୍ୟନ୍ତ କାଳର ପ୍ରତୀକ୍ଷା କରିବା ଉଚିତ । ଏଣୁ ଭଗବାନ ଦେବତାମାନଙ୍କୁ ପରାମର୍ଶ ଦେଲେ ଯେ ତୁମେମାନେ ଦୈତ୍ୟମାନଙ୍କ ସାଙ୍ଗରେ ମିତ୍ରତା ସ୍ଥାପନ କର । ଆପଣା ସ୍ୱାର୍ଥ ସାଧନ କର । ଯେତେବେଳେ ବଳଶାଳୀ ହେବ ତେତେବେଳେ ମାରି ଘଉଡ଼େଇ ଦେବେ ।"

ଏହା ଶୁଣି ଶୌନକ କହିଲେ, "ତା'ହେଲେ ଭଗବାନଙ୍କର ପରାମର୍ଶ ଶୁଣି ଦେବତାମାନେ କଣ କଲେ ? ସେମାନେ ଅସୁର ଓ ଦୈତ୍ୟମାନଙ୍କ ନିକଟକୁ ସନ୍ଧି କରିବା ଉଦ୍ଦେଶ୍ୟରେ ଗଲେ ନା ନାହିଁ ?"

ଏହାର ଉତ୍ତରରେ ଶ୍ରୀ ସୂତ କହିଲେ, "ଯେଉଁପରି ମହାରାଜ ପରୀକ୍ଷିତଙ୍କର ପ୍ରଶ୍ନର ଉତ୍ତରରେ ମୋର ଗୁରୁଦେବ ସମୁଦ୍ର ମନ୍ଥନର କଥା ଶୁଣେଇ ଥିଲେ ମୁଁ କହୁଛି । ଅସୁରମାନଙ୍କ ସାଙ୍ଗରେ ସନ୍ଧି କରିବାକୁ ଦେବତାମାନେ ଗଲେ । ମୁଁ ସେହି ପ୍ରସଙ୍ଗ କହୁଛି ଆପଣମାନେ ଶ୍ରବଣ କରନ୍ତୁ ।"

## ଛପ୍ପୟ

ଯୋଚ ସମଝି କେଁ କରୀ ମିତ୍ରତା ମୂଷକ ତେଁ ଅହି ।
କଟବାଇ ସନ୍ଦୂକ ପ୍ରେମ କୀ ବାତେଁ କହି କହି ॥
ଜବ ଜାନେ୍ୟା ପଥ ବନେ୍ୟା ତୁରତ ମୂଷକ ଭଖି ଲୀନ୍ହୋ ।
ତ୍ୟୋ ବୈରୀତେଁ ମେଲ କରତ୍ୟୋ କାରଜ ନିଜ କୀନ୍ହୋ ॥
ଦେବନ ତେଁ ଶ୍ରୀହରି କହେଁ, ଏସେ ହୀ ତୁମ ଜାଇ କେ ।
ଦୈତ୍ୟନ ସୋ ମୈତ୍ରୀ କରୌ, ସାଧୋ ସ୍ୱାର୍ଥ ଫସାଁଇ କେ ॥

—*—

Digitized by srujanika@gmail.com

# ଦେବତା ଓ ଦୈତ୍ୟମାନଙ୍କ ମଧ୍ୟରେ ସନ୍ଧି

**ତତୋ ଦେବାସୁରାଃ କୃତ୍ୱା ସଂବିଦଂ କୃତସୌହୃଦାଃ ।**
**ଉଦ୍ୟମଂ ପରମଂ ଚକ୍ରୁରମୃତାର୍ଥେ ପରଂତପ ॥**

—ଶ୍ରୀ ଭା. ୮ । ୬ । ୩୨

## ଛପ୍ପୟ

ହରି ସମ୍ମତ ସିର ଧାରି ଗୟେ ଅସୁରନ ଢିଁଗ ସୁରଗନ ।
ଶତ୍ରୁନ ଆବତ ନିରଖି ଦୈତ୍ୟ ସୋଚେଁ ମନହୀ ମନ ॥
କହି କାରନ ସୁର ଶସ୍ତ୍ର ତ୍ୟାଗି ହମାରେ ଢିଁଗ ଆୟେ ।
କରି ସ୍ୱାଗତ ସତକାର ଅସୁରପତି ବଲି ବୈଠାୟେ ॥
ବୋଲେ ସୁରପତି ସବନ ତେଁ, ଭଇ ହମ ହେଁ ସୁର ଅସୁର ।
ପିତା ଏକ ମାତା ପୃଥକ, କ୍ୟୌଁ ଫିର ଝଗରେଁ ପରସ୍ପର ॥

କଥା ଅଛି "ମୁଣ୍ଡେ ମୁଣ୍ଡେ ମତିର୍ଭିନ୍ନା" । ଯେତେ ମୁଣ୍ଡ ସେତେ ମତ । ଯେପରି ସମସ୍ତଙ୍କର ରୂପ ଅଥବା ବାଣୀ ଏକ ପ୍ରକାର ନୁହେଁ । ପ୍ରତ୍ୟେକଙ୍କର ହସ୍ତାକ୍ଷର ମଧ୍ୟ ଏକ ପ୍ରକାର ହୁଏ ନାହିଁ । ଏପରିକି ହାତ ପାଦର ରେଖାମାନେ ମଧ୍ୟ ଭିନ୍ନଭିନ୍ନ । ଗୋଟିଏ ରଜବୀର୍ଯ୍ୟରୁ ଜନ୍ମ ଗ୍ରହଣ କରିଥିବା, ଗୋଟିଏ ଉଦରରୁ ଜନ୍ମଗ୍ରହଣ କରିଥିବା ଭାଇ ଭଉଣୀ ମଧ୍ୟରେ ବି ଆକାଶ ପାତାଳର ପ୍ରଭେଦ ରହିଛି । ଯଦି ଜଗତରେ ଜଣକର ସ୍ୱାର୍ଥ ଆଉ ଜଣଙ୍କର ସ୍ୱାର୍ଥ ସହିତ ବାଧା ହୋଇ ନଥାନ୍ତା, ତଥାପି ମଧ୍ୟ ଜଣେ ଜଣକଠାରୁ ପୃଥକ୍ ହିଁ ରହନ୍ତେ । କେହି କାହା ସାଙ୍ଗରେ କଥା ପର୍ଯ୍ୟନ୍ତ ହେଉ ନଥିଲେ ହେଁ ସ୍ୱାର୍ଥ ସେହି ବିଭିନ୍ନତା ମଧ୍ୟରେ ଏକତା ଭରି ଦିଏ । ଗୋଟିଏ ସ୍ୱାର୍ଥର ଲୋକେ ବିଭିନ୍ନ ବର୍ଗର ହୋଇଥିଲେ ହେଁ ସ୍ୱାର୍ଥବଶତଃ ମିଳିତ ହୋଇଥାନ୍ତି । ବାଣିଜ୍ୟରେ ଭିନ୍ନଭିନ୍ନ ସମ୍ପ୍ରଦାୟ

Digitized by srujanika@gmail.com

ଭିନ୍ନଭିନ୍ନ ମତର ଲୋକେ ବଞ୍ଚିକ କରନ୍ତି । ରାଜାଙ୍କ ନିକଟରେ ଭିନ୍ନଭିନ୍ନ ମତର ଲୋକେ ଗୋଟିଏ ସ୍ୱାର୍ଥରେ ବାନ୍ଧି ହୋଇ ସେବକ ଭାବରେ ଏକତ୍ର ରହିଥାନ୍ତି, କାର୍ଯ୍ୟ କରିଥାନ୍ତି । ଚୋରମାନଙ୍କ ମଧ୍ୟରେ ଭିନ୍ନ ମତ, ଭିନ୍ନ ବିଚାର, ବିଭିନ୍ନ ରୁଚିର ମନୁଷ୍ୟ ଥାଆନ୍ତି, ମାତ୍ର ସମସ୍ତଙ୍କର ଚୋରି କରିବାର ଗୋଟିଏ ମାତ୍ର ସ୍ୱାର୍ଥ ଥାଏ ବୋଲି ଦଳବାନ୍ଧି ରହିଥାନ୍ତି. ଡକାୟତି କରନ୍ତି । ଡକାୟତି ଦ୍ୱାରା ଲୁଣ୍ଠନ କରିଥିବା ସମ୍ପତ୍ତି ନିୟମତଃ ବାଣ୍ଟିକୁଣ୍ଟି ନେଇଥାନ୍ତି । କେବଳ ସଂସାରରେ ସ୍ୱାର୍ଥର ପ୍ରେମ ଓ ଶାଠ୍ୟ ମିଶ୍ରିତ ସୌହାର୍ଦ୍ଦ ରହିଛି । ଯାର ଅନିତ୍ୟ ଭୋଗର ନିତ୍ୟ ପ୍ରବୃତ୍ତି, ଯେ ଅସତ୍ତ୍ୱକୁ ସତ୍ତ୍ୱ ଜାଣିଛି ସେମାନେ ସ୍ୱାର୍ଥ-ରହିତ ପ୍ରେମ କଥା ଚିନ୍ତା ମଧ୍ୟ କରି ପାରିବେ ନାହିଁ ।

ଶ୍ରୀ ଶୁକଦେବ କହୁଛନ୍ତି, "ରାଜନ୍, ଯେତେବେଳେ ଭଗବାନ ଦେବତାମାନଙ୍କୁ ଦୈତ୍ୟଙ୍କ ସହିତ ସନ୍ଧି କରି ନେବାକୁ ପରାମର୍ଶ ଦେଲେ, ଦେବତାମାନେ ସେତେବେଳେ ପଚାରିଲେ, "ପ୍ରଭୁ, ସେମାନଙ୍କ ସାଙ୍ଗରେ ସନ୍ଧିକରି କେଉଁକାର୍ଯ୍ୟ କରିବୁ ?"

ଏହାଶୁଣି ଶ୍ରୀ ଅଜିତ ଭଗବାନ କହିଲେ, 'ଦେଖ, ଦୈତ୍ୟମାନେ ଅଧିକ ବଳଶାଳୀ । ତେଣୁ ସେମାନଙ୍କ ସାଙ୍ଗରେ ମିଳିତ ହୋଇ ତୁମେମାନେ ସମୁଦ୍ର ମନ୍ଥନ କରି ଅମୃତ ବାହାର କରିବାକୁ ଉଦ୍ୟମ କର ।

ଦେବତାମାନେ ପଚାରିଲେ, "ପ୍ରଭୁ, ଅମୃତରୁ କଣ ଲାଭ ହେବ ?"

ଭଗବାନ କହିଲେ, "ହେବ ଆଉ କଣ ? ତୁମେମାନେ ଦେଖିଲ ଅସୁରମାନଙ୍କର ଯେଉଁମାନେ ମଲେ ତାଙ୍କୁ ଶୁକ୍ରାଚାର୍ଯ୍ୟ ତାଙ୍କର ମୃତ ସଞ୍ଜୀବନୀ ବିଦ୍ୟାବଳରେ ଜୀବିତ କରିଦେଲେ । ସେ ବିଦ୍ୟା ତୁମେମାନେ ଜାଣି ନାହିଁ । ତୁମର ଗୁରୁ ବୃହସ୍ପତି ମଧ୍ୟ ସେ ବିଦ୍ୟା ବିଷୟରେ ଅନଭିଜ୍ଞ । ତେଣୁ ତୁମ ପକ୍ଷର ଅନେକ ଦେବତା ମରିଗଲେ । ତୁମେମାନେ ଅମୃତ ପ୍ରାପ୍ତ ହୋଇ ପାନକଲେ ଅମର ହୋଇଯିବ । ତା'ପରେ ଯେତେ ଯୁଦ୍ଧକଲେ ବି ମରିବ ନାହିଁ । ତୁମେ ମରଣଧର୍ମା ଦେବତାମାନେ ତେଣିକି ଅମର ହୋଇଯିବ ।'

ଦେବତାମାନେ ଉଲ୍ଲସିତ ହୋଇ ପଚାରିଲେ, "ତେବେ ପ୍ରଭୁ, ସେ ଅମୃତ କିପରି ବାହାରିବ ? ସମୁଦ୍ର ତ ଅଗାଧ; ସେଠାରେ କେଜାଣି କେଉଁଠାରେ ଅମୃତ ଅଛି ।"

ଭଗବାନ କହିଲେ, "ଅମୃତ କଣ ସେମିତି ଦେଖାଯିବ ? ଯେଉଁପରି ଦୁଗ୍ଧର ପ୍ରତି କଣାରେ ଘୃତ ବ୍ୟାପ୍ତ ହୋଇ ରହିଛି, ଠିକ କରି ଦହି ବସିଲା ପରେ ତାକୁ ମନ୍ଥନ କଲେ ସେଥିରୁ ଘିଅ ବାହାରେ । ପ୍ରଥମେ ଦୁଧରେ କିଛି ଖଟା ଦେଇ ଦହି କରାଯାଏ ।

Digitized by srujanika@gmail.com

ପୁଣି ମନ୍ଥନଦଣ୍ଡରେ ଦଉଡ଼ି ଗୁଡ଼େଇ ନିରନ୍ତର ମନ୍ଥନ କରାଯାଏ । ସେଭଳି ମନ୍ଥନ କରାଗଲେ ଘୃତ ଉପରକୁ ଆସିଯାଏ ଓ ଦହି ପୃଥକ ହୋଇଯାଏ ।"

ଦେବତାମାନେ କହିଲେ, "ପ୍ରଭୁ, ଏ କ୍ଷେତ୍ରରେ ଚେଷ୍ଟା କଣ କରିବା । ମନ୍ଥନ ଦଣ୍ଡ କଣ ହେବ ? ଦଉଡ଼ି କଣ ହେବ ? କେଉଁପରି ମନ୍ଥନ ହେବ ?"

ଭଗବାନ କହିଲେ, "ଗୋଟିଏ କାମ କର । ଯେତେ ଯେତେ ଅମୃତସ୍ରବା ଔଷଧି ଅଛନ୍ତି, ଯେତେ ଲତା ବନସ୍ପତି ଆଦି ଅଛନ୍ତି, ସବୁ ନେଇ ସମୁଦ୍ରରେ ପକାଅ । ସବୁଠାରୁ ଶ୍ରେଷ୍ଠ ମନ୍ଦରାଚଳକୁ ମନ୍ଥନ ଦଣ୍ଡ କରାଯିବ । ବାସୁକୀ ଦଉଡ଼ି ହେବେ । ତୁମେ ସବୁ ଦେବ ଦାନବ ତାକୁ ମନ୍ଥନ କରିବ ।"

ଦେବତାମାନେ ବିନୀତ ଭାବରେ କହିଲେ, "ପ୍ରଭୁ, ଏସବୁ ଆମଦ୍ୱାରା କେମିତି ହେବ ? ଆମର କଣ ଏତେ ବଳ ଅଛି !"

ଭଗବାନ ଆଶ୍ୱାସନା ଦେଇ କହିଲେ, "ଆରେ ଦେବଗଣ । ତୁମେ ଯେଉଁ କ୍ଲୀବକୁ ସେହି କ୍ଲୀବ ହୋଇ ରହିଛ । ହୃଦୟର ଦୌର୍ବଲ୍ୟ, କ୍ଲୀବତ୍ୱ ଛାଡ଼ି ଉତ୍ସାହ ସହକାରେ ଏ କାର୍ଯ୍ୟ କର । ମୁଁ ତୁମ ସାଙ୍ଗରେ ଅଛି । ମୋତେ ଦେଖି ବିସ୍ମିତ ନ ହୋଇ ମୋ ସାଙ୍ଗରେ ରହି ମନ୍ଥନ କରିବ ତ ତୁମକୁ କୌଣସି କଷ୍ଟ ହେବ ନାହିଁ ।"

ଦେବତାମାନେ କହିଲେ, "ପ୍ରଭୁ, ଏହାତ ସତ୍ୟ । ଆପଣ ଯେତେବେଳେ ଆମ ସାଙ୍ଗରେ ରହିବେ, ତା'ହେଲେ ଆମକୁ କଷ୍ଟ କାହିଁକି ହେବ ? କିନ୍ତୁ ଭଗବାନ, ଯେତେବେଳେ ଅସୁରମାନେ ଆମ ସାଙ୍ଗରେ ବରାବର ପରିଶ୍ରମ କରିବେ ତା'ହେଲେ ସେମାନଙ୍କୁ ମଧ୍ୟ ଅମୃତରୁ ସମାନ ଭାଗ ମିଳିବ ।"

ଭଗବାନ କହିଲେ, "ଦେଖ, ଯେଉଁମାନେ ମୋତେ ଭୁଲିଯାଇ କାର୍ଯ୍ୟ କରନ୍ତି, ସେମାନେ କେବଳ ମାତ୍ର କର୍ମର ଶ୍ରମ ହିଁ ପ୍ରାପ୍ତ ହୋଇଥାନ୍ତି । ଯେଉଁମାନେ ନିଜକୁ ବୃଥାରେ ଜ୍ଞାନୀ ମନେକରି ଅଭିମାନ ପୂର୍ବକ କଷ୍ଟରେ ଉଚ୍ଚପଦ ପ୍ରାପ୍ତ ହୁଅନ୍ତି, ପରିଶେଷରେ ସେମାନେ ପୁଣି ତଳକୁ ଖସି ଯାଆନ୍ତି; କାରଣ ସେମାନେ ମୋର ଚରଣର ଆଶ୍ରୟ ଗ୍ରହଣ କରି ନ ଥାନ୍ତି । ଆଉ ଯେଉଁମାନେ ମୋତେ ସ୍ମରଣ କରି, ମୋର

Digitized by srujanika@gmail.com

ସେବା ମନେକରି, କର୍ତ୍ତବ୍ୟ ବୁଦ୍ଧିରେ କରନ୍ତି ଏବଂ କରିସାରି ମୋତେ ସମର୍ପଣ କରିଥାନ୍ତି, ସେମାନଙ୍କର କର୍ମଜନିତ ଶ୍ରମ ମଧ୍ୟ ହୁଏ ନାହିଁ ଓ ସେମାନେ ମହାଫଳର ଅଧିକାରୀ ହୋଇଥାନ୍ତି । ତୁମମାନଙ୍କ ସାଙ୍ଗରେ ଅସୁରମାନେ ପରିଶ୍ରମ କିନା କରିବେ, ମାତ୍ର ସେମାନଙ୍କ ବୁଦ୍ଧି ହେତୁ ଅମୃତର ମିଠାରସ ତୁମମାନଙ୍କୁ ମିଳିବ, ଦୈତ୍ୟମାନେ କେବଳ ମାତ୍ର କ୍ଳେଶ ହିଁ ପ୍ରାପ୍ତ ହେବେ । ଏଣୁ ତୁମ୍ଭେମାନେ ଯେପରି ହେଉ ସେମାନଙ୍କୁ ରାଜି କରାଇ ସମୁଦ୍ର ମନ୍ଥନ ନିମନ୍ତେ ତୁମମାନଙ୍କର ଅନୁକୂଳ କର ।"

ଦେବତାମାନେ କହିଲେ, "ପ୍ରଭୁ, ସେ ଦୁଷ୍ଟମାନେ ଭାରି ଜିଦ୍‌ଖୋର । ସେମାନେ ସବୁ ବଦ୍ଧ ପାଗଳ । ଯାହା କରିବେ ବୋଲି ଭାବିନେବେ ନ କରି ଛାଡ଼ିବେ ନାହିଁ ।"

ଭଗବାନ କହିଲେ, "କ'ଣ ହେଲା ସେଇଠୁ ? ଅଡ଼ି ବସନ୍ତୁ । ଆମକୁ ତ ଆମର କାମ କରିବାକୁ ହେବ । ବର୍ତ୍ତମାନ ସେମାନେ ଯେମିତି କହୁଛନ୍ତି ତୁମେ ସମର୍ଥନ କରିଯାଅ । ବିନା ବିଗ୍ରହରେ ସେମାନଙ୍କର ହିଁକୁ ହିଁ କହିଚାଲ । ଏଇଆ ହିଁ ନୀତି । ବିନା କ୍ରୋଧରେ, ବିନା ଦ୍ୱନ୍ଦରେ ଯେଉଁ କାମ ହୋଇ ଯାଉଛି, ଝଗଡ଼ା କଲେ ସେ କାର୍ଯ୍ୟ ହେବ ନାହିଁ ।"

ଦେବତାମାନେ କହିଲେ, "ପ୍ରଭୁ, ମନ୍ଥନ ପରେ ବି ଯଦି ସେଥିରୁ ଅମୃତ ବାହାରିବ ନାହିଁ, ତେବେ ? କିମ୍ବା ଅମୃତ ବଦଳରେ ଯଦି ଆଉ କ'ଣ ବାହାରିଲା ତା'ହେଲେ କଣ କରିବା ?"

ଭଗବାନ କହିଲେ, "ଯେତେବେଳ ଯାଏଁ ଅମୃତ ବାହାରି ନାହିଁ, ତୁମେମାନେ ମନ୍ଥନ କରି ଚାଲିଥିବ । ନିରାଶ ହେବ ନାହିଁ । ସବୁ ପ୍ରଥମେ ଏଇ ଔଷଧି ଏବଂ ସମୁଦ୍ରର ବିକାରରୂପୀ ବିଷ ହିଁ ବାହାରିବ । ସେ ବିଷକୁ ଦେଖି ଡରିବ ନାହିଁ । ହତୋତ୍ସାହିତ ହେବ ନାହିଁ ଯେ ଏଥିରୁ ପହିଲେ ବିଷ ବାହାରିଲା ।"

ଦେବତାମାନେ କହିଲେ, "ପ୍ରଭୁ, କେବଳ ବିଷ ବାହାରିବ ନା ତା' ସାଙ୍ଗରେ ଅନ୍ୟ ବସ୍ତୁ ମଧ୍ୟ ବାହାରିବ ?"

Digitized by srujanika@gmail.com

ଭଗବାନ କହିଲେ, "ଅମୃତ ଓ ବିଷ ଛଡ଼ା ଏକୁଆରେକ ସୁନ୍ଦର ଓ ଅଦ୍‌ଭୁତ ରତ୍ନ ମଧ୍ୟ ବାହାରିବେ । ସେ ରତ୍ନଗୁଡ଼ିକୁ ଦେଖି ଲୋଭ କରିବ ନାହିଁ । ପ୍ରାପ୍ତ ହେବାପାଇଁ କ୍ରୋଧକରି ଯୁଦ୍ଧ ବି କରିବ ନାହିଁ ।"

ଶ୍ରୀ ଶୁକଦେବ କହୁଛନ୍ତି, "ରାଜନ୍, ଏପରି ଭାବରେ ଭଗବାନ ଦେବତାମାନଙ୍କୁ ବୁଝେଇ କୂଟନୀତିର ଯୁକ୍ତି ବିଷୟରେ କହି ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ । ସମସ୍ତେ ଭଗବାନଙ୍କର ଅବ୍ୟକ୍ତ ସଚ୍ଚିଦାନନ୍ଦ ସ୍ୱରୂପକୁ ପ୍ରଣାମ କଲେ । ତା'ପରେ ବ୍ରହ୍ମା କହିଲେ, "ତା'ହେଲେ ମୁଁ ଯାଉଛି, ମୋ ପାଇଁ ଉଭୟ ପକ୍ଷ ଏକାଭଳି । ତୁମଙ୍କର ଏସବୁ କାର୍ଯ୍ୟରେ ସମ୍ମିଳିତ ହେବା ଉଚିତ ନୁହେଁ ।" ଏହା କହି ବ୍ରହ୍ମା ବ୍ରହ୍ମଲୋକକୁ ଚାଲିଗଲେ । ତା'ପରେ ଶିବ କହିଲେ, "ଦେବଗଣ, ମୋତେ ମଧ୍ୟ ଅନୁମତି ଦିଅନ୍ତୁ । ମୁଁ ତ ସର୍ବଦା ଆପଣମାନଙ୍କ ପାଖରେ ଅଛି । ଆବଶ୍ୟକ ମନେ କଲେ ମୋତେ ଡ଼କେଇ ନେବେ ।" ଏହା କହି ସେ କୈଳାସକୁ ଚାଲିଗଲେ ।

ତା'ପରେ ଦେବତାମାନେ ଭଲଭାବରେ ସାଜସଜ ହୋଇ ଅସୁରମାନଙ୍କର ରାଜସଭାରେ ଉପସ୍ଥିତ ହେଲେ । ସେଠାରେ ଯାଇ ଦେଖିଲେ, ତ୍ରୈଲୋକ୍ୟ ସିଂହାସନ ଉପରେ ପ୍ରହ୍ଲାଦଙ୍କର ପୌତ୍ର ପରମଦାନୀ ମହାରାଜ ବଳୀ ବିରାଜମାନ କରିଛନ୍ତି । ସେ ପୂର୍ଣ୍ଣ ଶୋଭା ସମ୍ପନ୍ନ ହୋଇଛନ୍ତି, ଯଦି ଯେଉଁପରି ରାଜ୍ୟଶ୍ରୀ ତାଙ୍କୁ ପୁଣ୍ଣ'ତଃ ବରଣ କରିଛନ୍ତି । ସିଂହାସନ ଉପରେ ସେ ସେତେବେଳେ ଇନ୍ଦ୍ରଙ୍କ ପରି ପରିଶୋଭିତ ହୋଇଥିଲେ । ଚତୁର୍ଦ୍ଦିଗରେ ଶମ୍ବର, ଆରିଷ୍ଟନେମୀ ତଥା ଆହୁରି ବଡ଼ବଡ଼ ବୁଦ୍ଧିମାନ ଅସୁର ବସି ତାଙ୍କର ଉପାସନା କରୁଥିଲେ । ସଭାଭବନର ରକ୍ଷାନିମନ୍ତେ ପ୍ରହରୀ ଛଡ଼ା ସୈନିକମାନେ ମଧ୍ୟ ଦଣ୍ଡାୟମାନ ହୋଇଥିଲେ । ଅନେକ ସେନାନାୟକ ସେହି ସଭାରେ ବସିଥିଲେ । ଦେବତାମାନେ ଏକା ପାଖରେ ଆପଣା ଆଡ଼କୁ ଆସୁଥିବା ଦେଖି ସମସ୍ତ ସୈନିକ ସତର୍କତା ସହିତ ଅସ୍ତ୍ର ଶସ୍ତ୍ରାଦି ପ୍ରସ୍ତୁତ ରଖି ଯୁଦ୍ଧ ନିମନ୍ତେ ତତ୍ପର ହୋଇଗଲେ । ପ୍ରଧାନ ସେନାନାୟକ ସମସ୍ତଙ୍କୁ ସୁବ୍ୟବସ୍ଥିତ ହୋଇ ଦଣ୍ଡାୟମାନ ହେବାକୁ ଆଜ୍ଞା ଦେଲେ । ଅନ୍ୟାନ୍ୟ ସେନାନାୟକ ମାନେ ପ୍ରହାର କରିବା ଉଦ୍ଦେଶ୍ୟରେ ପ୍ରସ୍ତୁତ ହୋଇ ରହିଲେ ।

Digitized by srujanika@gmail.com

ଦେବତାମାନଙ୍କୁ ନିଃଶସ୍ତ୍ର ଦେଖି ଏବଂ ସେମାନଙ୍କ ମଧ୍ୟରେ ଯୁଦ୍ଧପାଇଁ ସାମାନ୍ୟତମ ତତ୍ପରତା ପର୍ଯ୍ୟନ୍ତ ନଦେଖି ମହାରାଜ ବଳି ପ୍ରଧାନ ସେନାନାୟକଙ୍କୁ ପଚାରିଲେ, "ତମେ ସବୁ କାହା ସାଙ୍ଗରେ ଯୁଦ୍ଧ କରିବାକୁ ଉଦ୍ୟତ ହେଉଛ ?"

ସେନାନାୟକ କହିଲେ, "ଅନ୍ନଦାତା, ଆମମାନଙ୍କ ପୁରୁଣା ଶତ୍ରୁ ଦେବତାମାନେ ଏକତ୍ରିତ ହୋଇ ଆମ ଆଡ଼କୁ ଆସୁଛନ୍ତି । ସେମାନଙ୍କୁ ଆମେ ଧରିବା! କଥା, ପର୍ଯ୍ୟସ୍ତ କରିବା କଥା ।"

ହସି ହସି ମହାରାଜ ବଳି କହିଲେ, "ଆରେ ଭାଇ, ଯେ ଯୁଦ୍ଧ କରିବାକୁ ଆସୁଥିବ ତା' ସାଙ୍ଗରେ ସିନା ଲଢ଼େଇ କରିବ ? ଦେଖୁନ, ଦେବତାମାନେ ଖାଲି ହାତରେ କୌଣସି ଅସ୍ତ୍ରଶସ୍ତ୍ର କିମ୍ବା ଯୁଦ୍ଧ ଉପଯୋଗୀ ଗୋଟିଏ ବି ଉପକରଣ ନ ଧରି ଆସୁଛନ୍ତି । ଏଭଳି ଅବସ୍ଥାରେ ଆମ ପକ୍ଷରେ ଯୁଦ୍ଧପାଇଁ ସମୁଦ୍ୟୁକ ହେବା ଅନୁଚିତ । ପ୍ରତୀତ ହେଉଛି ସେମାନେ କୌଣସି ବିଶେଷ ପ୍ରୟୋଜନରେ ଆସିଛନ୍ତି । ମୈତ୍ରୀ ଭାବରେ ଆସିଛନ୍ତି । ଏଭଳି ଅବସ୍ଥାରେ ତାଙ୍କୁ ହୃଦୟର ସହିତ ସ୍ୱାଗତ କରିବା । ତୁମେ ସବୁ ପ୍ରଧାନ ପ୍ରଧାନ କର୍ମଚାରୀ ଆଗେ ଯାଇ ସତ୍କାର କରି ସେମାନଙ୍କୁ ମୋ ସମୀପକୁ ନେଇ ଆସ ।"

ମହାରାଜ ବଳିଙ୍କର ଆଜ୍ଞାପାଇ ପ୍ରଧାନମନ୍ତ୍ରୀ, ମୁଖ୍ୟ ସେନାନାୟକ, ତଥା ଅନ୍ୟାନ୍ୟ ସଚିବମାନେ ସୁରଙ୍କର ସମୀପରେ ଉପସ୍ଥିତ ହେଲେ ଏବଂ ସେମାନଙ୍କର ଆଦର ସତ୍କାର ପୂର୍ବକ ମହାରାଜାଙ୍କର ନିକଟକୁ ନେଇଗଲେ । ବଳି ସିଂହାସନରୁ ଉଠି ଆଦର ପୂର୍ବକ ଦେବତା ମାନଙ୍କୁ ପାଛୋଟି ଆଣି ସମସ୍ତଙ୍କୁ ଯଥାଯୋଗ୍ୟ ଆସନରେ ବସେଇଲେ । ମହାରାଜ ବଳି ପାଦ୍ୟ ଅର୍ଘ୍ୟାଦି ଦେଇ ସେମାନଙ୍କର ପୂଜାକଲେ ଏବଂ ଆସିବାର କାରଣ ପଚାରିଲେ ।

ବଳିଙ୍କର ପ୍ରଶ୍ନର ଉତ୍ତରରେ ଇନ୍ଦ୍ର କହିଲେ, "ମହାଭାଗ, ଆମେ ଆପଣଙ୍କ ପାଖକୁ ଏକ ବିଶେଷ କାର୍ଯ୍ୟରେ ଆସିଛୁଁ । ଆମର ଏକ ପ୍ରସ୍ତାବ ଅଛି, ଆପଣ ତାହା ସ୍ୱୀକାର କରିବେ ବୋଲି ସମ୍ମତି ପ୍ରଦାନ କଲେ କହିବୁଁ ।"

Digitized by srujanika@gmail.com

ହସିହସି ବଳି କହିଲେ, "ନ ଶୁଣି କେଉଁପରି କହିବି ଯେ ମୁଁ ସ୍ୱୀକାର କରିନେବି । ଆପଣ ସେ ପ୍ରସଙ୍ଗରେ କହନ୍ତୁ । ତାହା ଶୁଣି ମୁଁ ମନ୍ତ୍ରୀମାନଙ୍କ ସହିତ ପରାମର୍ଶ କରିବି । ତା'ପରେ ଆପଣମାନଙ୍କୁ ଜଣେଇବି ।

ଇନ୍ଦ୍ର କହିଲେ, "ଆମେ ସୁର ଅସୁର ସହୋଦର ଭାଇ ଭଳି । ଆମମାନଙ୍କର ପିତା ଏକ । ଗୋଟିଏ ଋଷିଙ୍କଠୁ ଆମମାନଙ୍କର ଜନ୍ମ । ମାତାମାନେ ପୃଥକ ହୋଇଥିବାରୁ ଆମମାନଙ୍କର ନାମ ଏବଂ କାମରେ କିଛିଟା ପାର୍ଥକ୍ୟ ଆସିଛି । ତଥାପି ମଧ୍ୟ ଆମେମାନେ ଭାଇ ଭାଇ । ଆମେ ଚାହୁଁଛୁ ଯେ ଆମମାନଙ୍କ ମଧ୍ୟରେ ଲଢ଼େଇ ଝଗଡ଼ା ସବୁ ଦିନପାଇଁ ସମାପ୍ତ ହେଉ ।"

ଅସୁରମାନେ କହିଲେ, "ଯେଉଁ କଥା ଏକାନ୍ତ ଅସମ୍ଭବ ସେ ସମ୍ପର୍କରେ ପ୍ରସ୍ତାବ ଦେବା ନିରର୍ଥକ । ଆମର ତୁମର ଲଢ଼େଇ କେବେହେଲେ ସରିବ ନାହିଁ ।"

ଇନ୍ଦ୍ର କହିଲେ, "ଠିକ କଥା, ଲଢ଼େଇ ସମାପ୍ତ ନହେଉ । ଥାଉ, ତେବେ ଆମ ମାନଙ୍କର କାହାରି ହେଲେ କ୍ଷତି ନ ହେଉ । ଲଢେଇରେ କେହି ହତାହତ ହୁଅନ୍ତୁ ନାହିଁ । ଯୁଦ୍ଧର ଇଚ୍ଛା ବି ଥାଉ, ଆଉ କ୍ଷତି ମଧ୍ୟ ନ ହେଉ ।"

ବଳି ପଚାରିଲେ, "ତା'ର କଣ ଉପାୟ ଅଛି ?"

ଇନ୍ଦ୍ର କହିଲେ, "କ୍ଷୀର ସାଗରରେ ଅମୃତ ଅଛି । ଆମେ ସୁର ଅସୁର ସଭିଏଁ ମିଶି ମନ୍ଦରାଚଳକୁ ମନ୍ଥନ ଦଣ୍ଡ କରି ବାସୁକୀଙ୍କ ସାହାଯ୍ୟରେ ତାକୁ ମନ୍ଥନ କରିବା । ମନ୍ଥନ କରୁ କରୁ ତାହା ମଧ୍ୟରୁ ଅମୃତ ବାହାରିବ ଏବଂ ସେହି ଅମୃତ ପାନ କରି ଆମେମାନେ ଅମର ହୋଇଯିବା । ଏଥିରେ ଆମର ଉଭୟ ପକ୍ଷର ସ୍ୱାର୍ଥ ଅଛି ।"

ଅସୁର ମାନଙ୍କୁ ଏକଥା ଭଲ ଲାଗିଲା । ହୋ ହଲ୍ଲା, କୋଲାହଳ ଧୂମ୍‌ଧାମ୍, ଏଭଳି କାର୍ଯ୍ୟକୁ ଦେବତାମାନେ ଉତ୍ତମ କାର୍ଯ୍ୟ ମନେ କରନ୍ତି । ଏଭଳି କାର୍ଯ୍ୟରେ ସେମାନଙ୍କର ରୁଚିମଧ୍ୟ ଅଧିକ । ଅସୁରମାନେ ଭାବିଲେ, "ଏ ଦେବତାମାନଙ୍କୁ ଓଲୁ

Digitized by srujanika@gmail.com

ବନେଇ ଦେବା । ପରଶ୍ରମ ଏଇମାନଙ୍କ ହାତରେ କରେଇବା, ମାତ୍ର ଯେତେବେଳେ ଅମୃତ ବାହାରିବ ସବୁ ଆମେ ପିଇନେବା । ଏ ଦୁର୍ବଳ ଗୁଡ଼ିକ ଆମର କଣ କରି ପକେଇବେ ।"

ସୂତ କହୁଛନ୍ତି, "ହେ ମୁନିଗଣ, ଅସୁରମାନଙ୍କ ମନରେ ପଶିଲେ ପାପ ପଶିଲା ।"

ଏହାଶୁଣି ଶୌନକ କହିଲେ, "ମହାଭାଗ ! ପାପ ତ ଦେବତାମାନଙ୍କ ମନରେ ବି ଥିଲା । ସେମାନେ ତ ଅସୁରମାନଙ୍କୁ ଛଳିବାକୁ ହିଁ ଆସିଥିଲେ ।"

ଏହାର ଉତ୍ତରରେ ଶ୍ରୀ ସୂତ କହିଲେ, "ହଁ ମହାଭାଗ ! ଏହା ସତ୍ୟ । ଦେବତା ମାନେ ମଧ୍ୟ ଅସୁରମାନଙ୍କୁ ପ୍ରବଞ୍ଚିତ କରିବାକୁ ଆସିଥିଲେ । ମାତ୍ର ସ୍ୱତଃ ନୁହେଁ, ଭଗବାନଙ୍କର ଆଜ୍ଞାପାଳନ ହିଁ କଲେ ! ମାତ୍ର ଏ ଅସୁରମାନେ ନିଜକୁ ସବୁକିଛି ମନେ କରି ଦେବତା ମାନଙ୍କୁ ଠକିବାକୁ ଚାହୁଁଥିଲେ । ସେମାନଙ୍କର ଆପଣାର ବଳ ଉପରେ ବିଶ୍ୱାସ ଥିଲା । ଦେବତାମାନେ ଈଶ୍ୱର ଭରସାରେ ଥିଲେ । ଯାହାର ଭଗବାନ ହିଁ ଏକମାତ୍ର ସାହା ଭରସା, ତାଙ୍କର କେବେହେଲେ ଅକଲ୍ୟାଣ ହେବ ନାହିଁ ।"

ଶୌନକ କହିଲେ, "ହଁ ମହାଭାଗ, ତା ପରେ ? ଆପଣ ଆଗାମୀ ପ୍ରସଙ୍ଗ କହିବା ହୁଅନ୍ତୁ ।"

ଶ୍ରୀ ସୂତ କହିଲେ, "ମହାଭାଗ, ଆଉ କଣ ? ଉଭୟ ପକ୍ଷରୁ ସନ୍ଧି ହୋଇଗଲା । ତା'ପରେ ! ପରସ୍ପର ମଧ୍ୟରେ କଥା-ସ୍ୱୀକାର ଆନନ୍ଦରେ ହୋଇଗଲା ଏବଂ ଉଭୟ ପକ୍ଷ ସମୁଦ୍ର ମନ୍ଥନ ନିମନ୍ତେ ମହାନ୍ ଉଦ୍ୟୋଗ କରିବାକୁ ଲାଗିଲେ । ସର୍ବପ୍ରଥମେ ସେମାନେ ମନ୍ଦରାଚଳକୁ ଉପାଡ଼ି ଆଣିବାକୁ ପ୍ରସ୍ଥାନ କଲେ ।"

Digitized by srujanika@gmail.com

### ଛପ୍‌ପୟ୍

କରି କୈ ସବ ପୁରୁଷାର୍ଥ ଉଦଧି ତେଁ ଅମୃତ ନକାରେଁ ।
ମରନ ଧରମ କୁଁ ତ୍ୟାଗି ଅମର ବନ ମୃତ୍ୟୁହୁଁ ମାରେଁ ॥
ଲଡେ ପରସ୍ପର ବୀର ମରେ ନହୀଁ କୋଈ ରନ ମହଁ ।
ମନ ମହଁ ହୋ ବିଦ୍ୱେଷ ଘାବ ହୋବେ ନହିଁ ତନ ମହ ॥
ଅସୁରନି ସୁର ସମ୍ମତ ସୁନୀ, ସାଧୁ ସାଧୁ ସବ ନେ କହୀ ।
ଅମୃତ ନିକାରେଁ ମିଲି ଉଭୟ୍, ବାତ ଜିହୀ ପକ୍‌କୀ ରହୀ ॥



Digitized by srujanika@gmail.com